Vol XLIV No. 10 UTKAL PRASANGA Regd. No. O-05/88
Licence No. C. R. N. P. 5—Licensed to post without Pre-Payment



ଭାରତ ରତ୍ନ, ପଦ୍ମ ବିଭୂଷଣ, ପଦ୍ମ ଭୂଷଣ ଓ
ପଦ୍ମଶ୍ରୀ ଉପାଧି ପ୍ରାପ୍ତ ବିଶିଷ୍ଟ ବ୍ୟକ୍ତି ବୃନ୍ଦ ।



ଭାରତୀୟ ସମ୍ବାଦ ପତ୍ର ସମିତିର ସୁବର୍ଣ୍ଣ
ଜୟନ୍ତୀ ଉତ୍ସବ ଉଦ୍‌ଘାଟନ ।



* ପବିତ୍ର 'ଇଦ୍ ଉଲ୍ ଫିତର' ପର୍ବ ଉପଲକ୍ଷେ ରାଷ୍ଟ୍ରପତି,
ଉପରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀଙ୍କ ଅଭିନନ୍ଦନ

# ଉତ୍କଳ ପ୍ରସଙ୍ଗ

ଜ୍ୟେଷ୍ଠ ୧୯୦୯ ଶକାବ୍ଦ ୪୩ ଭାଗ ୧୧ଶ ସଂଖ୍ୟା ଜୁନ୍ ୧୯୮୮



● **ପ୍ରଚ୍ଛଦପଟ**

: ଶ୍ରୀ ପ୍ରଦ୍ୟୁମ୍ନ କୁମାର ଦାଶ

**ପ୍ରକାଶନ :** ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର, ଭୁବନେଶ୍ୱର

ବାର୍ଷିକ ଦେୟ : ଟ ୨୦.୦୦

ପ୍ରତି ଖଣ୍ଡ : ଟ ୨.୦୦



**ମୁଦ୍ରଣ :** ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

# ସୂଚୀପତ୍ର

# ମୋ ଦୃଷ୍ଟିରେ ....

ପ୍ରଖର ଗ୍ରୀଷ୍ମ ପରେ ଓଡ଼ିଶା ଆକାଶରେ ଏବେ ଘନ କୃଷ୍ଣ ମେଘ ଦେଖା ଦେଇଛି ଏବଂ ଏହି ଅବସରରେ ଉତ୍କଳ ପ୍ରସଙ୍ଗ ତା'ର ପାଠକମାନଙ୍କୁ ବର୍ଷାକାଳୀନ ଅଭିବାଦନ ଜଣାଇ ଆତ୍ମ ପ୍ରକାଶ କରୁଛି ।

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ କଂଗ୍ରେସ ସରକାର ଜୁନ୍ ୯, ୧୯୮୦ରେ ଗଠନ କରାଯାଇଥିଲା ଏବଂ ଆଜି ତା'ର ଅଷ୍ଟମ ବର୍ଷ ପୂରଣ ହୋଇଛି । ଓଡ଼ିଶାର କୃଷକଙ୍କ ପାଇଁ ବର୍ଷଣୋନ୍ମୁଖୀ ମେଘ ଯେପରି ଆହ୍ଲାଦଦାୟୀ ହୁଏ ଓଡ଼ିଶାବାସୀଙ୍କ ପାଇଁ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ସରକାର ସେହିପରି ମଙ୍ଗଳ ଓ ଆନନ୍ଦଦାୟକ ହୋଇଛି ବୋଲି ଆମର ବିଶ୍ୱାସ ଓ ଧାରଣା ।

ଉତ୍କଳ ପ୍ରସଙ୍ଗର ଏହି ସଂଖ୍ୟା ସରକାରଙ୍କର ବିଭିନ୍ନ ବିଭାଗର ଗତ ଆଠ ବର୍ଷର ଏକ ତୁଳନାତ୍ମକ ସମୀକ୍ଷା ଉପସ୍ଥାପନ କରୁଛି । ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ତାଙ୍କର ''କୃଷି ପ୍ରଧାନ ଓଡ଼ିଶା'' ପ୍ରବନ୍ଧରେ ଓଡ଼ିଶାର କୃଷକମାନଙ୍କର ସଂକଳ୍ପ ଓ ସିଦ୍ଧି ବିଷୟରେ ଯେଉଁ ବିଶଦ ଅବତାରଣା କରିଛନ୍ତି ସେଥିପ୍ରତି ଆମେ ଆମ ପାଠକଙ୍କର ଦୃଷ୍ଟି ଆକର୍ଷଣ କରୁ । ଏହି ସଂଖ୍ୟାରେ ଓଡ଼ିଶା ରାଜ୍ୟ ସରକାରଙ୍କର ମନ୍ତ୍ରୀ ସର୍ବଶ୍ରୀ ହରିହର କରଣ, ଯଦୁନାଥ ଦାଶ ମହାପାତ୍ର, ଯୁଗଳ କିଶୋର ପଟ୍ଟନାୟକ, ମତଲୁବ୍ ଅଲ୍ଲୀ, ରାସ ବିହାରୀ ବେହେରା, ବଟକୃଷ୍ଣ ଜେନା, ଭୂପାଳ ଚନ୍ଦ୍ର ମହାପାତ୍ର, ଡମ୍ବରୁଧର ଉଲାକା ଓ ଶ୍ରୀ ଶରତ୍ ରାଉତଙ୍କର ଓଡ଼ିଶାର ବିଭିନ୍ନ ସମସ୍ୟା ସମ୍ପର୍କରେ ପ୍ରବନ୍ଧଗୁଡ଼ିକ ଉଲ୍ଲେଖ ଯୋଗ୍ୟ । ଏହି ସଂଖ୍ୟାରେ ଓଡ଼ିଶାର ମୁଖ୍ୟ ଶାସନ ସଚିବ ଶ୍ରୀ ନଳିନୀ କାନ୍ତ ପଣ୍ଡା ''ସମ୍ବେଦନଶୀଳ ପ୍ରଶାସନ'' ସମ୍ପର୍କରେ ଏକ ଚିନ୍ତାଶୀଳ ପ୍ରବନ୍ଧ ଲେଖିଛନ୍ତି । ଓଡ଼ିଶାରେ ବିଦ୍ୟୁତ୍ ଶକ୍ତିର ସୁପରିଚାଳନା ସମ୍ପର୍କରେ ରାଜ୍ୟ ବିଦ୍ୟୁତ୍ ସଂସ୍ଥାର ଅଧ୍ୟକ୍ଷ ଶ୍ରୀ ପ୍ରଶାନ୍ତ କର, ଉଠା ଜଳସେଚନ ନିଗମ ଓ କୃଷିର ବିକାଶ ସଂପର୍କରେ ଉଠା ଜଳସେଚନ ନିଗମର ଅଧ୍ୟକ୍ଷ ଶ୍ରୀ ମଦନ ମୋହନ ମହାନ୍ତି ଓ ଓଡ଼ିଶାରେ ଆଦିବାସୀ ଉନ୍ନୟନ ସମ୍ପର୍କରେ ନିର୍ଦ୍ଦେଶକ ଶ୍ରୀ ଫଣୀ ଭୂଷଣ ଦାସଙ୍କର ଆଲୋଚନାତ୍ମକ ପ୍ରବନ୍ଧ ପ୍ରତି ଆମେ ପାଠକଙ୍କର ଦୃଷ୍ଟି ଆକର୍ଷଣ କରୁଛୁ ।

ଗତ ଆଠ ବର୍ଷର ବିଭିନ୍ନ କର୍ମ କ୍ଷେତ୍ରରେ ଓଡ଼ିଶାର ଉନ୍ନତି ସମ୍ପର୍କରେ ପର୍ଯ୍ୟାଲୋଚନା କରିଛନ୍ତି ସୁସାହିତ୍ୟିକ ଶ୍ରୀ ସାତକୋଡ଼ି ହୋତା ଏବଂ ଏହି ପ୍ରବନ୍ଧ ପ୍ରତି ଆମେ ପାଠକଙ୍କର ସ୍ୱତନ୍ତ୍ର ଦୃଷ୍ଟି ଆକର୍ଷଣ କରୁଛୁ ।

ରୁକ୍ଷ ଧରାବକ୍ଷକୁ ଆଷାଢ଼ର ମେଘ ଯେପରି ଲୋଭନୀୟ କରିଦିଏ ସେହିପରି ରାଜନୈତିକ ଅସ୍ଥିରତା ଭିତରେ ଗତି କରୁଥିବା ଓଡ଼ିଶାକୁ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଯେଭଳି ଭାବରେ ସ୍ଥିରତା ଆଣି ଦେଇଛନ୍ତି ଏବଂ ସ୍ଥାଣୁତ୍ୱର ନାଗପାଶ ବନ୍ଧନରୁ ଓଡ଼ିଶାକୁ ମୁକ୍ତ କରି କୃଷି ଏବଂ ଶିଳ୍ପ କ୍ଷେତ୍ରରେ ସାଫଲ୍ୟ ନିମନ୍ତେ ପଦେପଦେ ଯେଉଁ ଅଗ୍ରଗତି କରି ଚାଲିଛନ୍ତି, ତା'ର କିଞ୍ଚିତ ଆଭାସ ଏଇ ସଂଖ୍ୟାରେ ପରିସ୍ଫୁଟ ହୋଇଛି । ଏଥି ନିମନ୍ତେ ଉତ୍କଳ ପ୍ରସଙ୍ଗ ଏହି ସଂଖ୍ୟାର ବିଭିନ୍ନ ଲେଖକମାନଙ୍କୁ ଅଭିନନ୍ଦିତ କରୁଛି ଏବଂ ଆଶା କରୁଛି ଯେ, ଏହି ଶାସନ ଆହୁରି ଦ୍ରୁତତର ଅଗ୍ରଗତି କରୁ ।

# କୃଷି ପ୍ରଧାନ ଓଡ଼ିଶା

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ

ଭାରତର, ବିଶେଷତଃ ଓଡ଼ିଶାର ଅର୍ଥନୀତି ମୂଳରେ କୃଷିର ତାତ୍ପର୍ଯ୍ୟ ସ୍ୱୀକାର୍ଯ୍ୟ । ଓଡ଼ିଶାର ଯୋଜନା ଏବଂ ଅର୍ଥନୀତି ବହୁଳ ଭାବରେ କୃଷି ଏବଂ କୃଷକଙ୍କ ଉପରେ ନିର୍ଭର କରେ । କୃଷିର ତାତ୍ପର୍ଯ୍ୟ ବହୁ ବ୍ୟବସ୍ଥା ଉପରେ ନିର୍ଭରଶୀଳ । କୃଷକ ଠିକ୍ ସମୟରେ ଭଲ ବିହନ, ଭଲ ସାର, ପର୍ଯ୍ୟାପ୍ତ ଜଳ ଏବଂ ଉପଯୁକ୍ତ ଋଣ ନପାଇଲେ କୃଷିର ଉନ୍ନତି ହୋଇ ପାରିବ ନାହିଁ । ତା'ଛଡ଼ା କେଉଁ ଜମିରେ କି ପ୍ରକାର ଫସଲ ହେବା ଉଚିତ ସେଥିପାଇଁ କୃଷକହିଁ ନିଷ୍ପତ୍ତି ଗ୍ରହଣ କରି ପାରିବ ଏବଂ ଏହି ନିଷ୍ପତ୍ତିକୁ କାର୍ଯ୍ୟକାରୀ କରାଇବା ଦାୟିତ୍ୱ ଓଡ଼ିଶା ସରକାରଙ୍କର । ସେହି ଦାୟିତ୍ୱ ସୁସମାହିତ ଭାବରେ ସଂପାଦନ କରିବା ନିମନ୍ତେ ସରକାରଙ୍କର କୃଷି ବିଭାଗ, ଜଳସେଚନ ବିଭାଗ ଓ ବ୍ୟାଙ୍କ ସବୁ ରହିଛି ।

ସ୍ୱାଧୀନତା ପରେ ଓଡ଼ିଶା ବହୁ ପଥ ଅତିକ୍ରମ କରିଛି । କିନ୍ତୁ ଉନ୍ନତିର ପଥ ଅତୀବ ଦୀର୍ଘ ଏବଂ ଏହି ଦୃଷ୍ଟିରୁ ଆମେ ମାତ୍ର ଅଳ୍ପ ପଥ ଅତିକ୍ରମ କରିଥାଇଁ । ସ୍ୱାଧୀନତା ବେଳକୁ ଆମର କୃଷି ଏକ ପ୍ରକାର ସ୍ଥାଣୁ ଅବସ୍ଥାକୁ ଆସି ଯାଇଥିଲା । ଆମ ଦେଶ ପୃଥିବୀର ବିଭିନ୍ନ ଉନ୍ନତ ଦେଶମାନଙ୍କ ପାଖରେ ଭିକ୍ଷା ଥାଳି ଧରି ବୁଲୁଥିଲା ଖାଦ୍ୟ ଶସ୍ୟ ପାଇଁ । ଚାଉଳ, ଗହମ, ତୈଳବୀଜ ପ୍ରଭୃତି ବିଭିନ୍ନ ଖାଦ୍ୟ ଶସ୍ୟ ନିମନ୍ତେ ଭାରତ ପରମୁଖାପେକ୍ଷୀ ହୋଇ ରହିଥିଲା । ଲୋକ ସଂଖ୍ୟା ତୁଳନାରେ ଖାଦ୍ୟ-ଶସ୍ୟର ଆମଦାନୀ ନିଅଣ୍ଟ ହୋଇ ଯାଉଥିଲା । ଲୋକ ସଂଖ୍ୟାର ବୃଦ୍ଧି ସାଙ୍ଗରେ ତାଳ ପକାଇ ଖାଦ୍ୟ ଶସ୍ୟ ଉତ୍ପାଦନ ବୃଦ୍ଧି ପାଇ ପାରୁ ନ ଥିଲା । ମହାତ୍ମାଗାନ୍ଧୀ ତାଙ୍କ ଜୀବନର ଶେଷ କେତେବର୍ଷ କେବଳ ଉତ୍ପାଦନ ବୃଦ୍ଧି ଉପରେ ସବୁଠାରୁ ବେଶୀ ଜୋର ଦେଉଥିଲେ । ତାଙ୍କର ପ୍ରାର୍ଥନା ସଭାମାନଙ୍କରେ ସେ "କୃଷିର ଉନ୍ନତି କରିବାକୁ ହେବ । ଖାଦ୍ୟ ଶସ୍ୟ ଉତ୍ପାଦନ ବଢାଇବାକୁ ହେବ" "ବୋଲି ବାରମ୍ବାର କହି ଆସିଛନ୍ତି । ଶ୍ରୀ ଲାଲବାହାଦୁର ଶାସ୍ତ୍ରୀ ମଧ୍ୟ ଭାରତ ପାକିସ୍ତାନ ଯୁଦ୍ଧବେଳେ "ଜୟ କିଶାନ, ଜୟ ଜବାନ୍" ଡାକ ଦେଇ ଭାରତର ଉନ୍ନତି ନିମନ୍ତେ ଯୁଦ୍ଧ କ୍ଷେତ୍ର ଅପେକ୍ଷା କୃଷି କ୍ଷେତ୍ରର ଉନ୍ନତିକଳ୍ପେ ଯେଉଁ ଆହ୍ୱାନ ଦେଇଥିଲେ ତାହା ଭୁଲିବାର ନୁହେଁ ।

ଆମେ ଯେପରି ଦ୍ରୁତ ଗତିରେ ଖାଦ୍ୟ ଶସ୍ୟ ଉତ୍ପାଦନ କ୍ଷେତ୍ରରେ ଅଗ୍ରଗତି କରିଛୁ, ତାର ତୁଳନା ଇତିହାସରେ ନାହିଁ । ପଣ୍ଡିତ ଜବାହରଲାଲ ନେହେରୁ ଓ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱରେ ଖାଦ୍ୟ ଶସ୍ୟ ଉତ୍ପାଦନ କ୍ଷେତ୍ରରେ ଭାରତ କେବେଳ ଯେ ସ୍ୱାବଲମ୍ବୀ ହୋଇ ପାରିଛି, ତାହା ନୁହେଁ, ବରଂ ଆମର ଭବିଷ୍ୟତ ଅସୁବିଧା ଦିନମାନଙ୍କ ପାଇଁ ଯଥେଷ୍ଟ ଖାଦ୍ୟ ଶସ୍ୟ ମହଜୁଦ୍ କରି ରଖିବା ସମ୍ଭବ ହୋଇ ପାରିଛି । ସ୍ୱାଧୀନତାର ପ୍ରାକ୍ କାଳରେ ଭାରତ ମୋଟ ପାଞ୍ଚ କୋଟି ଟନ ଖାଦ୍ୟ ଶସ୍ୟ ଉତ୍ପାଦନ କରି ପାରୁଥିଲା । କିନ୍ତୁ ଆଜି ଭାରତ ଷୋଳ କୋଟି ଟନ ଖାଦ୍ୟ ଶସ୍ୟଠାରୁ ଅଧିକ ଖାଦ୍ୟ ଶସ୍ୟ ଉତ୍ପାଦନ କରିବାକୁ ସମର୍ଥ ହୋଇଛି । ବିଶ୍ୱରେ ଅନ୍ୟାନ୍ୟ ଦେଶ, ଏପରିକି ଚୀନ ଦେଶଠାରୁ ମଧ୍ୟ ଖାଦ୍ୟ ଶସ୍ୟ ଉତ୍ପାଦନ କ୍ଷେତ୍ରରେ ଭାରତ ଅଧିକ ଦୂର ଅଗ୍ରସର ହୋଇ ପାରିଛି ।

ଓଡ଼ିଶାରେ ମଧ୍ୟ ଖାଦ୍ୟ ଶସ୍ୟ ଉତ୍ପାଦନ ଯଥେଷ୍ଟ ବୃଦ୍ଧି ପାଇଛି ଏବଂ ବର୍ତ୍ତମାନର ସରକାରଙ୍କ ସମୟରେ ବିଗତ ଆଠ ବର୍ଷ ଭିତରେ ଏହି ଉତ୍ପାଦନ କ୍ଷମତା ଆହୁରି ଦ୍ରୁତତର ହୋଇ ଯାଇଛି । ୧୯୬୦ ମସିହାଠାରୁ ୧୯୮୦ ପର୍ଯ୍ୟନ୍ତ ଖାଦ୍ୟ ଶସ୍ୟ ଉତ୍ପାଦନ ଯେଉଁ ହାରରେ ବୃଦ୍ଧି ପାଉଥିଲା, ୧୯୮୦ ମସିହାରୁ ୧୯୮୮ ଭିତରେ ଆମର ଖାଦ୍ୟ ଶସ୍ୟ ଉତ୍ପାଦନର ହାର, ତା'ଠାରୁ ବେଶୀ ହୋଇ ପାରିଛି । ଏବେ ହେକ୍ଟର ପିଛା ଆମର ଉତ୍ପାଦନ ହାର ୧୨'୨୬ କେ. ଜି । ଏହି ଆଠ ବର୍ଷ ଭିତରେ ଆମର ଖାଦ୍ୟ ଶସ୍ୟ ଉତ୍ପାଦନ ହାର ଶତକଡ଼ା ୨୦ ଭାଗ ବୃଦ୍ଧି ହୋଇ ପାରିଛି । ୧୯୭୮-୭୯ ମହିହାରେ ଓଡ଼ିଶାର ସର୍ବାଧିକ ଖାଦ୍ୟ ଶସ୍ୟ ଉତ୍ପାଦନ ୫୭ ଲକ୍ଷ ଟନ ହେଲେ ବେଳକୁ ୧୯୮୩-୮୪ରେ ଆମର ଉତ୍ପାଦନ ୭୦ ଲକ୍ଷ ଟନ ହୋଇ ପାରିଥିଲା । ଏଥିରୁ ସ୍ପଷ୍ଟ ହୋଇ ଯାଇଛି ଯେ କୃଷି କ୍ଷେତ୍ରରେ ଆମେ ସ୍ଥାଣୁତ୍ୱକୁ ଅତିକ୍ରମ କରି ଦ୍ରୁତ ଅଗ୍ରଗତି ପଥରେ ଆଗଭର ହୋଇ ଚାଲିଛୁ । କୃଷୀମାନଙ୍କର ସହଯୋଗକୁ ଖାପ୍ ଖୁଆଇ ସରକାରଙ୍କ ପକ୍ଷରୁ ଉପଯୁକ୍ତ ଉଦ୍ୟମ କରାଗଲେ ସ୍ଥାଣୁତ୍ୱକୁ ଯେ ଏଡ଼ାଇ ଦିଆଯାଇ ପାରିବ—ଏ କଳ୍ପନା ଆଜି ବାସ୍ତବରେ ରୂପାୟିତ ହୋଇ ପାରିଛି ।

ଏହି ବୈପ୍ଳବିକ ପରିବର୍ତ୍ତନ ସବୁ କ୍ଷେତ୍ରରେ ସମ୍ଭବ ହୋଇ ପାରିଛି । ଧାନ ଚାଷ କ୍ଷେତ୍ରରେ ଏକର ପିଛା ୯୦୦ କେ. ଜିଠାରୁ ଆଜି ୧୧୮୭ କେ, ଜି ପର୍ଯ୍ୟନ୍ତ ଧାନ ଆଦାୟ ହୋଇ ପାରୁଛି । ଏହା ହାରାହାରି କିନ୍ତୁ ଅନେକ ଅଞ୍ଚଳ ଏବଂ ଜିଲ୍ଲା ଅଛନ୍ତି ଯେଉଁମାନେ ଏହାଠାରୁ ଆହୁରି ଅଧିକ ଅଗ୍ରଗତି କରି ପାରିଛନ୍ତି । ଉଦାହରଣ ସ୍ୱରୂପ, ଗଞ୍ଜାମ ଜିଲ୍ଲାରେ ଆଜି ହେକ୍ଟର ପିଛା ୧୭୦୦ କେ.ଜି ଧାନ ଉତ୍ପାଦନ କରାଯାଉଛି । ସମ୍ବଲପୁର ଜିଲ୍ଲାରେ ୧,୬୦୦ କେ.ଜି ଧାନ ଉତ୍ପାଦନ ହୋଇ ପାରୁଛି । କିନ୍ତୁ ରାଜ୍ୟର ଅନେକ ଜିଲ୍ଲାରେ ଏହି ହାରରେ ଉତ୍ପାଦନ ହୋଇ ନପାରିବାରୁ ଓଡ଼ିଶାରେ ଧାନ ଉତ୍ପାଦନ ସର୍ବ ଭାରତୀୟ ସ୍ତରରୁ କମ୍ ହୋଇଛି । ଗତ ୮ ବର୍ଷ ଭିତରେ

ଆମେ ପ୍ରମାଣିତ କରି ଦେଇ ପାରିଛୁ ଯେ ଆହୁରି ଦ୍ରୁତ ଗତିରେ ଅଗ୍ରଗତି କରିବା ନିମନ୍ତେ ଆମର ଶକ୍ତି ଏବଂ କ୍ଷମତାର ଅଭାବ ନାହିଁ । ଏଥିନିମନ୍ତେ ଯେଉଁ ସଂକଳ୍ପ ଆବଶ୍ୟକ ସେହି ସଂକଳ୍ପ ଆମ ହୃଦୟରେ ରହିଛି

କିନ୍ତୁ ଅନ୍ୟ ଅନେକ କ୍ଷେତ୍ରରେ ଆମର ଗତ ଆଠ ବର୍ଷର ସଂକଳ୍ପ ଏବଂ ଉଦ୍ୟମ ଫଳରେ ଆଜି ସାରା ଭାରତରେ ଓଡ଼ିଶା ସର୍ବଶ୍ରେଷ୍ଠ ରାଜ୍ୟ ହୋଇ ପାରିଛି । ସେହି କ୍ଷେତ୍ର ହେଉଛି, ଚିନାବାଦାମ । ଚିନାବାଦାମ ଗୋଟିଏ ତୈଳବୀଜ ଏବଂ ଖାଇବା ତେଲର ଅଭାବ ମେଣ୍ଟାଇବା ପାଇଁ ଓଡ଼ିଶାରେ ଆଜି ହେକ୍ଟର ପିଛା ଦୁଇ ଟନ ଚିନାବାଦାମ ଉତ୍ପାଦନ କରାଯାଇ ପାରୁଛି । ଭାରତର କୌଣସି ରାଜ୍ୟରେ ଚିନାବାଦାମର ଉତ୍ପାଦିକା ଶକ୍ତି ଏତେ ବେଶୀ ନୁହେଁ । ଚିନାବାଦାମର ଏହି ବୈପ୍ଳବିକ ଉତ୍ପାଦନ କ୍ଷମତା ବୃଦ୍ଧି ନିମନ୍ତେ ଏ ସରକାର ଯେଉଁ ଉଦ୍ୟମ କରିଛନ୍ତି ତାହା ସମସ୍ତଙ୍କୁ ଜଣା । ଆଠବର୍ଷ ତଳେ ଧାନ ଛଡ଼ା ଅନ୍ୟ କୌଣସି ଫସଲ ପ୍ରତି ଓଡ଼ିଶା କୃଷକର ଆଗ୍ରହ ନଥିଲା । ଜଳସେଚିତ ଅଞ୍ଚଳରେ ଯେଉଁଠି ଦୁଇଥର ଧାନ କରାଯାଉଥିଲା ସେ ଅଞ୍ଚଳରେ ଜଳର ବହୁଳତା ଯୋଗୁଁ କ୍ରମେ ଜମି ଅନ୍ୟ ଚାଷ ପାଇଁ ଅକାମୀ ହୋଇ ଯାଉଥିଲା । ତେଣୁ ଚାଷୀମାନଙ୍କୁ ପରାମର୍ଶ ଦିଆଗଲା ଯେ ଦୁଇଥର ଧାନ ଫସଲ ନକରି ଥରେ ଧାନ ଫସଲ ଏବଂ ଥରେ ଚିନାବାଦାମ ଫସଲ କଲେ ଜମିରେ କମ୍ ପାଣି ଦରକାର ପଡ଼ିବ ଏବଂ ତା ଫଳରେ ଜମି ନଷ୍ଟ ହେବାର ଭୟ ରହିବ ନାହିଁ । ଅଥଚ ଉତ୍ପାଦନ ଦୃଷ୍ଟିରୁ ଚାଷୀକୁ ଅଧିକ ମୂଲ୍ୟ ମିଳିବ । ଏହି ପରାମର୍ଶକୁ କଟକ, ପୁରୀ ଏବଂ ସମ୍ବଲପୁର ଜିଲ୍ଲାମାନଙ୍କରେ ଚାଷୀମାନେ ଗ୍ରହଣ କରି ନେଲେ ଏବଂ ତା ଫଳରେ ଓଡ଼ିଶା ଆଜି ଭାରତ, ବର୍ଷର ଆଦର୍ଶ ହୋଇ ପାରିଛି ।

ଗହମ ଉତ୍ପାଦନ କ୍ଷେତ୍ରରେ ମଧ୍ୟ ଓଡ଼ିଶାର ଚାଷୀମାନେ ଅଭିନନ୍ଦନୀୟ ସାଫଲ୍ୟ ଅର୍ଜନ କରିଛନ୍ତି । ଯଦିଓ ଓଡ଼ିଶା ଗହମର ଦେଶ ନୁହେଁ ତଥାପି ଭାରତରେ ଏକର ପିଛା ଯେତିକି ଗହମ ହୁଏ ଓଡ଼ିଶାରେ ତା'ଠାରୁ ଅଧିକ ହେଉଛି । ସୋରିଷ ଏବଂ ରାଶି ଭଳି ଅନ୍ୟାନ୍ୟ ତୈଳବୀଜ କ୍ଷେତ୍ରରେ ମଧ୍ୟ ଓଡ଼ିଶାର ଉତ୍ପାଦିକା ଶକ୍ତି ସର୍ବଭାରତୀୟ ହାରଠାରୁ ଅଧିକ ରହିଛି । ସେହିଭଳି ଆଖୁ ଏବଂ ଝୋଟ କ୍ଷେତ୍ରରେ ମଧ୍ୟ ଓଡ଼ିଶାର ପ୍ରଶଂସନୀୟ ଅଗ୍ରଗତି ସର୍ବଭାରତୀୟ ସ୍ତରରେ ଚର୍ଚ୍ଚାର ବିଷୟ ହୋଇଅଛି । କେବଳ ଧାନ ଉତ୍ପାଦନ କ୍ଷେତ୍ରରେ ଓଡ଼ିଶା ପଛରେ ପଡ଼ିଯାଇଛି ଏବଂ ସେହି ଉତ୍ପାଦିକା ଶକ୍ତିକୁ ବୃଦ୍ଧି କରିବା ନିମନ୍ତେ ଆମକୁ ଆଜି ସଂକଳ୍ପବଦ୍ଧ ହେବାକୁ ପଡ଼ିବ ।

ଓଡ଼ିଶାର ଅର୍ଥନୀତି କ୍ଷେତ୍ରରେ ଧାନର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କିନ୍ତୁ ଏହି ଧାନ ଚାଷ ନିମନ୍ତେ ଏବେବି ଆମେ ବହୁଳ ଭାବରେ ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁ ଉପରେ ନିର୍ଭର କରୁଛେ । ଗତ ଦୁଇବର୍ଷର ମରୁଡ଼ି ପରିସ୍ଥିତି ଆମର ଧାନ ଉତ୍ପାଦନକୁ ଅନେକ ପରିମାଣରେ କମାଇ ଦେଇଛି । କୃଷିର ଉନ୍ନତି ଧାରାବାହିକ ଭାବରେ ନିରବଚ୍ଛିନ୍ନ ନ ରହିଲେ ଶିଳ୍ପର ଯେତେ ଉନ୍ନତି ହେଲେ ମଧ୍ୟ ଆମର ଅର୍ଥନୀତି ଆଶାନୁଯାୟୀ ଅଗ୍ରଗତି ହୋଇ ପାରିବ ନାହିଁ । ଗତବର୍ଷ ଶିଳ୍ପ କ୍ଷେତ୍ରରେ ଆମର ଉନ୍ନତି ଶତକଡ଼ା ୧୧ ଭାଗ ବୃଦ୍ଧି ପାଇଥିଲେ ମଧ୍ୟ କୃଷକର ଅସୁବିଧା ଯୋଗୁଁ ଆମର ଅର୍ଥନୀତି ଉଚିତ ଭାବରେ ଅଗ୍ରଗତି କରି ପାରି ନାହିଁ । ଓଡ଼ିଶାର ଶତକଡ଼ା ୭୦ ଭାଗ ଲୋକ କୃଷି ଉପରେ ନିର୍ଭର କରନ୍ତି ଏବଂ ଚାଷର ଯଦି ଦ୍ରୁତ ପରିବର୍ତ୍ତନ ନହୁଏ ତେବେ ଅନ୍ୟ କ୍ଷେତ୍ରରେ ଦ୍ରୁତ ପରିବର୍ତ୍ତନର ମୂଲ୍ୟ ଆମର ଅର୍ଥନୀତି ଉପରେ କୌଣସି ପ୍ରଭାବ ପକାଇ ପାରିବ ନାହିଁ । ତେଣୁ କୃଷିର ଉନ୍ନତି ଆମର ମୂଳ ଲକ୍ଷ୍ୟ ଏବଂ ଏହି ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ନିମନ୍ତେ ଏବେ ଆଉ ଗଡ଼ିଗୁଡ଼ି ଯିବାର ପ୍ରଶ୍ନ ନାହିଁ । ଦ୍ୱିଗୁଣ ଗତିରେ ଦୌଡ଼ି ଦୌଡ଼ି ଯିବା ସମୟ ଆଜି ଆସିଛି । ଏହି ପରିସ୍ଥିତିକୁ ଲକ୍ଷ୍ୟ ରଖି ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ ଦେଶକୁ ଏକ ବୈପ୍ଳବିକ ଆହ୍ୱାନ ଦେଇଛନ୍ତି ।

ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ ୩ ଗୋଟି ଲକ୍ଷ୍ୟ ଥିଲା—ଖାଦ୍ୟ, କାମ ଏବଂ ଉତ୍ପାଦନ ବୃଦ୍ଧି । କିନ୍ତୁ ଜନସଂଖ୍ୟା ବୃଦ୍ଧି ଦୃଷ୍ଟିରୁ ଆମେ ଆଜି ଏକ ସନ୍ଧିକ୍ଷଣରେ ପହଞ୍ଚି ଯାଇଛେ । ଆମ ପ୍ରଧାନମନ୍ତ୍ରୀ ଆଗାମୀ ଦୁଇବର୍ଷ ଭିତରେ ଖାଦ୍ୟଶସ୍ୟ ଉତ୍ପାଦନ ୧୬ କୋଟି ଟନରୁ ସାଢେ ସତର କୋଟି ଟନକୁ ବଢ଼ାଇବାକୁ ଆହ୍ୱାନ ଦେଇଛନ୍ତି । ଏହି ୧୫୦ ଲକ୍ଷ ଟନ ଅଧିକା ଉତ୍ପାଦନ ଭାରତର ବିଭିନ୍ନ ରାଜ୍ୟ ଭିତରେ ବାଣ୍ଟି ଦିଆଯାଇଛି । ମୁଖ୍ୟମନ୍ତ୍ରୀ ସମ୍ମିଳନୀରେ ଆଲୋଚନା କରାଯାଇ ଓଡ଼ିଶାକୁ ଏକ ଗୁରୁତର ଦାୟିତ୍ୱ ଦିଆ ଯାଇଛି । ଯଦିଓ ଓଡ଼ିଶାର ଲୋକସଂଖ୍ୟା ଭାରତର ଲୋକସଂଖ୍ୟାର ୨୫ ଭାଗରୁ ଭାଗେ ତଥାପି ଓଡ଼ିଶାକୁ ଏହି ଦେଢ଼ କୋଟି ଟନ ଅଧିକ ଖାଦ୍ୟ ଉତ୍ପାଦନର ୧୦ ଭାଗରୁ ଭାଗେ ଉତ୍ପାଦନ କରିବାକୁ ପଡ଼ିବ । ଅର୍ଥାତ୍ ଆମର ଯେତିକି ଶକ୍ତି ବୋଲି ଗ୍ରହଣ କରାଯାଇଛି, ତା'ଠାରୁ ଓଡ଼ିଶା ଅଧିକ ଶକ୍ତିଶାଳୀ ବୋଲି ଦେଖାଇ ଦେବାକୁ ପଡ଼ିବ । ଓଡ଼ିଶାକୁ ଆଗାମୀ ଦୁଇବର୍ଷ ଭିତରେ ଅଧିକା ୧୫ ଲକ୍ଷ ଟନ ଖାଦ୍ୟ ଉତ୍ପାଦନ କରିବାକୁ ପଡ଼ିବ । ଏ ହେଉଛି ଆମ ମାନଙ୍କ ପାଇଁ ଏକ ବୈପ୍ଳବିକ ସଂକଳ୍ପ । ପ୍ରଧାନମନ୍ତ୍ରୀଙ୍କର ଓଡ଼ିଶା ପ୍ରତି ଗୁରୁ ଦାୟିତ୍ୱ ନ୍ୟସ୍ତ କରିବା ବିଶ୍ୱାସକୁ ଆମକୁ ଯୁଦ୍ଧକାଳୀନ ଭିତ୍ତିରେ ଗର୍ବ ଏବଂ ଗୌରବ ସହ କାର୍ଯ୍ୟକାରୀ କରିବାକୁ ପଡ଼ିବ ।

ଏହି ପରିପ୍ରେକ୍ଷୀରେ ଆମକୁ ପ୍ରଥମେ କୃଷିର ବାଧା ବିଷୟରେ ଅବଗତ ହେବାକୁ ପଡ଼ିବ । ଶାସ୍ତ୍ରକାରମାନେ କହିଛନ୍ତି ଯେ, "ଅତିବୃଷ୍ଟି, ଅନାବୃଷ୍ଟି, ମୂଷିକା ସଲଭାସୁକା"—ଏହି ଛଅଟି ବାଧା ଭିତରୁ ଗୋଟିଏ ହେଲା ରାଜାମାନଙ୍କର ସୈନ୍ୟ ଗମନ । ଯୁଦ୍ଧବେଳେ ସୈନ୍ୟମାନେ ଯୁଦ୍ଧକ୍ଷେତ୍ରକୁ ଗଲାବେଳେ ବହୁ ଫସଲ ନଷ୍ଟ ହୋଇ ଯାଉଥାଏ । କିନ୍ତୁ ଆଜି ସେ ପ୍ରଶ୍ନ ଉଠୁନାହିଁ । ବାକି ୫ ଗୋଟି ବାଧା ବର୍ତ୍ତମାନ ମଧ୍ୟ ରହିଛି, ଅତିବୃଷ୍ଟି ଫଳରେ ବନ୍ୟା ହୋଇ ଫସଲ ନଷ୍ଟ ହୋଇଯାଏ । କିନ୍ତୁ ବନ୍ୟା ପରେ ଯେଉଁ ପଟୁମାଟି ଜମିରେ ପଡ଼ିଯାଏ, ସେହି ପଟୁମାଟି କୃଷକକୁ ଏକ ଅବିଶ୍ୱାସ୍ୟ ଆଶୀର୍ବାଦ । କିନ୍ତୁ ଅନାବୃଷ୍ଟିର କୌଣସି ପ୍ରତିକାର ନାହିଁ । ଅନାବୃଷ୍ଟି ଫଳରେ କୃଷକର ମେରୁଦଣ୍ଡ ଭାଙ୍ଗିଯାଏ । ଆଉ ବାଧା ହେଲା ମୂଷିକ । ସବୁ ଜମିରେ ଯେଉଁ ଗାତୁଆ ମୂଷା ରହିଛନ୍ତି ସେମାନେ ଏତେ ଧାନ ଖାଇ ଯାଉଛନ୍ତି ଯେ ତାର ହିସାବ କରି ହେବ ନାହିଁ । ଏକ ମୋଟା ମୋଟି ହିସାବ କରାଯାଇ ଦେଖାଯାଇଛି ଯେ ମୂଷାମାନେ ବର୍ଷକୁ ଭାରତବର୍ଷର ୨୦ ଲକ୍ଷ ଟନ ଅଧିକ ଧାନ ଖାଦ୍ୟଶସ୍ୟ ନଷ୍ଟ କରି ଦିଅନ୍ତି । ଅଥଚ ଆମେ ଦୁଇବର୍ଷରେ ଓଡ଼ିଶାରେ ୧୫ ଲକ୍ଷ ଟନ ଅଧିକ ଧାନ ଉତ୍ପାଦନ କରିବା ନିମନ୍ତେ ଦୃଢ଼ ସଂକଳ୍ପ ନେବାକୁ ପଡୁଛି । ତେଣୁ ଏହି ମୂଷାମାନଙ୍କୁ ଲୋପ କରିବା ପାଇଁ ଆମକୁ ପ୍ରୟାସ ଉଦ୍ୟମ କରିବାକୁ ପଡ଼ିବ । ମୂଷା ମାରିବା ପାଇଁ ପ୍ରକୃତି ସାପ ଏବଂ ଅନ୍ୟାନ୍ୟ ଜୀବଜନ୍ତୁ ସୃଷ୍ଟି କରିଥିଲେ ମଧ୍ୟ ଆମକୁ ଏହି ସଂପର୍କରେ ବିଶେଷ ବ୍ୟବସ୍ଥା କରିବାକୁ ପଡ଼ିବ । କୃଷି ବିଭାଗ ଏ ବିଷୟରେ ଯତ୍ନର ସହିତ ବିଚାର କରି ଉପାୟ ଚିନ୍ତା କରିବେ । ସଲଭ ଅର୍ଥାତ୍ ପଙ୍ଗପାଳ ଓ ଅନ୍ୟାନ୍ୟ ପୋକ, ସେହି ପଙ୍ଗପାଳ ପ୍ରଭୃତି ପୋକମାନେ ଦଳ ଦଳ ହୋଇ ଆସି ବେଳେ ବେଳେ ହଜାର ହଜାର ଏକର ଧାନଜମି ନଷ୍ଟ କରି ଦିଅନ୍ତି । ସେମାନଙ୍କୁ ମାରିବା ପାଇଁ ଅନେକ ପ୍ରକାରର ପୋକମରା ଔଷଧ ମିଳୁଛି । କିନ୍ତୁ ଆମକୁ ଏ ଭଳି ପୋକମରା ଔଷଧ ବ୍ୟବହାର କରିବାକୁ ପଡ଼ିବ ଯେ ଯେପରିକି କ୍ଷତିକାରକ ପୋକ ଓ ପଙ୍ଗପାଳକୁ ନଷ୍ଟକରି ଲାଭଜନକ ପୋକମାନଙ୍କର କୌଣସି କ୍ଷତି କରିବାକୁ ହେବ ନାହିଁ । ଏପରି ଅନେକ ପୋକ, ଜିଆ ଏବଂ ଏବଂ ଅନ୍ୟାନ୍ୟ ଜନ୍ତୁ ମୃତ୍ତିକାରେ ଅଛନ୍ତି, ଯେଉଁମାନେ ଉଦ୍ଭିଦକୁ ବାୟୁମଣ୍ଡଳରୁ ଯବକ୍ଷାରଜାନ ଗ୍ରହଣ କରିବାରେ ସାହାଯ୍ୟ କରିଥାନ୍ତି । ତେଣୁ ଯେଉଁ ଜୀବାଣୁମାନେ ମୃତ୍ତିକାର ଉତ୍ପାଦନ କ୍ଷମତା ବୃଦ୍ଧି କରିଥାନ୍ତି ସେମାନଙ୍କର କୌଣସି କ୍ଷତି କରିବା ଅନୁଚିତ । ଶେଷ ବାଧା ହେଲା ପକ୍ଷୀ, ଠିକ୍ ଧାନ ପାଚିବା ବେଳକୁ ହଜାର ହଜାର ସଂଖ୍ୟାରେ ପକ୍ଷୀ ଉଡ଼ିଆସି ଦରପାଚିଲା ଧାନର ସ୍ୱାଦ ଉପଭୋଗ କରନ୍ତି । ଏଥିପାଇଁ ମଧ୍ୟ ଆମକୁ ପ୍ରତିକାର କରିବାକୁ ପଡ଼ିବ ।

କିନ୍ତୁ ସବୁଠାରୁ ଭୟାନକ କ୍ଷତି କରାଏ ଅନାବୃଷ୍ଟି । ସେହି ଅନାବୃଷ୍ଟି ବିରୋଧରେ ଓଡ଼ିଶା ସରକାର ଏକ ଧ୍ୱନି ଦେଇଛନ୍ତି, ତାହା ହେଉଛି ଆଗାମୀ ଦୁଇବର୍ଷ ଜଳସେଚନ ବର୍ଷ ରୂପେ ପାଳନ କରାଯିବ । ଯଦି ଓଡ଼ିଶାରେ ଜଳସେଚନ ସୃଷ୍ଟି କରାଯାଇ ପାରିବ, ଯଥେଷ୍ଟ ପରିମାଣରେ ଜଳଭଣ୍ଡାର ସୃଷ୍ଟି କରାଯାଇ ପାରିବ, ତା'ହେଲେ ଜଳର ସ୍ୱଳ୍ପତା ଆମର କୃଷିକ୍ଷେତ୍ରରେ ଧାର୍ଯ୍ୟ ଲକ୍ଷ୍ୟଠାରେ ଆମକୁ ନିଶ୍ଚିତ ଭାବରେ ପହଞ୍ଚାଇ ଦେଇ ପାରିବ । ତେଣୁ ଏହି କାର୍ଯ୍ୟକ୍ରମକୁ ଆମକୁ ସଫଳତାର ସହିତ କାର୍ଯ୍ୟକାରୀ କରିବାକୁ ପଡ଼ିବ ।

ଜଳସେଚନ କହିଲେ ବୁଝାଏ କ୍ଷୁଦ୍ର ଜଳସେଚନ, ମଧ୍ୟମ ଜଳସେଚନ, ଉଠାଜଳସେଚନ, ସେଚକୂପ, ଓ ଜଳାଶୟ ଇତ୍ୟାଦି ନିର୍ମାଣ । ଯେତେ ବାଟରେ ଯେତେ ଅଧିକ ପାଣି ଯୋଗାଇ ଦିଆ ଯାଇ ପାରିବ, ଚାଷୀ ସେତେ ଅଧିକ ଉତ୍ପାଦନ କରି ପାରିବ । ତେଣୁ ରାଜ୍ୟ ସରକାର ନିଷ୍ପତ୍ତି ନେଇଛନ୍ତି ଯେ ଆଗାମୀ ୨ ବର୍ଷ ଭିତରେ ଓଡ଼ିଶାରେ ଆଉ ୫ ଲକ୍ଷ ହେକ୍ଟରରୁ ଅଧିକ ଜମିରେ ଜଳସେଚନ କରାଯିବ ଏବଂ ଏଥିନିମନ୍ତେ ଅର୍ଥର ଆବଶ୍ୟକତା

ପଡ଼ିଲେ ଅନ୍ୟକ୍ଷେତ୍ରରୁ ଖର୍ଚ୍ଚ କାଟ କରି ଜଳସେଚନ ନିମନ୍ତେ ଯୋଗାଇ ଦିଆଯିବ । ଆସନ୍ତା ୨ ବର୍ଷ ଭିତରେ ଓଡ଼ିଶାରେ ବିପୁଳ ଜଳତରଙ୍ଗ ସୃଷ୍ଟିଆଡେ ଖେଳିଯିବ ଏବଂ ତାରି ଫଳରେ ଉର୍ବରା ଓଡ଼ିଶା ଆହୁରି ଅଧିକ ଶସ୍ୟଶ୍ୟାମଳା ହୋଇ ସବୁଜ ବର୍ଣ୍ଣରେ ସଦାସର୍ବଦା ଆଚ୍ଛାଦିତ ହୋଇ ରହି ପାରିବ । ଆମ ଓଡ଼ିଶାରେ ତ୍ରିକୋଣଭୂମି ଜଳସେଚନ ଯୋଜନା ସୃଷ୍ଟିଥିଲା, କିନ୍ତୁ ୧୯୬୦–୬୨ ମସିହାରେ ସେତେବେଳେର ସରକାର ଅର୍ଥର ଅଭାବ ଯୋଗୁଁ ସେହି ତ୍ରିକୋଣଭୂମି ଜଳସେଚନ ଯୋଜନାକୁ ଆଉ କାର୍ଯ୍ୟକାରୀ କରାଇ ପାରିଲେ ନାହିଁ । ତା' ଫଳରେ ଅନେକ କେନାଲରୁ କେନାଲ (Distributary) ହୋଇ ପାରିନାହିଁ । କଟକ ଏବଂ ପୁରୀ ଜିଲ୍ଲାରେ ଅନେକଗୁଡ଼ିଏ ଦ୍ୱୀପ ବା ଆଇଲ୍ୟାଣ୍ଡ ଅଛି, ଯେଉଁଠି ଅଳ୍ପ ଖର୍ଚ୍ଚ କରି କେନାଲ କରିଦେଲେ ହଜାର ହଜାର ଏକର ଜଳସେଚନ ହୋଇପାରିବ । ସେହିପରି ହୀରାକୁଦ, ଋଷିକୁଲ୍ୟା ପ୍ରଭୃତି କେନାଲ ସଂସ୍ଥାକୁ ମରାମତି କରାଇ ମଜବୁତ କରିଦେଲେ ଆହୁରି ହଜାର ହଜାର ଏକର ଜମିକୁ ଆମେ ପାଣି ମଡ଼ାଇ ପାରିବା ।

ତେଣୁ ଆମ ସରକାର ନିଷ୍ପତ୍ତି ନେଇଛନ୍ତି, ଯଥାବିହିତ ଅର୍ଥ ବ୍ୟୟ କରି ଏହି ତ୍ରିକୋଣଭୂମି ଜଳସେଚନକୁ ଯଥାସମ୍ଭବ ସଂପୂର୍ଣ୍ଣ କରି ବର୍ତ୍ତମାନ ଥିବା କେନାଲ ବ୍ୟବସ୍ଥାକୁ ମରାମତି ଓ ମଜବୁତ କରିବେ ।

ସେହିଭଳି ଅନ୍ୟ ଗୋଟିଏ ଯେ କଥା ହେଉଛି ଉଠା ଜଳସେଚନ ଯୋଜନା କମ୍ ଅର୍ଥ ବ୍ୟୟ କରି ୨/୩ ମାସ ମଧ୍ୟରେ ଗୋଟିଏ ଗୋଟିଏ ଉଠା ଜଳସେଚନ ଯୋଜନା ଚାଷୀମାନଙ୍କୁ ପ୍ରଚୁର ସାହାଯ୍ୟ କରିପାରିବ । ପ୍ରତ୍ୟେକ ଜିଲ୍ଲାର ପ୍ରତ୍ୟେକ ବ୍ଲକ୍‌ରେ ଉଠା ଜଳସେଚନ ଦ୍ୱାରା ୫୦୦/୧୦୦୦ ଏକର ଜମି ଜଳସେଚିତ କରାଯାଇ ପାରିବ । ଏଭଳି ଯୋଜନାକୁ ଆସନ୍ତା ୨ ବର୍ଷ ଭିତରେ ଶେଷ କରିବାକୁ ସରକାର ନିଷ୍ପତ୍ତି ନେଇଛନ୍ତି ।

ଅନ୍ୟ ଏକ ଯୋଜନା ହେଉଛି, ଜଳ ଅମଳ ଯୋଜନା । ପାହାଡ଼ ପର୍ବତ ଉପରେ ବର୍ଷା ହୋଇ ଯେଉଁ ପାଣି ନଦୀରେ ଯାଇ ସମୁଦ୍ରରେ ମିଶି ଯାଉଛି, ସେହି ପାଣିକୁ ବନ୍ଧାଇ ମରୁଡ଼ି ସମୟରେ ଚାଷୀକୁ ଅନ୍ତତଃ ଖରିଫ୍ ଫସଲ କରିବା ପାଇଁ ସୁଯୋଗ ଦିଆଯିବ, ଛୋଟ ଛୋଟ ନାଳମାନଙ୍କରେ ଯଦି ସିମେଣ୍ଟ ତାର ଜାଲିଦ୍ୱାରା ନୂଆ ପନ୍ଥାରେ ଆଡ଼ିବନ୍ଧ ତିଆରି କରାଯାଇ ପାରିବ, ତା' ହେଲେ ସେହି ବନ୍ଧରେ ରହିଥିବା ପାଣି ଦ୍ୱାରା ମରୁଡ଼ିରୁ ଅନେକ ଜମି ବଞ୍ଚିଯାଇ ପାରିବ ।

ଅନ୍ୟ ଏକ ଉପାୟ ହେଉଛି, ସେଚକୂପ । ସେଚକୂପ ସାହାଯ୍ୟରେ ତେଣ୍ଡା ଦ୍ୱାରା ଜଳ ଉଠାଇ ଅନେକ ଜମି ଚାଷ ହୋଇ ପାରିବ। ଭାରତ ସରକାରଙ୍କ ସାହାଯ୍ୟରେ ରାଜ୍ୟ ସରକାର ଏପରି ୨୫,୦୦୦ ସେଚକୂପ, ନଳୀକୂଅ ବା ନୂଆକୂଅରେ କରିବାକୁ ନିଷ୍ପତ୍ତି ନେଇଛନ୍ତି । ଆଦିବାସୀ ହରିଜନମାନଙ୍କ ନିମନ୍ତେ ଏ ଭଳି କୂଅ ଖୋଳିବା ପାଇଁ ୯,୩୦୦ ଟଙ୍କା ପର୍ଯ୍ୟନ୍ତ ସାହାଯ୍ୟ କରାଯିବ । ଚାଷୀମାନଙ୍କୁ ଇ. ଆର. ଆର. ପି. ବା ଆଇ. ଆର. ଡି. ପି. ଦ୍ୱାରା ଏହିଭଳିଆ କୂଅ କରିବାକୁ ଉତ୍ସାହ ଦିଆଯିବ । ଯେଉଁଠି ଆଦିବାସୀ ବା ହରିଜନ ନାହାନ୍ତି, ସେପରି ସ୍ଥାନମାନଙ୍କରେ ନାମମାତ୍ର ଚାଷୀ ଏବଂ କ୍ଷୁଦ୍ରଚାଷୀମାନଙ୍କୁ ୨୦,୦୦୦ ଟଙ୍କା ଋଣ ଦିଆଯିବ । ଏଭଳି ୨୫୦୦୦ ଅଗଭୀର ନଳକୂପ ପାଇଁ ୨୩ କୋଟି ଟଙ୍କା ଏବଂ କୂପମାନଙ୍କ ପାଇଁ ୬ କୋଟି ଟଙ୍କା ଖର୍ଚ୍ଚ ହେବ। ତା' ଛଡ଼ା ପ୍ରଧାନମନ୍ତ୍ରୀଙ୍କ ନିଷ୍ପତ୍ତି ଅନୁସାରେ ଆଉ ୫୦୦୦ କୂଅ ଖୋଳିବାକୁ ସ୍ଥିର କରାଯାଇଛି । ଏହିପରି ୫୦,୦୦୦ କୂଅ ଆସନ୍ତା ୨ ବର୍ଷ ଭିତରେ ଖୋଳିବା ପାଇଁ ସରକାର ନିଷ୍ପତ୍ତି ନେଇଛନ୍ତି । ଓଡ଼ିଶାରେ ଏତେ ଅଗଭୀର ନଳକୂପ ଏବଂ କୂଅ ଖୋଳିବାର ଯୋଜନା ଆଗରୁ କେବେ ହୋଇ ନ ଥିଲା । ଅଧିକ ଖାଦ୍ୟ ଉତ୍ପାଦନ ନିମନ୍ତେ ଏହିପରି ନିଷ୍ପତ୍ତିକୁ ସଫଳତାର ସହିତ କାର୍ଯ୍ୟକାରୀ କରାଇବାର ଭାର ଓଡ଼ିଶାର କୃଷକ ବନ୍ଧୁମାନେ ଆଗ୍ରହର ସହିତ ନେବେ ବୋଲି ମୁଁ ଆଶା କରୁଛି ।

ଜଳସେଚନ ଛଡ଼ା ଚାଷୀର ଅର୍ଥ ଏକ ବିରାଟ ଅନ୍ତରାୟ । ଏବେ ସାଧାରଣ ଖରିଫ୍ ଫସଲ ପାଇଁ ସମବାୟ ଋଣ ୧,୫୦୦ ଟଙ୍କା, High Yeilding ଧାନପାଇଁ ଟ୩,୫୦୦ ଏବଂ ଆଖୁ ଚାଷ ପାଇଁ ଟ୭,୫୦୦ ମିଳୁଛି । ରାଜ୍ୟ ସରକାର ନିଷ୍ପତ୍ତି ନେଇଛନ୍ତି ଯେ ଏହି ଋଣର ପରିମାଣ ଆଉ ୫୦୦ ଟଙ୍କା ବଢ଼ାଇ ଦିଆଯିବ । ଅର୍ଥାତ୍ ସାଧାରଣ ଖରିଫ୍ ଫସଲ ପାଇଁ ଟ୧,୫୦୦ ସ୍ଥାନରେ ସମବାୟ ଋଣ ଟ୨୦୦୦ ପର୍ଯ୍ୟନ୍ତ ଦିଆଯିବ । High Yeilding ଧାନ ପାଇଁ ଟ୩,୫୦୦ ବଦଳରେ ଟ୪,୦୦୦ ଏବଂ ଆଖୁ ଚାଷ ନିମନ୍ତେ ଟ୮୦୦୦ ଦିଆଯିବ । ଏହି ଋଣକୁ ତୁରନ୍ତ ଯୋଗାଇ ଦେବାପାଇଁ ସରକାର ନିଷ୍ପତ୍ତି ନେଇଛନ୍ତି ଯେ ମାସକ ଭିତରେ ଚାଷୀକୁ ସମବାୟ ସଂସ୍ଥା ତାଙ୍କର କାଗଜପତ୍ର ଦେଖି ଓ ଅନୁସନ୍ଧାନ କାର୍ଯ୍ୟ ସଂପୂର୍ଣ୍ଣ କରି ଋଣ ଯୋଗାଇ ଦେବେ । ଏ ସଂପର୍କରେ ଅନ୍ୟ ଏକ ପ୍ରଶ୍ନ ହେଉଛି, ଋଣ ଛାଡ଼ କରିବା । କିନ୍ତୁ ଚାଷୀମାନଙ୍କର ନିଜର ଟଙ୍କା ସମବାୟ ସମିତିରେ ଜମା ରହିଛି ଏବଂ ସେହି ଟଙ୍କା ଋଣ ଆକାରରେ ଚାଷୀମାନଙ୍କୁ ଦିଆଯାଉଛି । ଯଦି ଋଣ ନେଇ ଚାଷୀ ଋଣ ଛାଡ଼ ପାଇଁ ଦାବୀ କରନ୍ତି, ତା ହେଲେ ଆଗାମୀ ଋଣ ନେବା ପାଇଁ ଟଙ୍କା କେଉଁଠୁ ଆସିବ ? ଏହି ଋଣ ଛାଡ଼ କେବଳ ଏକ ରାଜନୈତିକ ଧ୍ୱନି । କୌଣସି ରାଜ୍ୟରେ ଚାଷୀମାନଙ୍କୁ ଋଣ ଛାଡ଼ କରା ଯାଇ ନାହିଁ । ଭାରତର ହରିଆନା, କର୍ଣ୍ଣାଟକ ବା ପଶ୍ଚିମ ବଙ୍ଗ ସରକାର ଋଣ ଛାଡ଼ କରି ପାରିନାହାନ୍ତି । ତେଣୁ ଏହି ଋଣ ଛାଡ଼ଧ୍ୱନି କେବଳ ରାଜନୈତିକ ଛଳନା ଛଡ଼ା ଆଉ କିଛି ନୁହେଁ ତଥାପି ରାଜ୍ୟ ସରକାର ନିଷ୍ପତ୍ତି ନେଇଛନ୍ତି ଯେ ରାଜ୍ୟର ଯେଉଁ ଆଦିବାସୀ, କ୍ଷୁଦ୍ର ବା ନାମମାତ୍ର ଚାଷୀ ୨୫୦ ଟଙ୍କା ପର୍ଯ୍ୟନ୍ତ ଋଣ ନେଇଛନ୍ତି, ସେହି ଋଣକୁ ଛାଡ଼ କରିଦିଆଯିବ । ଏହିଭଳି ଆମର ପ୍ରାୟ ୮୦,୦୦୦ ଚାଷୀ ଅଛନ୍ତି । ଦାରିଦ୍ର୍ୟ ବିରୋଧୀ କାର୍ଯ୍ୟକ୍ରମ ଅନୁସାରେ ସେହି ଚାଷୀମାନଙ୍କର ଏହି ଋଣ ଭରଣା କରି ଦିଆଯିବ ଏବଂ ସେହି କ୍ଷୁଦ୍ର ଏବଂ ନାମମାତ୍ର ଚାଷୀମାନେ କେବଳ ଋଣ ମୁକ୍ତ ହେବେ ନାହିଁ, ବରଂ ଅଧିକ ଋଣ ପାଇବା ନିମନ୍ତେ ଯୋଗ୍ୟ ବିବେଚିତ ହେବେ ।

ଓଡ଼ିଶାର ଚାଷୀମାନଙ୍କ ପାଇଁ ଅନ୍ୟ ଏକ ବ୍ୟବସ୍ଥା ରାଜ୍ୟ ସରକାର ଗ୍ରହଣ କରିଛନ୍ତି, ଯାହା ଅନ୍ୟ କୌଣସି ରାଜ୍ୟରେ କରାଯାଇନାହିଁ । ତାହା ହେଉ, ବୀମା ଯୋଜନା । ଏହି ଯୋଜନା ପଞ୍ଚାୟତ ସ୍ତରରେ କାର୍ଯ୍ୟକାରୀ କରାଯାଇଅଛି । ଆଗରୁ ଏହା ଜିଲ୍ଲା ସ୍ତରରେ କରାଯାଉଥିଲା, ଅର୍ଥାତ ସମଗ୍ର ଜିଲ୍ଲାରେ ଯଦି ୫୦ ଭାଗରୁ ଅଧିକ ଫସଲ ନଷ୍ଟ ହୋଇ ଯାଏ, ତା' ହେଲେ ସେଉଁମାନେ ବୀମା କରିଥିବେ, ତାଙ୍କୁ କ୍ଷତିପୂରଣ ଦିଆଯାଉଥିଲା । କିନ୍ତୁ ଏହି ଭଳି ସମଗ୍ର ଜିଲ୍ଲା ବା ବ୍ଲକକୁ ଧରିଲେ ଚାଷୀ ଉପକୃତ ହୋଇ ପାରୁ ନଥିଲେ ତେଣୁ ରାଜ୍ୟ ସରକାର ଏବେ ନିଷ୍ପତ୍ତି ନେଇଛନ୍ତି ଯେ ଯଦି କୌଣସି ପଞ୍ଚାୟତରେ ଶତକଡ଼ା ୫୦ ଭାଗରୁ ଅଧିକ ଭାଗ ଫସଲ ନଷ୍ଟ ହୋଇଥିବ, ତାହାହେଲେ ବୀମା କରିଥିବା ଚାଷୀଙ୍କୁ ଉପଯୁକ୍ତ କ୍ଷତିପୂରଣ ଦିଆଯିବ, ଆମର ଯୁକ୍ତି ହେଲା ଯେ ଯଦି ଶିଳ୍ପପତି ତାର ଶିଳ୍ପ ନିମନ୍ତେ ବୀମା କରି ପାରୁଛି, ଏପରିକି ବ୍ୟକ୍ତିଗତ ଭାବରେ ମୋଟର ଗାଡ଼ି ଥିବା ଲୋକ ମୋଟର ଗାଡ଼ିକୁ ବୀମା କରି ପାରୁଛି ତା' ହେଲେ ଚାଷୀମାନଙ୍କୁ ସେଥିରୁ ବଞ୍ଚିତ କରାଯିବ ବା କାହିଁକି ? ଗଲବର୍ଷ ଏହି ବୀମା ବ୍ୟବସ୍ଥା ଦ୍ୱାରା ୧ ଲକ୍ଷ ୨୦ ହଜାର ଓଡ଼ିଆ ଚାଷୀ ଲାଭ ପାଇ ପାରିଛନ୍ତି ଏବେ ଏହି ବୀମା ବ୍ୟବସ୍ଥା ପଞ୍ଚାୟତ ବଦଳରେ ଗାଁ ଭିତିରେ କରିବାକୁ ପ୍ରସ୍ତାବ ଦିଆଯାଇଛି ଏବଂ ଏହି ପ୍ରସ୍ତାବ ବର୍ତ୍ତମାନ ଭାରତ ସରକାରଙ୍କର ବିଚାରାଧୀନ ଅଛି । ଏହି ବୀମା କ୍ଷତିପୂରଣ ପାଇଁ ଶତକଡ଼ା ୩ ଭାଗରୁ ଭାଗେ ରାଜ୍ୟ ସରକାରଙ୍କୁ ଦେବା ପାଇଁ ପଡ଼ିବ ଏବଂ ବଳକା ଦୁଇଭାଗ ଭାରତ ସରକାର ଦେବେ ।

ଉନ୍ନତ ଧରଣର ଧାନଚାଷ କରିବା ପାଇଁ ଚାଷୀଙ୍କୁ ସାହାଯ୍ୟ କରିବା ନିମନ୍ତେ ଆହୁରି ଅନେକ ସୁବିଧା ବର୍ତ୍ତମାନ ୧୭୯ଟି ବ୍ଲକରେ ପ୍ରଚଳନ କରାଯାଉଛି । ସେଗୁଡ଼ିକ ହେଉଛି ଯେ ଶତକଡ଼ା ୫୦ ଭାଗ ରିହାତି ଦରରେ ଉତ୍କୃଷ୍ଟ ସାର, ରୋଗ ଓ କୀଟନାଶକ ଔଷଧ ଓ ସ୍ପ୍ରେୟାର ଓ ଅନ୍ୟ ଯନ୍ତ୍ରପାତି ଯୋଗାଇ ଦିଆଯିବ । ମହିଳା ଚାଷୀ ଏବଂ କୃଷି ଶ୍ରମିକମାନଙ୍କୁ ବୈଜ୍ଞାନିକ ପ୍ରଣାଳୀରେ ଚାଷ କରିବାକୁ ତାଲିମ ଦିଆଯିବ । ବାକୀ ୧୩୫ ବ୍ଲକରେ ଚାଷୀମାନଙ୍କୁ ସାଢ଼େ ସତ ଭାଗ ରିହାତି ଦରରେ ସାର ଯୋଗାଇ ଦିଆଯିବ । ଓଡ଼ିଶାରେ ବର୍ତ୍ତମାନ ସାରର ବ୍ୟବହାର କମ ହେଉଛି । ତୁଳନାତ୍ମକ ଭାବରେ ଦେଖିଲେ ଅନ୍ୟାନ୍ୟ ରାଜ୍ୟମାନେ ୧୦୦କେଜି ସାର ନେଉଥିବାବେଳେ ଓଡ଼ିଆ ଚାଷୀ ମାନେ ମାତ୍ର ୧୬/୧୭ କେଜି ସାର ନେଉଛନ୍ତି । ପ୍ରକୃତିକ ସାର ଯଥା, ଗୋବରଖତ ଓ କମ୍ପୋଷ୍ଟ ଖତ କ୍ରମେ କମିଯିବା ହେତୁ ରାସାୟନିକ ସାର ବ୍ୟବହାର ବୃଦ୍ଧି କରିବାକୁ ପଡ଼ିବ । କେତେ ଲୋକଙ୍କର ଭୁଲ ଧାରଣା ଅଛି ଯେ କେବଳ ଜଳସେଚିତ ଜମିରେ ସାର ଦିଆଯିବ । କିନ୍ତୁ ଏହା ଠିକ୍ ନୁହେଁ । ଆକାଶ ପାଣିଆ ବା ଡିପ ଜମିରେ କେବଳ ବର୍ଷା ଉପରେ ନିର୍ଭର କରୁଥିବା ଜମିରେ ମଧ୍ୟ ସାର ବ୍ୟବହାର କରାଯିବା ଆବଶ୍ୟକ । ଅଧିକ ଖାଦ୍ୟ ଉତ୍ପାଦନ ନିମନ୍ତେ ସାରର ବ୍ୟବହାର ହିଁ ଏକମାତ୍ର ଉପାୟ ।

ଏହା ଛଡ଼ା ଚାଷୀମାନଙ୍କର ଅନ୍ୟ ଏକ ଦାବୀ ଅଛି । ତାହା ହେଉଛି, ସାର, ଉନ୍ନତ ବିହନ, ପୋକମରା ଔଷଧ ଓ ଯନ୍ତ୍ରପାତି ଗୋଟିଏ ସ୍ଥାନରେ ମିଳିବା ଆବଶ୍ୟକ । ବିଭିନ୍ନ ଜିନିଷ ସକାଶେ ବିଭିନ୍ନ ଜାଗାକୁ ଯାଇ ଅର୍ଥ ଓ ସମୟର ଅପବ୍ୟବହାର କରିବା ପାଇଁ ଚାଷୀର ସମ୍ବଳ ନାହିଁ । ତେଣୁ ଏବେ ନିଷ୍ପତ୍ତି ନିଆଯାଇଛି ଯେ ଆଗ୍ରୋଇଣ୍ଡଷ୍ଟ୍ରିଜ୍ କର୍ପୋରେସନ ଗୋଟିଏ କେନ୍ଦ୍ର ସ୍ଥାନରେ ସାର, ବିହନ ଏବଂ ପୋକମରା ଔଷଧ ଯୋଗାଇ ଦେବେ । ପ୍ରତ୍ୟେକ ବ୍ଲକରେ ବର୍ତ୍ତମାନ ଗୋଟିଏ ବିହନ ବିକ୍ରୟ କେନ୍ଦ୍ର ଅଛି । ରାଜ୍ୟ ସରକାର ନିଷ୍ପତ୍ତି ନେଇଛନ୍ତି ଯେ ପ୍ରତ୍ୟେକ ବ୍ଲକରେ ୨ଟି ବିହନ ବିକ୍ରୟ କେନ୍ଦ୍ର ଖୋଲାଯିବ । ଏହାଛଡ଼ା ରାଜ୍ୟରେ ସାର ବିକ୍ରି ନିମନ୍ତେ ଏକ ହଜାର ନୂଆ କେନ୍ଦ୍ର ସୃଷ୍ଟି କରାଯିବ । କଣ୍ଟ୍ରୋଲ ଡିଲରମାନେ ମଧ୍ୟ ଏହି ସାର ବିକ୍ରି କରିବେ । କଣ୍ଟ୍ରୋଲ ଡିଲରମାନେ ୧୦ କେ.ଜି. ପ୍ୟାକେଟ ସାର ବିକ୍ରୟ କରିବେ । ଏହି ୧୦ କେଜିଆ ସାର ପୁଡ଼ିଆ ପାଇଁ ଯେଉଁ ୩ ଟଙ୍କା ଅଧିକ ଖର୍ଚ୍ଚ ହେଉଛି, ସେହି ଅଧିକା ଟଙ୍କା ସରକାର ବହନ କରିବେ । ଏତଦ୍ୱାରା ୧୦ କେଜିଆ ପୁଡ଼ିଆରେ ସାରର ମୂଲ୍ୟ ଯାହା ପଡ଼ିବ, ସେହି ହାରରେ ୫୦ କେଜିଆ ବସ୍ତାର ସାରର ଦାମ ମଧ୍ୟ ସେଇଆ ପଡ଼ିବ ।

ଅଧିକ ଧାନ ଉତ୍ପାଦନ ନିମନ୍ତେ ବର୍ଷକୁ ୧୪ଟି ବ୍ଲକ ବଛା ଯାଇ ପ୍ରତ୍ୟେକ ବ୍ଲକକୁ ଏକ ଲକ୍ଷ ଟଙ୍କା ପୁରସ୍କାର ଦିଆଯିବ ଏବଂ ଏହି ପୁରସ୍କାର ଟଙ୍କା ସେହି ସେହି ବ୍ଲକମାନେ କୃଷି ନିମନ୍ତେ ଲଗାଇବେ । ବ୍ୟକ୍ତିବିଶେଷ ଚାଷୀମାନଙ୍କୁ ଧାନ ଉତ୍ପାଦନ ନିମନ୍ତେ ଏକହଜାର ଟଙ୍କା ପୁରସ୍କାର ଦିଆଯିବ । ମୋର ଆଶା ଏହି ନିଷ୍ପତ୍ତି ଫଳରେ ଚାଷୀମାନେ ଉପକୃତ ହୋଇ ପାରିବେ ଏବଂ ଓଡ଼ିଶାରେ ୧୫ ଲକ୍ଷ ଟନ ଅଧିକା ଧାନ ଉତ୍ପାଦନ କରିହେବ ।

ଧାନ ଏବଂ ତୈଳବୀଜ ବ୍ୟତୀତ ଫଳ ଓ ପନିପରିବା ଚାଷ ନିମନ୍ତେ ରାଜ୍ୟ ସରକାର ଅନେକ ସୁବିଧା ଘୋଷଣା କରିଛନ୍ତି । କାର୍ଡ ଜରିଆରେ ପୁରା ବାଣ୍ଟିବାକୁ ନିଷ୍ପତ୍ତି କରାଯାଇଛି । ହରିଜନ ଚାଷୀମାନଙ୍କୁ ନିଜ ବାଡ଼ିରେ ଫଳଗଛ ଚାଷ କରିବା ନିମନ୍ତେ ଔଷଧ ପାଇଁ ୧୦୦ଟଙ୍କା ଲେଖାଏ ସାହାଯ୍ୟ ଦିଆଯିବ । ସାଧାରଣ, କ୍ଷୁଦ୍ର ଓ ନାମମାତ୍ର ଚାଷୀ ଫଳ ବଗିଚା କରିବାପାଇଁ ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଜରିଆରେ ବ୍ୟବସ୍ଥା କରାଯାଇଛି । କଦଳୀ ଚାଷ, ଆମ୍ବ ଚାଷ ଇତ୍ୟାଦି ଫଳ ଚାଷ ଉତ୍ସାହିତ କରିବା ନିମନ୍ତେ ଓ ବ୍ୟାପକ ଭାବରେ ପ୍ରବର୍ତ୍ତନ କରିବା ନିମନ୍ତେ ବ୍ୟବସ୍ଥା ଗ୍ରହଣ କରାଯାଇଛି ।

ଓଡ଼ିଶାରେ ନୂଆ ନୂଆ ଫସଲ ପ୍ରବର୍ତ୍ତନ କରିବା ପାଇଁ ରାଜ୍ୟ ସରକାର ନିଷ୍ପତ୍ତି ନେଇଛନ୍ତି । ଏହିପରି ଏକ ଫସଲ ହେଉଛି ସୋୟାବିନ୍ । ଯେଉଁ କିଛି ଜମିରେ ଧାନ ଏପରିକି ମାଣ୍ଡିଆ ମଧ୍ୟ ହୁଏନାହିଁ, ସେହିଭଳି ଜମିରେ ସୋୟାବିନ୍ ଚାଷ କରାଯାଇ ପାରିବ । ଏବର୍ଷ ଓଡ଼ିଶାରେ ୨୦,୦୦୦ ହେକ୍ଟର ଜମିରେ ସୋୟାବିନ୍ ଚାଷ କରାଯିବା ନିମନ୍ତେ ନିଷ୍ପତ୍ତି ନିଆ ଯାଇଛି ଏବଂ ଏହି ସୋୟାବିନ୍‌ର ବିକ୍ରି ବ୍ୟବସ୍ଥା ମଧ୍ୟ ସରକାର କରିବେ ।

## ମୃତ୍ତିକା କ୍ଷୟ

ବିଭିନ୍ନ ପ୍ରାକୃତିକ ସଂପଦମାନଙ୍କ ମଧ୍ୟରୁ ମୃତ୍ତିକା ଫସଲ ଉତ୍ପାଦନ ପାଇଁ ଏକାନ୍ତ ଆବଶ୍ୟକ । ଉପଗ୍ରହ ମାଧ୍ୟମରେ ନିଆଯାଇଥିବା ଫଟୋଚିତ୍ରର ବିଶ୍ଳେଷଣରୁ ଜଣାପଡ଼ିଛି ଯେ ଓଡ଼ିଶାର କ୍ଷେତ୍ରଫଳର ଅର୍ଦ୍ଧାଂଶରୁ ଅଧିକ ଜମିରେ ମୃତ୍ତିକା କ୍ଷୟ ଘଟୁଛି । ମୃତ୍ତିକା ସଂରକ୍ଷଣ କାର୍ଯ୍ୟକ୍ରମ ମାଧ୍ୟମରେ ମୃତ୍ତିକା ଓ ଉର୍ବରତା କ୍ଷୟକୁ ନିରୋଧ କରି ଜମିର ଉତ୍ପାଦିକା ଶକ୍ତି ବୃଦ୍ଧି କରିବା ଦିଗରେ ଗୁରୁତ୍ୱ ଦିଆଯାଇଛି ।

ମୃତ୍ତିକା କ୍ଷୟଜନିତ ବିଭିନ୍ନ ସମସ୍ୟାଗୁଡ଼ିକ ସମାଧାନ ନିମିତ୍ତ ନାନାବିଧ ଉପାୟ ଅବଲମ୍ବନ କରାଯାଇଛି । ଅଦ୍ୟାବଧି ୧ ଲକ୍ଷ ୭୧ ହଜାର ୯ ଶହ ୩୨ ହେକ୍ଟରେ ଚାଷୀଙ୍କ ଜମିରେ ଭୂ-ଉନ୍ନୟନ କରାଯାଇ ମୃତ୍ତିକା ଓ ଜଳସଂରକ୍ଷଣ ଦ୍ୱାରା ଫସଲ ଉତ୍ପାଦନ ବୃଦ୍ଧି କରାଯାଇଛି । ୧ ଲକ୍ଷ ୨୭ ହଜାର ୯ ଶହ ୩୯ ହେକ୍ଟର ପତିତ ଓ କ୍ଷୟିଷ୍ଣୁ ଜମିରେ ବିଭିନ୍ନ ପ୍ରକାର ବୃକ୍ଷରୋପଣ କରାଯାଇ ପରିବେଶର ଉନ୍ନତି କରିବା ସଙ୍ଗେସଙ୍ଗେ ମୃତ୍ତିକା ସଂରକ୍ଷଣ କରାଯାଇ ପାରିଛି । ଏତଦ୍ ବ୍ୟତୀତ ମରୁଡ଼ିଗ୍ରସ୍ତ ଅଞ୍ଚଳରେ ଜଳ ଅମଳ ପ୍ରକଳ୍ପର ନିର୍ମାଣ ପାଇଁ ରାଜ୍ୟ ସରକାର ଏକ ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ୪ ହଜାର ୧ ଶହ ୨ ଗୋଟି ଜଳ ଅମଳ ପ୍ରକଳ୍ପ କରାଯାଇ ୬୩ ହଜାର ୧ ଶହ ୩୦ ହେକ୍ଟର ଜମିରେ ମରୁଡ଼ି ସମୟରେ ସଂରକ୍ଷିତ ଜଳ ସେଚନର ବ୍ୟବସ୍ଥା କରାଯାଇଛି । ଉକ୍ତ ଜଳ ଅମଳ ପ୍ରକଳ୍ପଗୁଡ଼ିକ ଦ୍ୱାରା ମୃତ୍ତିକା କ୍ଷୟ ଅବରୋଧ ହେବା ସଙ୍ଗେସଙ୍ଗେ ସଂରକ୍ଷିତ ଜଳ ସେଚନ କରାଯାଇ ପାରୁଥିବାରୁ ଏଗୁଡ଼ିକ ଖୁବ୍ ଲୋକପ୍ରିୟ ହୋଇପାରିଛି । ସପ୍ତମ ଯୋଜନାର ଅବଶିଷ୍ଟ ଦୁଇବର୍ଷ ମଧ୍ୟରେ ୨ ହଜାର ୩ଶହ ୩୦ ଗୋଟି ଜଳ ଅମଳ ପ୍ରକଳ୍ପ କରିବା ପାଇଁ କାର୍ଯ୍ୟକ୍ରମ ରହିଛି ।

ମୃତ୍ତିକା ସଂରକ୍ଷଣ କାର୍ଯ୍ୟ ଜଳ ବିଭାଜିକା ଭିତ୍ତିରେ କାର୍ଯ୍ୟକାରୀ କରାଯିବା ପାଇଁ ନୀତି ନିର୍ଦ୍ଧାରିତ କରାଯାଇଛି । ଉକ୍ତ ପ୍ରଣାଳୀ ଅବଲମ୍ବନ କରିବା ଦ୍ୱାରା ଜଳସେଚନ ନ ଥିବା ଜମିରେ ବର୍ଷାପାଣିକୁ ବିନିଯୋଗ କରି ଅଧିକ ଫସଲ ଉତ୍ପାଦନ କରାଯାଉଛି । ଭାରତ ସରକାରଙ୍କ ଆର୍ଥିକ ସହାୟତାରେ ଜାତୀୟ ଜଳ ବିଭାଜିକା ଉନ୍ନୟନ କାର୍ଯ୍ୟକ୍ରମ ପ୍ରଥମ କରି କୋରାପୁଟ ଜିଲ୍ଲାରେ ହାତକୁ ନିଆ ଯାଇଛି । ଏତଦ୍‌ବ୍ୟତୀତ ବିଭାଗୀୟ ଓ ଅଣ-ବିଭାଗୀୟ ସମ୍ବଳ ବିନିଯୋଗ କରାଯାଇ ଓଡ଼ିଶାରେ ୩ଶହ ୪୬ ଗୋଟି ଜଳ ବିଭାଜିକାରେ ବିଭିନ୍ନ ପ୍ରକାର ମୃତ୍ତିକା ସଂରକ୍ଷଣ କାର୍ଯ୍ୟ କରାଯାଉଛି ।

ମୃତ୍ତିକା ସଂରକ୍ଷଣ ବିଭାଗ ଦ୍ୱାରା ଆବାଦୀ ଅଯୋଗ୍ୟ ଅନାବାଦୀ ଜମିର ସଦୁପଯୋଗ ପାଇଁ ୭୨ ହଜାର ୧ ଶହ ୪୩ ହେକ୍ଟର ଜମିରେ କାଜୁବାଦାମ ଚାଷ କରାଯାଇଛି । ଦରିଦ୍ରତମ ପରିବାରର ଅର୍ଥନୈତିକ ଉତ୍ଥାନ ନିମନ୍ତେ ୨୦ ହଜାର ୧ ଶହ ୮୮ ହେକ୍ଟର କାଜୁ ବଗିଚା ପରିବାର ପ୍ରତି ୨ ଏକର କରି ମୋଟ ୨୫ ହଜାର ୯ ଶହ ୯୯ ଜଣ ଗରିବ ଲୋକଙ୍କୁ ବଣ୍ଟନ କରାଯାଇଛି । ଓଡ଼ିଶାରେ ଫଳୁଥିବା କାଜୁ ବାଦାମରୁ ଶସ ବାହାର କରିବା ପାଇଁ ୧୭ ଗୋଟି କ୍ଷୁଦ୍ର ଶିଳ୍ପ ଅନୁଷ୍ଠାନ ଗଢ଼ି ଉଠିଛି ।

ଏତଦ୍‌ବ୍ୟତୀତ ୪ ହଜାର ୩ ଶହ ୫ ହେକ୍ଟର ଆବାଦୀ ଅଯୋଗ୍ୟ ଅନାବାଦୀ ଜମିରେ ମୁର୍ଗା ଚାଷ କରାଯାଇଛି । ମୁର୍ଗା ପତ୍ରରୁ **ଶକ୍ତିଶାଳୀ** ଦଉଡ଼ି କରିବା ପାଇଁ ଓଡ଼ିଶାରେ ୮ ଗୋଟି କ୍ଷୁଦ୍ର ଶିଳ୍ପ ଗଢ଼ିଉଠିଛି ।

ଆମ ରାଜ୍ୟର ପାର୍ବତ୍ୟ ଅଞ୍ଚଳର ଜଳବାୟୁ କଫି ଚାଷ ପାଇଁ ଅନୁକୂଳ । କଫି ବୋର୍ଡର ସୁପାରିଶ କ୍ରମେ ଓଡ଼ିଶାର ଅଦ୍ୟାବଧି ୧ ହଜାର ୮୨ ହେକ୍ଟର ଜମିରେ କଫି ଚାଷ କରାଯାଇଛି । କଫି ଚାଷର ପ୍ରସାର କରିବା ପାଇଁ ସରକାର ବିଶେଷ ପଦକ୍ଷେପ ନେଇଛନ୍ତି ।

କେନ୍ଦୁଝର ଜିଲ୍ଲାରେ ଚା’ ବଗିଚା ସଫଳତାର ସହିତ ହୋଇ ପାରିଛି ଏବଂ ଏବର୍ଷ କଳାହାଣ୍ଡି ଜିଲ୍ଲାରେ ବ୍ୟାପକ ଚା’ ଚାଷର ବ୍ୟବସ୍ଥା ହେଉଛି ।

## ସଂକଳ୍ପ ଓ ମନୋବଳ

ଓଡ଼ିଶାର ଦାରିଦ୍ର୍ୟ ଲୋପ କରି ଏହାକୁ ଭାରତର ସର୍ବଶ୍ରେଷ୍ଠ ରାଜ୍ୟ ରୂପେ ଗଣ୍ୟ କରିବାକୁ ହେଲେ କୃଷିର ଦ୍ରୁତ ଉନ୍ନତି ପାଇଁ ଆମକୁ ସଂକଳ୍ପବଦ୍ଧ ହେବାକୁ ପଡ଼ିବ । ଆମେ ସଂକଳ୍ପ କଲେ ଲକ୍ଷ୍ୟ ହାସଲ କରିବାରେ ଆମକୁ କେହି ଅଟକାଇ ପାରିବେ ନାହିଁ । ଆମର ବୁଦ୍ଧି, ବିଦ୍ୟା, କୌଶଳ, ପରିଶ୍ରମ କୌଣସିଥିରେ ଅଭାବ ନାହିଁ । କେବଳ ସଂକଳ୍ପ ଓ ମନୋବଳହିଁ ଦରକାର । ଆଜି ଏହି ଐତିହାସିକ ଚାଷୀ ସମ୍ମିଳନୀ ପୀଠରୁ ଆମର ସେହି ସଂକଳ୍ପ ଓ ମନୋବଳ ଘୋଷିତ ହେଉ ।

[ ମୁଖ୍ୟମନ୍ତ୍ରୀଙ୍କ ଭାଷଣରୁ ସଂଗୃହୀତ ]



# ଗ୍ରାମାଞ୍ଚଳରେ ଖାଦ୍ୟ ଦ୍ରବ୍ୟ ଯୋଗାଣ

**ଶ୍ରୀ ହରିହର କରଣ**

ଖାଦ୍ୟ ଦ୍ରବ୍ୟର ବଜାର ଦର ବୃଦ୍ଧି ହେଲେ ଏହା ସୀମିତ ଆୟ ଥିବା ବ୍ୟକ୍ତି ଏବଂ ଦରିଦ୍ର ଓ ଆର୍ଥିକ ଦୁର୍ବଳଶ୍ରେଣୀର ଲୋକମାନଙ୍କୁ ବାଧିଥାଏ । ସୀମିତ ଆୟ ମଧ୍ୟରେ ଉଚ୍ଚାଦରରେ ଖାଦ୍ୟ ଦ୍ରବ୍ୟ କିଣିବା ସମ୍ଭବପର ହୁଏ ନାହିଁ । ଏହିଥିରୁ ହିଁ ସୁସମ ବଣ୍ଟନ ବ୍ୟବସ୍ଥାର ଉତ୍ପତ୍ତି ।

ଗ୍ରାମାଞ୍ଚଳରେ ଦାରିଦ୍ର୍ୟ ସୀମା ରେଖା ତଳେ ବହୁ ଲୋକ ବସବାସ କରୁଅଛନ୍ତି । ହରିଜନ ଓ ଆଦିବାସୀ ଯେଉଁମାନଙ୍କର ଆର୍ଥିକ ଅବସ୍ଥା ସ୍ବଚ୍ଛଳ ନୁହେଁ । ସେମାନେ ମଧ୍ୟ ଗ୍ରାମାଞ୍ଚଳରେ ବସବାସ କରୁଅଛନ୍ତି । କଣ୍ଟ୍ରୋଲ ଦ୍ରବ୍ୟ ସୁସମ ବଣ୍ଟନର ବ୍ୟବସ୍ଥା ଏହିମାନଙ୍କ ପାଇଁ ଅଭିପ୍ରେତ ।

ସୁସମ ବଣ୍ଟନ ଦାୟିତ୍ୱ ତୁଲାଇବା ପାଇଁ ରାଜ୍ୟରେ ଏକ ଯୋଗାଣ ନିଗମ ସ୍ଥାପିତ ହୋଇଛି । ଏହା ବ୍ଲକମାନଙ୍କରେ ଷ୍ଟୋରେଜ୍ ଏଜେଣ୍ଟମାନଙ୍କୁ ନିଯୁକ୍ତି ଦିଏ । ପ୍ରତ୍ୟେକ ବ୍ଲକ୍‌ର ସଦର ମହକୁମାରେ ଷ୍ଟୋରେଜ୍ ଏଜେଣ୍ଟମାନେ ଗୋଦାମ ରଖିଛନ୍ତି । ଏହି ଗୋଦାମରେ ଚିନି, ସ୍ବଜି ଓ ଗହମ ମହଜୁଦ ରଖାଯାଏ । ରାଜ୍ୟ ଯୋଗାଣ ନିଗମ ଏହି ଚିନି, ସ୍ବଜି ଓ ଗହମ ଯୋଗାଇ ଥାନ୍ତି । ଯୋଗାଣ ନିଗମ ଅତ୍ୟାବଶ୍ୟକ ଖାଉଟି ଦ୍ରବ୍ୟ ଭାରତୀୟ ଖାଦ୍ୟ ନିଗମଠାରୁ କ୍ରୟ କରିଥାନ୍ତି ।

ଖାଉଟି ଦ୍ରବ୍ୟର ସୁସମ ବଣ୍ଟନ ପାଇଁ ସମତଳ ଅଞ୍ଚଳରେ ପ୍ରତି ୨,୦୦୦ ଲୋକଙ୍କ ପାଇଁ ଗୋଟିଏ ସୁଲଭ ଖାଉଟି ଦୋକାନ ଖୋଲା ଯାଇଥାଏ । ପାର୍ବତ୍ୟ ଦୁର୍ଗମ ଅଞ୍ଚଳରେ ଗମନାଗମନର ଅସୁବିଧା ଥିବା ହେତୁ ପ୍ରତି ୧,୦୦୦ ଲୋକଙ୍କ ପାଇଁ ଗୋଟିଏ ଲେଖାଏଁ ସୁଲଭ ମୂଲ୍ୟ ଦୋକାନ ଖୋଲା ଯାଇଅଛି । ଏହି ସୁଲଭ ମୂଲ୍ୟ ଦୋକାନମାନଙ୍କ ଜରିଆରେ ଖାଉଟିମାନଙ୍କୁ ଅତ୍ୟାବଶ୍ୟକ ଖାଦ୍ୟ ଦ୍ରବ୍ୟ ଯୋଗାଣ କରାଯାଏ । ଏବେ ସମଗ୍ର ରାଜ୍ୟର ଗ୍ରାମାଞ୍ଚଳରେ ୧୭,୮୯୨ଟି ସୁଲଭ ମୂଲ୍ୟ ଦୋକାନ ଖୋଲା ଯାଇଅଛି । ଏଥି ମଧ୍ୟରୁ ୧୪,୪୪୨ଟି ଘରୋଇ ଡିଲର ଅଛନ୍ତି । ଏଣୁ ଅବଶିଷ୍ଟ ୩,୪୫୦ଟି ଦୋକାନ ସମବାୟ ସଂସ୍ଥାମାନେ ଖୋଲିଅଛନ୍ତି । ଗ୍ରାମାଞ୍ଚଳରେ ପ୍ରାୟ ୧,୮୦୦୦ ଖାଉଟି ଦୋକାନ ଖୋଲିଥିବା ବେଳେ ସହରାଞ୍ଚଳରେ ମାତ୍ର ୨,୫୫୫ ଖାଉଟି ଦୋକାନ ଖୋଲିଅଛି ।

ଖାଉଟି ଦ୍ରବ୍ୟର ସୁସମ ବଣ୍ଟନ ପାଇଁ ଗ୍ରାମାଞ୍ଚଳରେ ଲୋକମାନଙ୍କୁ ପରିଚୟ କାର୍ଡ ଦିଆ ହୋଇଅଛି । କଣ୍ଟ୍ରୋଲ ଦୋକାନ ତନଖି କରିବା ପାଇଁ ପ୍ରତି ଦୋକାନ ପାଇଁ ଗୋଟିଏ ଲେଖାଏଁ ଗ୍ରାମ କମିଟି ଗଠନ କରାଯାଇଅଛି । ଏଥିରେ ୫ ଜଣ ସଭ୍ୟ ରହନ୍ତି, ଯେଉଁମାନେକି ପଲ୍ଲୀ ସଭା ଦ୍ୱାରା ନିର୍ବାଚିତ ହୁଅନ୍ତି । ଏହି ୫ ଜଣ ସଭ୍ୟଙ୍କ ମଧ୍ୟରୁ ୨ ଜଣ ଆଦିବାସୀ ଓ ହରିଜନ ହେବା ଆବଶ୍ୟକ ଏବଂ ଜଣେ ସଭ୍ୟ ଗୃହିଣୀ ହେବା ଆବଶ୍ୟକ । ଗ୍ରାମରେ କଣ୍ଟ୍ରୋଲ ଦ୍ରବ୍ୟ ସୁଷ୍ଠୁ ରୂପେ ବଣ୍ଟନ ହେଉଛି କି ନାହିଁ ତାହା ଦେଖିବା ଏହି କମିଟିର କର୍ତ୍ତବ୍ୟ । ୫ ଜଣ ସଭ୍ୟଙ୍କ ମଧ୍ୟରୁ ଅନ୍ତତଃ ୩ ଜଣ ସଭ୍ୟ କଣ୍ଟ୍ରୋଲ ଡିଲରର ଖାତାରେ ସୁଷ୍ଠୁ ରୂପେ ବଣ୍ଟନ ହେଉଥିବା କଥା ସାର୍ଟିଫିକେଟ ଦେବା ଆବଶ୍ୟକ । ଏହା ନହେଲେ କଣ୍ଟ୍ରୋଲ ଡିଲରଙ୍କୁ ପୁନର୍ବାର ଅତ୍ୟାବଶ୍ୟକ ଦ୍ରବ୍ୟ ଯୋଗାଣ କରାଯାଇ ନଥାଏ । ଏହି ବ୍ୟବସ୍ଥା ଦ୍ୱାରା ଜନସାଧାରଣ କଳାବଜାରୀ ଓ ମୁନାଫାଖୋରମାନଙ୍କୁ ଦଣ୍ଡ ଦେଇ ପାରିବେ ଏବଂ ଅତ୍ୟାବଶ୍ୟକ ଦ୍ରବ୍ୟ ଜନସାଧାରଣଙ୍କ ପାଖରେ ପହଞ୍ଚି ପାରିବ ଓ ତାହାର ସୁସମ ବଣ୍ଟନ ହୋଇ ପାରିବ ।

ଖାଦ୍ୟ ଦ୍ରବ୍ୟ ଯୋଗାଣ କ୍ଷେତ୍ରରେ ପ୍ରତି ବ୍ଲକକୁ ଗୋଟିଏ ୟୁନିଟ୍ ବୋଲି ଧରାଯାଇଥାଏ । ପ୍ରତି ବ୍ଲକ୍‌ରେ ଜଣେ ଷ୍ଟୋରେଜ୍ ଏଜେଣ୍ଟ ରହିବା କଥା ପୂର୍ବରୁ କୁହାଯାଇଅଛି । ବ୍ଲକ୍ ସ୍ତରରେ ଖାଉଟି ଦ୍ରବ୍ୟର ସୁସମ ବଣ୍ଟନ ପାଇଁ ଏକ ପରାମର୍ଶଦାତା କମିଟି ଅଛି । ଏହି କମିଟିରେ ବ୍ଲକ୍‌ର ଚେୟାରମ୍ୟାନ ସଭାପତି ରହନ୍ତି । ଏଥିରେ ଅନ୍ୟ ଯେଉଁମାନେ ସଭ୍ୟ ସେମାନେ ହେଲେ ସ୍ଥାନୀୟ ବିଧାୟକ, ୪ ଜଣ ସରପଞ୍ଚ, ସପ୍ଲାଇ ଇନିସ୍ପେକ୍ଟର, ବି: ଡି: ଓ: ଏବଂ ସମବାୟ ସଂପ୍ରସାରଣ ଅଫିସର । ବ୍ଲକ୍‌କୁ ଆସୁଥିବା ଖାଦ୍ୟ ଦ୍ରବ୍ୟ ଯେପରି ଠିକ୍ ଭାବରେ ମହଜୁଦ ହୋଇ ରହେ ଏବଂ ଆବଶ୍ୟକତା ଅନୁଯାୟୀ ବିଭିନ୍ନ କଣ୍ଟ୍ରୋଲ ଡିଲରମାନଙ୍କୁ ଦିଆଯାଏ, ତାହା ଦେଖିବା ଏହି ପରାମର୍ଶ ଦାତା କମିଟିର ଉଦ୍ଦେଶ୍ୟ । ପରାମର୍ଶ କମିଟିର କାର୍ଯ୍ୟ କଳାପ ଉପରେ ବସ୍ତୁତଃ ସବୁ କଥା ନିର୍ଭର କରେ । କଳାବଜାରୀ ଓ ମୁନାଫାଖୋରମାନଙ୍କୁ ରୋକିବା ଏବଂ

ଜନସାଧାରଣଙ୍କୁ ଉଚିତ ମୂଲ୍ୟରେ କଣ୍ଟ୍ରୋଲ ଜିନିଷ ଯୋଗାଇ ଦେବା ପାଇଁ ଏହି ପରାମର୍ଶ ଦାତା କମିଟି ମଝିରେ ମଝିରେ ବସି ଆଲୋଚନା କରନ୍ତି । ଏହି ବୈଠକ ପ୍ରତି ମାସରେ ବସେ ।

ବ୍ଲକ୍ ବ୍ୟତୀତ ସବ୍‌ଡ଼ିଭିଜନ ଓ ଜିଲ୍ଲା ସ୍ତରରେ ଆମର ଯୋଗାଣ ବ୍ୟବସ୍ଥା ତଦାରଖ କରିବା ପାଇଁ ନାଗରିକ କମିଟିମାନ ଗଠନ କରାଯାଇଅଛି । ଏହି କମିଟିରେ ସରକାରୀ ପ୍ରତିନିଧି, ନିର୍ବାଚିତ ପ୍ରତିନିଧି ଏବଂ ବ୍ୟବସାୟୀ ଗୋଷ୍ଠୀ ସ୍ଥାନ ପାଇଥାନ୍ତି । ଏସ୍: ଡ଼ି: ଓ: ଓ ଜିଲ୍ଲାପାଳମାନଙ୍କୁ ଅତ୍ୟାବଶ୍ୟକ ଖାଦ୍ୟ ଦ୍ରବ୍ୟର ବଣ୍ଟନ କ୍ଷେତ୍ରରେ ଏହି ନାଗରିକ କମିଟିମାନେ ପରାମର୍ଶ ଦେଇଥାନ୍ତି । ଉପରୋକ୍ତ ଆଲୋଚନାରୁ ଜଣାଯିବ ଯେ, ବିଭିନ୍ନ ସ୍ତରରେ କଣ୍ଟ୍ରୋଲ ଜିନିଷର ସୁଷମ ବଣ୍ଟନ ପାଇଁ ବିଭିନ୍ନ ବ୍ୟବସ୍ଥା କରାଯାଇଅଛି । କଣ୍ଟ୍ରୋଲ ଦ୍ରବ୍ୟ ଯୋଗାଣ ଏକ ସରକାରୀ ବ୍ୟବସ୍ଥା ନକହି ଜନସାଧାରଣଙ୍କ ସହଯୋଗ ପାଇଁ ଏହିପରି କମିଟିମାନ ଗଠନ କରାଯାଇଅଛି ।

ସମଗ୍ର ରାଜ୍ୟରେ ମାସକୁ ୨୫,୦୦୦ ଟନ୍ ଚାଉଳ, ୨୦,୦୦୦ ଟନ୍ ଗହମ, ୧୨,୦୦୦ ଟନ୍ ଚିନି, ୫୦୦ ଟନ୍ ଖାଇବା ତେଲ ଓ ୧୨,୦୦୦ ଟନ୍ କିଲୋ ଲିଟର କିରୋସିନି ଆବଣ୍ଟନ କରାଯାଇଥାଏ ।

ଏହି ସମସ୍ତ କଣ୍ଟ୍ରୋଲ ଖାଦ୍ୟ ଦ୍ରବ୍ୟ ଓ ଅତ୍ୟାବଶ୍ୟକ ଦ୍ରବ୍ୟ ଭାରତ ସରକାରଙ୍କ ପକ୍ଷରୁ ମିଳିଥାଏ । ଚଳିତ ବର୍ଷ ଗତ ବର୍ଷର ମରୁଡ଼ି ପରିସ୍ଥିତି ଯୋଗୁଁ କଣ୍ଟ୍ରୋଲ ଖାଦ୍ୟ ଦ୍ରବ୍ୟର ସୁଷମ ବଣ୍ଟନ ପାଇଁ ବିଶେଷ ଗୁରୁତ୍ୱ ଆରୋପ କରାଯାଉଅଛି । ଦୁର୍ଗମ ପାର୍ବତ୍ୟ ଅଞ୍ଚଳରେ କଣ୍ଟ୍ରୋଲ ଡିଲରମାନଙ୍କ ପକ୍ଷରେ ଖାଦ୍ୟ ଦ୍ରବ୍ୟ ନେଇ ପହଞ୍ଚାଇବା ସମ୍ଭବପର ହୁଏ ନାହିଁ । ସେଥି ଯୋଗୁଁ ଯୋଗାଣ ନିଗମ ତରଫରୁ ଓଡ଼ିଶାର ପାର୍ବତ୍ୟ ଅଞ୍ଚଳରେ ୩୧ଟି ଭ୍ରାମ୍ୟମାଣ ଗାଡ଼ିର ଉପଯୋଗ କରାଯାଇଅଛି । ଏହି ଗାଡ଼ିଗୁଡ଼ିକ ସପ୍ତାହର ପ୍ରତି ହାଟ ପାଳିରେ ବିଭିନ୍ନ ହାଟକୁ ଯାଇ ଚାଉଳ, ଚିନି, କିରୋସିନି ଓ ଖାଇବା ତେଲ ସୁଷମ ବଣ୍ଟନ କରିଥାଆନ୍ତି । ଏହି ଭ୍ରାମ୍ୟମାଣ ଗାଡ଼ି ବା Mobile Van ପାର୍ବତ୍ୟ ଅଞ୍ଚଳରେ ବିଶେଷ ଆଦୃତ ହେଉଅଛି ।

ଗତ ବର୍ଷର ମରୁଡ଼ି ପରିସ୍ଥିତି ଯୋଗୁଁ ଏ ବର୍ଷର ଦରଦାମ ବୃଦ୍ଧି ଘଟିଅଛି । ଏହାକୁ ରୋକିବା ପାଇଁ ଅତ୍ୟାବଶ୍ୟକ ଦ୍ରବ୍ୟର ସୁଷମ ବଣ୍ଟନର ବ୍ୟବସ୍ଥା କରାଯାଇଅଛି । ଜନସାଧାରଣଙ୍କ ସହଯୋଗ ମିଳିଲେ ଏହି ବ୍ୟବସ୍ଥା ଲୋକହିତକର ହୋଇ ପାରିବ ବୋଲି ମୋର ଦୃଢ଼ ଆଶା ଓ ବିଶ୍ୱାସ ।



# ଓଡ଼ିଶାରେ ନାରୀ ଶିକ୍ଷାର ପ୍ରସାର

**ଶ୍ରୀ ଯଦୁନାଥ ଦାଶ ମହାପାତ୍ର**

ପ୍ରାଚୀନ ଭାରତରେ ଶିକ୍ଷାର ସମାଦର ଥିଲା । ବୈଦିକ ଯୁଗରେ ବହୁ ବିଦୁଷୀ ନାରୀ ପୁରୁଷମାନଙ୍କ ପରି ବିଦ୍ୟା ବୁଦ୍ଧି ଓ ବିଚକ୍ଷଣତାର ପରିଚୟ ଦେଇଅଛନ୍ତି । ଗାର୍ଗୀ, ମୈତ୍ରେୟୀ, ବିଶ୍ୱବାରା, ଲୋପାମୁଦ୍ରାଦି ନାରୀମାନଙ୍କ ନାମ ଏଦିଗରେ ପ୍ରଣିଧାନ ଯୋଗ୍ୟ । ନାରୀମାନେ ମଧ୍ୟ ରାଜ୍ୟ ଶାସନ କରିବା, ଯୁଦ୍ଧ ଭୂମିରେ ଅବତୀର୍ଣ୍ଣ ହୋଇ ରଣାଙ୍ଗ ସମରରେ ବ୍ୟାପୃତ ହୋଇ ଶତ୍ରୁ ସଂହାର କରିବାର ନଜିର ରହିଛି । ସୁଲତାନା ରେଜିୟା, ରାଣୀ ଦୁର୍ଗାବତୀ, ଝାନ୍ସୀ ରାଣୀ ଲକ୍ଷ୍ମୀବାଈ ଓ ବାଙ୍କିର ରାଣୀ ଶୁକଦେଈ ଉଭୟ ବୀରାଙ୍ଗନା ଓ ସୁଶାସିକା ଭାବରେ ଖ୍ୟାତିଲାଭ କରିଥିଲେ । ପୁରାଣ ବର୍ଣ୍ଣିତ ଶକ୍ତି ପୂଜିତ ଏଇ ନାରୀ ଉତ୍କର୍ଷତାର ପ୍ରତୀକ ।

ଭାରତରେ ନାରୀ ଶିକ୍ଷାର ଅବକ୍ଷୟ ହୁଏ ଆରବ୍ୟ, ଆଫଗାନ ଓ ତୁର୍କ ଶାସକମାନଙ୍କ ଅନୁପ୍ରବେଶ ହେତୁ । ପରଦା ପ୍ରଥା ହିଁ ଏହାର ପ୍ରଧାନ ଅନ୍ତରାୟ ଥିଲା । ରାଜତରଙ୍ଗିଣୀ କାବ୍ୟ ସ୍ରଷ୍ଟା କବି ବିହ୍ଲଣଙ୍କ ଆଖ୍ୟାନରୁ ଜଣାଯାଏ ରାଜକୁମାରୀଙ୍କୁ ଶିକ୍ଷା ଦେବା ପାଇଁ ନିୟୋଜିତ ବିହ୍ଲଣ ଚକ୍ଷୁହୀନ ବୋଲି ରାଜକୁମାରୀଙ୍କୁ ଏବଂ ରାଜକୁମାରୀ କୁଷ୍ଠ ରୋଗାକ୍ରାନ୍ତ ବୋଲି କବିଙ୍କୁ ଧାରଣା ଦେଇ ଉଭୟଙ୍କର ମଝିରେ ଏକ ପରଦା ଝୁଲେଇ ଶିକ୍ଷା ଦାନ ସମାହିତ ହେବାର ବ୍ୟବସ୍ଥା କରାଯାଇଥିଲା । ଏଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ ତତ୍କାଳୀନ ସମାଜକୁ କୁସଂସ୍କାର, ଅନ୍ଧ ବିଶ୍ୱାସ ଓ ଅଜ୍ଞାନତା ଗ୍ରାସ କରିସାରିଥିଲା । ନାରୀମାନେ ଗୃହ ମଧ୍ୟରେ ଆବଦ୍ଧ ରହିଲେ ଓ ପରଦାବୃତାହୋଇ ବିଚରଣ କଲେ । ତେଣୁ ପୁରୁଷ ସଙ୍ଗେ ମିଶି ବିଦ୍ୟା ଚର୍ଚ୍ଚା, ସଭା ସମିତିରେ ଯୋଗଦାନ ଇତ୍ୟାଦି ମଧ୍ୟ କଳ୍ପନାର ବାହାରେ ଥିଲା ।

ଭାରତବର୍ଷ ସ୍ୱାଧୀନତା ପାଇବା ପରେ ସମାଜରେ ନାରୀର ଅଗ୍ରଗତି ଦିଗରେ ସବିଶେଷ ଧ୍ୟାନ ଦିଆଯାଉଅଛି । ୧୯୫୦ ମସିହାରେ ସାର୍ବଭୌମତ୍ୱ ପ୍ରତିଷ୍ଠା ହେବା ସଙ୍ଗେସଙ୍ଗେ ଜନସାଧାରଣ ଯେତେବେଳେ ଭୋଟ ଅଧିକାର ପାଇଲେ ନାରୀମାନଙ୍କୁ ସେ କ୍ଷମତା ମଧ୍ୟ ଦିଆଯାଇଛି । ବିଶ୍ୱ ଗଣତନ୍ତ୍ରର ଜନନୀ ଇଂଲଣ୍ଡରେ ମଧ୍ୟ ବହୁ ବିଳମ୍ବରେ ନାନା ବିପ୍ଳବ ଓ ବିଦ୍ରୋହ ଦ୍ୱାରା ନାରୀ ଜାତିକୁ ଏ ଅଧିକାର ମିଳିଥିଲା । କିନ୍ତୁ ଭାରତର ଜନନାୟକମାନେ ସମାଜର ଏଇ ଗୁରୁତ୍ୱପୂର୍ଣ୍ଣ ଦିଗ ପ୍ରତି ସଚେତନ ହୋଇ ନାରୀମାନଙ୍କୁ ସମାନ ନାଗରିକ ଅଧିକାର ଦେଲେ । ଅବଶ୍ୟ ପ୍ରାକ୍ ସ୍ୱାଧୀନ ଭାରତରେ କସ୍ତୁରବା, ସରୋଜିନୀ ନାଇଡୁ, ବିଜୟ ଲକ୍ଷ୍ମୀ ପଣ୍ଡିତ, ଓଡ଼ିଶାର କୁନ୍ତଳାକୁମାରୀ, ରମାଦେବୀ, ମାଳତୀ ଚୌଧୁରୀ ପ୍ରମୁଖ ସ୍ୱାଧୀନତା ବାର୍ତ୍ତା ଓ ନାରୀ ଜାଗରଣର ବାର୍ତ୍ତା ପ୍ରଚାର କରିଥିଲେ । ସ୍ୱାଧୀନତା ପୂର୍ବରୁ ନାରୀ ଶିକ୍ଷାଅତି ଅବହେଳିତ ଥିଲା । ଏକ ରକ୍ଷଣଶୀଳ ମନୋବୃତ୍ତି ନେଇ ଲୋକେ ନାରୀମାନଙ୍କୁ ଅଜ୍ଞାନ ଓ ଅଶିକ୍ଷାର ଅନ୍ଧକାର ମଧ୍ୟରେ ରଖିଥିଲେ । ପାଠ ପଢ଼ିଲେ, ଲୋକଙ୍କ ସଙ୍ଗେ ମିଶିଲେ, ସଭାସମିତିରେ ଯୋଗ ଦେଲେ ନାରୀର ପବିତ୍ରତା ଓ ଚାରିତ୍ରିକ ସ୍ଖଳନ ହେବ ବୋଲି ଧାରଣା ସୃଷ୍ଟି କରାଯାଇଥିଲା । ଏହାଦ୍ୱାରା ଆମ ଦେଶର ଲୋକସଂଖ୍ୟାର ପ୍ରାୟ ଅର୍ଦ୍ଧେକ ନାଗରିକ ଅଥର୍ବ ଓ ଥାଣୁ ହୋଇ ରହିଥିଲେ । ଏଇ ସାମାଜିକ ବ୍ୟାଧି ଦୂର କରିବା ଉଦ୍ଦେଶ୍ୟରେ ସ୍ୱାଧୀନତା ପ୍ରାପ୍ତିପରେ ପଦକ୍ଷେପ ନିଆଗଲା । ଶିକ୍ଷା ମଣିଷର ମୋହ ଭଙ୍ଗକରିଥାଏ । ତା ମନରେ ଏକ ସୁସ୍ଥ ପବିତ୍ର ଓ ଉଦାର ଭାବ ଜାଗ୍ରତ କରି ତାକୁ ସଂକୀର୍ଣ୍ଣତାର ପାଶରୁ ମୁକ୍ତ କରିଥାଏ । ନାରୀ ଶିକ୍ଷା ଫଳରେ ସମାଜରେ ଅନେକ ସଂସ୍କାର ଅଣାଯାଇ ପାରିଲା, ଅନ୍ଧ ବିଶ୍ୱାସର କାଳିମା ଦୂରୀଭୂତ ହେଲା । ବାଲ୍ୟ ବିବାହ, ସତୀଦାହ ପ୍ରଥା, ଇତ୍ୟାଦିର ଅବସାନ କେବଳ ନାରୀଶିକ୍ଷା ଯୋଗୁଁ ସମ୍ଭବ । ଅସ୍ପୃଶ୍ୟତା ନିବାରଣ, ବିଧବା ବିବାହ, ଅସବର୍ଣ୍ଣ ବିବାହ ଆଦି ଏଇ ନାରୀ ଶିକ୍ଷା ଉପରେ ନିର୍ଭରଶୀଳ । ଏ ସବୁ ସତ୍ତ୍ୱେ ନାରୀମାନେ ମୂଳତଃ ମା ହୋଇଥିବାରୁ ସମାଜ ଗଠନର ଗୁରୁ ଦାୟିତ୍ୱ ସେମାନଙ୍କ ଉପରେ ନ୍ୟସ୍ତ । କୁହାଯାଏ ବାପା ଶିକ୍ଷିତ ହେଲେ କେବଳ ଜଣେ ଶିକ୍ଷିତ ହୁଏ ମାତ୍ର ମା ଶିକ୍ଷିତ । ହେଲେ ସମଗ୍ର ପରିବାର ଶିକ୍ଷିତ ହୁଏ । ଆଜିର ଶିଶୁ କାଲିର ରାଷ୍ଟ୍ରଗଠନର ଲଢୁଆ ସୈନିକ ବା ସେନାପତି । ଏମାନଙ୍କୁ ଲାଳନ ପାଳନ କରି ଶିକ୍ଷା ଦେଇ ସେମାନଙ୍କ ଶାରୀରିକ ଓ ମାନସିକ ସ୍ଥିତିକୁ ସୁସ୍ଥ, ସମୁନ୍ନତ ଓ ପରିପୁଷ୍ଟ କଲେ ଦେଶର ବିକାଶ ସୁଗମ ହେବ । ମା ମାନେ ଶିକ୍ଷିତା ହେଲେ ଶିଶୁ ଯତ୍ନ ସହଜରେ ନେଇପାରିବେ ଓ ସେମାନଙ୍କର ପ୍ରାଥମିକ ଶିକ୍ଷାଦି ବ୍ୟବସ୍ଥା କରିପାରିବେ । ତେଣୁ ଭବିଷ୍ୟତ ବଂଶଧରମାନେ ଉନ୍ନତ ହୋଇପାରିବେ । ନାରୀ ମଧ୍ୟ ପରିବାର ଅର୍ଥନୀତିର ମୂଳପିଣ୍ଡ ଯାହା ପକ୍ଷାନ୍ତରେ ଦେଶର ଅର୍ଥନୀତି ଉପରେ ପ୍ରଭାବ ପକାଏ । ନାରୀ ଶିକ୍ଷିତା ନହେଲେ ପରିବାର ଅର୍ଥନୈତିକ ମାନ ଝୁଣ୍ଟୁଡ଼ି ପଡ଼ିବ । ତେଣୁ ସମାଜ ଦୁର୍ବଳ ହେବ ଓ ରାଷ୍ଟ୍ରର ବିକାଶ ବ୍ୟାହତ ହେବ । ଏସବୁ ବିବିଧ

କାରଣରୁ ନାରୀ ଶିକ୍ଷା ପରିବାର, ସମାଜ ଓ ରାଷ୍ଟ୍ରପାଇଁ ଏକାନ୍ତ ଅପରିହାର୍ଯ୍ୟ ବୋଲି ଅନୁଭବ କରି ସ୍ୱାଧୀନ ଭାରତରେ ଏହାକୁ ଅଗ୍ରାଧିକାର ଦିଆଯାଉଛି ।

ନାରୀ ଶିକ୍ଷାର ପ୍ରସାର ଦିଗରେ ଓଡ଼ିଶା ଅଗ୍ରଣୀ ଭୂମିକା ଗ୍ରହଣ କରିଅଛି । ନାରୀ ଶିକ୍ଷା ଲୋକପ୍ରିୟତା ଅର୍ଜନ କରିଅଛି । ସୁଦୂର ଗ୍ରାମାଞ୍ଚଳରେ ମଧ୍ୟ ଏହା ବିଶେଷ ଆଗ୍ରହ ସୃଷ୍ଟି କରିପାରିଛି । ବିଦ୍ୟାଳୟମାନଙ୍କରେ ପ୍ରାୟ ଶତକଡା ୪୦ ଭାଗ ଛାତ୍ରୀ ଅଧ୍ୟୟନ କରିବାର ଦେଖାଯାଉଛି । ଗତ ୫ ବର୍ଷର ପ୍ରବେଶିକା, ସ୍ନାତକ ଓ ସ୍ନାତକୋତ୍ତର ପରୀକ୍ଷା ଫଳରୁ ଯାହା ସୂଚନା ମିଳେ ପରୀକ୍ଷାରେ ଉଚ୍ଚ ନମ୍ବର ଝିଅମାନେ ହିଁ ରଖିଛନ୍ତି । ପ୍ରତି ବର୍ଷ ଦ୍ରୁତ ଗତିରେ ନାରୀମାନଙ୍କର ଶିକ୍ଷା ପରିସଂଖ୍ୟାନ ବଦଳି ଚାଲିଛି । ନାରୀମାନେ ସମାଜର ସବୁ ସ୍ତରରେ ଆଜି ପୁରୁଷମାନଙ୍କ ସଙ୍ଗେ ପ୍ରତିଦ୍ୱନ୍ଦ୍ୱିତା କରି ଚାଲିଛନ୍ତି । ସର୍ବ ଭାରତୀୟ ପ୍ରଶାସନିକ ସ୍ତରରେ ମଧ୍ୟ ଓଡ଼ିଶା ଝିଅମାନେ ପ୍ରବେଶ କରୁଛନ୍ତି । ସରକାରୀ ବେସରକାରୀ ପ୍ରତିଷ୍ଠାନମାନଙ୍କରେ ଚାକିରୀ, ଶିକ୍ଷକତା, ଡାକ୍ତରୀ ସମାଜ ସେବା ଆଦି କାର୍ଯ୍ୟଠାରୁ ଆରମ୍ଭ କରି ପୋଲିସ୍ ବିଭାଗ ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ନାରୀମାନେ ପ୍ରବେଶ କରି ସେମାନଙ୍କ କୃତିତ୍ୱ ପ୍ରଦର୍ଶନ କରୁଛନ୍ତି । କୁମାରୀକାଠାରୁ ହିମାଚଳ ଯାଏ ସମଗ୍ର ଭାରତ ବର୍ଷରେ ଶିକ୍ଷା କ୍ଷେତ୍ରରେ ଯେଉଁ ବୈପ୍ଳବିକ ପରିବର୍ତ୍ତନ ଆମର ପ୍ରିୟ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀଙ୍କ ନେତୃତ୍ୱରେ ସଂଘଠିତ ହୋଇଛି, ସେଥିରେ ନାରୀ ଶିକ୍ଷାକୁ ଅଗ୍ରାଧିକାର ଦିଆଯାଇଛି । ଏ ଦିଗରେ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ସରକାର, ଯାହାକି ସମ୍ପ୍ରତି ନବମ ବର୍ଷରେ ପଦାର୍ପଣ କଲା, ନାରୀ ଜାଗରଣ ଓ ମହିଳା ଶିକ୍ଷାର ପ୍ରସାର ଦିଗରେ ଐତିହାସିକ ଭୂମିକା ଗ୍ରହଣ କରିଅଛି । ପ୍ରାଥମିକ ସ୍ତରରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ଶିକ୍ଷା ସମାପ୍ତି ଯାଏ ମହିଳାମାନଙ୍କ ପାଇଁ ଅବୈତନିକ ଶିକ୍ଷାର ବ୍ୟବସ୍ଥା କରି ଆମ ସରକାର ନୂତନ ରେକର୍ଡ ସୃଷ୍ଟି କରିଛନ୍ତି । ଏତଦ୍‌ଭିନ୍ନ ଅନ୍ୟାନ୍ୟ ଆନୁସଙ୍ଗିକ ସୁବିଧା ସୁଯୋଗ ମଧ୍ୟ ଝିଅମାନଙ୍କୁ ଯୋଗାଇ ଦିଆଯାଉଛି । ଅଧିକ ସଂଖ୍ୟାରେ ମହିଳା କଲେଜ, ବାଳିକା ବିଦ୍ୟାଳୟ, ବାଳିକା ହଷ୍ଟେଲର ବ୍ୟବସ୍ଥା କରାଯାଇ ନାରୀ ଶିକ୍ଷାର ଗୁଣାତ୍ମକ ମାନ ବୃଦ୍ଧି କରାଯାଇଅଛି । ମହିଳା କର୍ମୀମାନଙ୍କ ରହିବା ସକାଶେ ରାଉରକେଲା, କଟକ ପ୍ରଭୃତି ସ୍ଥାନରେ ହଷ୍ଟେଲ ପ୍ରତିଷ୍ଠା କରାଯାଇଛି । ନୂତନ ଶିକ୍ଷା ନୀତିରେ ପ୍ରତିଷ୍ଠିତ ନବୋଦୟ ବିଦ୍ୟାଳୟମାନଙ୍କରେ ଝିଅମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ କରାଯାଇଛି । ବିଭିନ୍ନ ଚାକିରୀ କ୍ଷେତ୍ରରେ ମଧ୍ୟ ନାରୀମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ କରାଯାଇଛି ।

ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ମହିଳାମାନଙ୍କୁ ଅଗ୍ରାଧିକାର ଦେବା ଏ ସରକାରଙ୍କର ଏକ ସାହସିକ ପଦକ୍ଷେପ । ଏହା ଏକ ଭାବପ୍ରବଣ ବ୍ୟାପାର ନୁହେଁ, ପରନ୍ତୁ ଏକ ଯୌକ୍ତିକ ପ୍ରୟାସ । ପ୍ରାଥମିକ ସ୍କୁଲରେ ସାଧାରଣତଃ ୫ ବର୍ଷରୁ ୧୧ ବର୍ଷ ବୟସ ସୀମା ମଧ୍ୟରେ ଥିବା ପିଲାମାନେ ପଢ଼ନ୍ତି । ସେମାନେ ସ୍କୁଲକୁ ଆସିବାବେଳେ ନିଜ କାମ ନିଜ ହାତରେ କରିବାର ଅଭ୍ୟାସ ଆୟତ୍ତ କରି ପାରିନଥାନ୍ତି । ତା ଛଡା ନିଜର ମା'କୁ ଛାଡ଼ି ଆସିଥିବା ହେତୁ ବଡ ନିଃସଙ୍ଗ ଓ ନିଃସହାୟ ବୋଧ କରନ୍ତି । ତେଣୁ ପାଠ ପଢ଼ାରେ ମନୋନିବେଶ କରି ପାରନ୍ତି ନାହିଁ । ନାରୀମାନେ ସ୍ନେହ ପ୍ରବଣା, ଧୈର୍ଯ୍ୟଶୀଳା, ସହିଷ୍ଣୁ ଓ ସେବା ପରାୟଣା । ତେଣୁ ଅଳ୍ପ ସମୟ ମଧ୍ୟରେ ପିଲାମାନଙ୍କୁ ବାତ୍ସଲ୍ୟ ସ୍ନେହରେ ଆପଣାର କରିନିଅନ୍ତି । ଫଳରେ ପିଲାଟି ତା ମାଆ ଓ ଘର କଥା ଭୁଲିଯିବା ପାଇଁ ଯଥେଷ୍ଟ ଅବକାଶ ପାଇବ, ଯଦି ବିଦ୍ୟାଳୟରେ ପର୍ଯ୍ୟାପ୍ତ ପରିମାଣରେ ଶିକ୍ଷୟିତ୍ରୀ ନିଯୁକ୍ତି ଦିଆଯାଏ । ଏଇ କାରଣକୁ ଉପଲବ୍ଧି କରି ଓଡ଼ିଶା ସରକାର ୧୯୮୩ ମସିହାଠାରୁ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ମହିଳା ଶିକ୍ଷୟିତ୍ରୀ ନିଯୁକ୍ତିକୁ ଅଗ୍ରାଧିକାର ଦେଇଛନ୍ତି । ନିକଟରେ ସେମାନଙ୍କର ଚାକିରୀ କ୍ଷେତ୍ରରେ ପ୍ରବେଶ ବୟସ ସୀମାକୁ କୋହଳ କରାଯାଇଛି । ଏହା ଫଳରେ ୧୯୯୦ ମଧ୍ୟରେ ତାଲିମ ପ୍ରାପ୍ତ ସମସ୍ତ ମହିଳାମାନଙ୍କୁ ଶିକ୍ଷୟିତ୍ରୀଭାବେ ନିଯୁକ୍ତି ଦିଆଯାଇ ପାରିବ ବୋଲି ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । କେନ୍ଦ୍ର ସରକାରଙ୍କ ସହାୟତା (ସେଣ୍ଟ୍ରାଲି ସ୍ପନ୍‌ସୋରଡ୍ ସ୍କିମ୍) ଆନୁକୂଲ୍ୟରେ ୭୫୦ ଜଣ ଶିକ୍ଷୟିତ୍ରୀଙ୍କୁ ନିଯୁକ୍ତି ଦିଆଯାଇଛି । ଓଡ଼ିଶାର ଉପକୂଳବର୍ତ୍ତୀ ଓ ଅଗ୍ରସର ଜିଲ୍ଲାମାନଙ୍କରେ ବିଗତ ୩ ବର୍ଷରେ ପ୍ରାୟ ସମସ୍ତ ପ୍ରାଥମିକ ଶିକ୍ଷକ ଚାକିରୀ ମହିଳାମାନଙ୍କୁ ହି ଦିଆଯାଇଛି

ଆନୁଷ୍ଠାନିକ ଶିକ୍ଷା ବ୍ୟତୀତ ଅଣ ଆନୁଷ୍ଠାନିକ ଶିକ୍ଷା (ନନ୍ ଫରମାଲ୍ ଏଜୁକେଶନ୍) କ୍ଷେତ୍ରରେ ମହିଳାମାନଙ୍କୁ ସୁବିଧା ସୁଯୋଗ ଦେବା ସକାଶେ ରାଜ୍ୟରେ ୫୬୦ ଗୋଟି ସ୍ୱତନ୍ତ୍ର ମହିଳା ଅଣଆନୁଷ୍ଠାନିକ ଶିକ୍ଷା କେନ୍ଦ୍ର ସ୍ଥାପନ କରାଯାଇଅଛି । ଏତଦ୍‌ଭିନ୍ନ ଅବଶିଷ୍ଟ ୭,୦୦୦ ଅଣଆନୁଷ୍ଠାନିକ ଶିକ୍ଷା କେନ୍ଦ୍ରରେ ଆଶାତୀତଭାବେ ମହିଳାମାନଙ୍କର ସଂଖ୍ୟା ବୃଦ୍ଧି ପାଇଛି ।

ପ୍ରୌଢ଼ ଶିକ୍ଷା (ଆଡଲ୍‌ଟ ଏଜୁକେସନ୍) କାର୍ଯ୍ୟକ୍ରମରେ ୧୪—୩୫ ବର୍ଷ ବୟସ ସୀମାରେଖାରେ ଥିବା ନାରୀମାନଙ୍କୁ ସାକ୍ଷର କରିବା ଦିଗରେ ସ୍ୱତନ୍ତ୍ର ପଦକ୍ଷେପ ନିଆଯାଇଛି । ଏ ବାବଦରେ ଖୋଲାଯାଇଥିବା ପ୍ରୌଢ଼ ଶିକ୍ଷା କେନ୍ଦ୍ର ମଧ୍ୟରୁ ୫୦ ଭାଗ ମହିଳାମାନଙ୍କ ସକାଶେ ଉଦ୍ଦିଷ୍ଟ । ଉପଦେଷ୍ଟା ଓ ପରିଦର୍ଶକ ପଦବୀରେ ମହିଳାମାନଙ୍କ ସକାଶେ ସ୍ଥାନ ସଂରକ୍ଷଣ କରାଯାଇଛି । ଏଥିପାଇଁ ୧୯୮୦-୮୧ ମସିହାରେ ମୋଟ ୩,୯୦୦ କେନ୍ଦ୍ର ଥିବା ସ୍ଥଳେ ୧୯୮୭-୮୮ ମସିହାରେ ୮,୫୦୦ କେନ୍ଦ୍ର ଖୋଲାଯାଇଛି । ୧୯୮୦-୮୧ ବର୍ଷରେ ୩୧,୭୭୯ ଜଣ ମହିଳା ଶିକ୍ଷା ଗ୍ରହଣ କରିଥିବା ବେଳେ ୧୯୮୭-୮୮ରେ ଏହା ୧,୧୯,୩୮୧କୁ ବୃଦ୍ଧି ପାଇଛି । ଏହାର ବାର୍ଷିକ ହାରାହାରି ବୃଦ୍ଧି ୧୨,୫୧୬ ବା ୪୦ ଭାଗ ।

ନିରକ୍ଷରତା ଏକ ସାମାଜିକ ବ୍ୟାଧି ବୋଲି ଗ୍ରହଣ କରାଯାଇ ଜାତୀୟ ସ୍ତରରେ ତାର ନିରାକରଣ ନିମନ୍ତେ ମେ' ମାସ ୫ ତାରିଖରେ ସର୍ବ ଭାରତୀୟ ସ୍ତରରେ ପ୍ରଧାନମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ ଓ ଓଡ଼ିଶାରେ ଆମର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଏହାର ଉଦ୍‌ଘାଟନ କରିଛନ୍ତି । ଏହାକୁ ଜାତୀୟ ସାକ୍ଷରତା ମିଶନ୍ ବା (ନେସନାଲ୍ ଲିଟେରାସି ମିଶନ) ବୋଲି ନାମିତ କରି ଯୁଦ୍ଧକାଳୀନ ଭିତ୍ତିରେ ୧୯୯୫ ସୁଦ୍ଧା ଲକ୍ଷ୍ୟ ହାସଲ ପାଇଁ ପଦକ୍ଷେପ ଗ୍ରହଣ କରାଯାଇଛି । ସେଇ ପରିପ୍ରେକ୍ଷୀରେ ନାରୀ ଶିକ୍ଷାର ବହୁଳ ପ୍ରସାର ସମ୍ଭବ ହୋଇପାରିବ ।

ପ୍ରାଥମିକ ସ୍ତରରେ ନାରୀ ଶିକ୍ଷାର ଅଦ୍ଭୁତ ଉନ୍ନତି ସାଧିତ ହୋଇଅଛି । ୧୯୮୦-୮୧ ମସିହାରେ ପ୍ରାଥମିକ ବିଦ୍ୟାଳୟରେ ୬ରୁ ୧୪ ବର୍ଷ ବୟସର ଝିଅମାନଙ୍କର ସଂଖ୍ୟା ଥିଲା ୧୨,୮୦,୦୦୦ । କିନ୍ତୁ ୧୯୮୭-୮୮ ମସିହାରେ ଏଇ ଛାତ୍ରୀମାନଙ୍କ ସଂଖ୍ୟା ୧୮,୯୧,୦୦୦କୁ ବୃଦ୍ଧି ପାଇଛି । ବାର୍ଷିକ ବୃଦ୍ଧିର ହାର ୭,୪୪,୨୮୬ ନାମ ଲେଖା କ୍ଷେତ୍ରରେ ଇନ୍‌ସେନ୍‌ଟିଭ୍ ଡ୍ରାଇଭ ଆନ୍ଦୋଳନ ଦ୍ୱାରା ନାରୀ ଶିକ୍ଷାର ଯଥେଷ୍ଟ ବୃଦ୍ଧି କରାଯାଇଛି ।

ନିମ୍ନ ମାଧ୍ୟମିକ, ଉଚ୍ଚ ମଧ୍ୟ ଇଂରାଜୀ ବିଦ୍ୟାଳୟ ଓ ମାଧ୍ୟମିକ ବିଦ୍ୟାଳୟଗୁଡ଼ିକରେ ମହିଳା ଛାତ୍ରୀ ତଥା ଶିକ୍ଷୟିତ୍ରୀମାନଙ୍କ ସ୍ୱାସ୍ଥ୍ୟ ସେବା ସକାଶେ ସ୍ୱତନ୍ତ୍ର ପରିସ୍ରାଗାର ଓ ଶୌଚାଳୟ ନିର୍ମାଣ କରାଯାଉଛି । ଏ ସବୁ ଆନୁସଙ୍ଗିକ ସୁବିଧା ସୁଯୋଗ ଯୋଗାଇ ଦେବାଦ୍ୱାରା ସେମାନଙ୍କ ସଂଖ୍ୟା ବୃଦ୍ଧି ଘଟୁଛି ଓ ଭବିଷ୍ୟତରେ ଆହୁରି ଘଟିବ । ○○

# ଓଡ଼ିଶାରେ ଚକବନ୍ଦୀ

ଶ୍ରୀ ଯୁଗଳ କିଶୋର ପଟ୍ଟନାୟକ

ଆମ ରାଜ୍ୟ ମୁଖ୍ୟତଃ ଏକ କୃଷି ପ୍ରଧାନ ରାଜ୍ୟ ହୋଇଥିବାରୁ ଏହାର ଅଧିବାସୀମାନେ ମୁଖ୍ୟତଃ କୃଷି ଉପରେ ନିର୍ଭର କରନ୍ତି । କୃଷିର ଉନ୍ନତି ସାଧନ କରି ଜାତୀୟ ମହାସ୍ରୋତରେ ସାମିଲ କରିବା ନିମନ୍ତେ ଏବଂ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ବ୍ୟକ୍ତିମାନଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ଆଣିବା ନିମନ୍ତେ କୃଷିର ଉନ୍ନତି ଅପରିହାର୍ଯ୍ୟ । ଆଧୁନିକ ବିଜ୍ଞାନ ସମ୍ମତ ପ୍ରଣାଳୀ କୃଷି ପାଇଁ ଯେତିକି ପ୍ରୟୋଜନ କୃଷି କ୍ଷେତ୍ରରେ ଉନ୍ନତ ଜଳସେଚନ ଓ ଜଳ ସମ୍ପଦର ସୁନିୟନ୍ତ୍ରିତ ବିନିଯୋଗ, ସର୍ବୋପରି କୃଷି କ୍ଷେତ୍ରର ଚକବନ୍ଦୀକରଣ ତଥା ନିର୍ଭୁଲ ଓ ନିରଙ୍କୁଶ ସତ୍ତ୍ୱାଧିକାର ନିର୍ଦ୍ଧାରଣ ତତୋଧିକ ଆବଶ୍ୟକ ।

ଆମ ରାଜ୍ୟରେ ରୟତମାନଙ୍କର କୃଷି କ୍ଷେତ୍ର ଗୁଡ଼ିକ ବହୁଳ ଭାବେ ଖଣ୍ଡ ବିଖଣ୍ଡିତ ଓ ବିଛାରିତ ହୋଇ ଇତସ୍ତତଃଭାବେ ରହିଥିବାରୁ ଯୋଜନାବଦ୍ଧ ଭାବେ ଉନ୍ନତ ତଥା ଆଧୁନିକ କୃଷି ପ୍ରଣାଳୀ ଅବଲମ୍ବନ କରି ଉତ୍ପାଦନ ବୃଦ୍ଧି ଦିଗରେ ଏହା ଅନ୍ତରାୟ ସୃଷ୍ଟି କରୁଅଛି । ଏହି ଅବସ୍ଥାର ନିରାକରଣ କରି କୃଷିର ସର୍ବାଙ୍ଗୀନ ଉନ୍ନତି, ଉତ୍ପାଦନ ବୃଦ୍ଧି, କୃଷିଜୀବୀମାନଙ୍କର ଅର୍ଥନୈତିକ ମାନଦଣ୍ଡର ବିକାଶ, ଜଳସମ୍ପଦର ସୁସମ ବିନିଯୋଗ ତଥା ଜମିର ସତ୍ତ୍ୱାଧିକାର ନିର୍ଦ୍ଧାରଣ ନିମନ୍ତେ ଚକବନ୍ଦୀ କାର୍ଯ୍ୟକ୍ରମର ପରିକଳ୍ପନା କରାଯାଇଅଛି । ଆମ ଭାରତବର୍ଷରେ ଏହି ନୀତି ପଞ୍ଜାବ ଓ ହରିଆନାରେ ପ୍ରଥମେ କାର୍ଯ୍ୟକାରୀ କରାଯାଇଥିଲା । ଏହାର ସୁଫଳର ପ୍ରଭାବ ଅନ୍ୟାନ୍ୟ ରାଜ୍ୟମାନଙ୍କରେ ପଡ଼ିଥିଲା । ଭୂସଂସ୍କାର କାର୍ଯ୍ୟକ୍ରମ ଭଳି ଚକବନ୍ଦୀ କାର୍ଯ୍ୟକ୍ରମର ସଫଳ ରୂପାୟନ ଓଡ଼ିଶା ଚକବନ୍ଦୀ ଓ କ୍ଷେତ୍ର ବିଭାଜନ ନିରୋଧ ଆଇନ୍ ୧୯୭୨ କରିଆରେ ଆରମ୍ଭ କରାଯାଇଥିଲା ।

୧୯୭୨ ମସିହାର ବିଧାନ ସଭାରେ ଏହି ଆଇନ୍ ସଂକ୍ରାନ୍ତରେ ବିଲ୍ ଆଗତ କରି ଏହାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସମ୍ପର୍କରେ ସରକାର କହିଥିଲେ ଯେ, "In the context of strategy for increasing agricultural production in the country and in pursuance there of to give inducement and incentive to the cultivators it is considered expedient to initiate a legislation for consolidation of scattered holdings among various land owners to make them more compact and to provide against future fragmentation of holdings. This will help in economic forming and application of improved implements and methods of farming which are very necessary for development of agriculture and increased agricultural production".

ଏହି ଆଇନ୍ ୧୯୭୩ ମସିହା ଅଗଷ୍ଟ ମାସ ୧୦ ତାରିଖ ଠାରୁ କାର୍ଯ୍ୟକାରୀ କରାଯାଉଅଛି । ଏହି ଆଇନ୍‌ର ମୂଳ ଲକ୍ଷ୍ୟ ହେଉଛି :

୧. ଜଣେ ମାଲିକର ବିକ୍ଷିପ୍ତ ଭାବେ ଥିବା କ୍ଷେତ୍ରଗୁଡ଼ିକୁ ଏକତ୍ରୀତ କରି ଏକ ବଡ଼ କ୍ଷେତ୍ର ପ୍ରସ୍ତୁତ କରିବା ।

୨. ଜମିରେ ମାଲିକର ସତ୍ତ୍ୱାସତ୍ତ୍ୱ ନିର୍ଦ୍ଧାରଣ କରି ନକ୍ସା ଓ ଜମିର ଖତିୟାନ ପ୍ରସ୍ତୁତ କରିବା ।

୩. ଗ୍ରାମର ସର୍ବସାଧାରଣ ତଥା ସାମାଜିକ ଉନ୍ନତି ପାଇଁ ଜମି ସଂରକ୍ଷଣ କରିବା ।

୪. ବୁଝାମଣା ଭିତ୍ତିରେ ଜମିଜମା ସଂକ୍ରାନ୍ତୀୟ ବିବାଦ ଗ୍ରାମରେ ତୁଟାଇବା ।

୫. ଜଳର ସୁସମ ବଣ୍ଟନ ଓ ଉନ୍ନତି କୃଷି ପ୍ରଣାଳୀରେ ଉତ୍ପାଦନ ବୃଦ୍ଧି କରିବା ।

ଏହି କାର୍ଯ୍ୟକ୍ରମ ଦ୍ୱାରା କୃଷକର ବହୁ ନିତ୍ୟ ନୈମିତିକ ସମସ୍ୟା ସମାଧାନ ହେବା ସଙ୍ଗେସଙ୍ଗେ କୃଷି ପ୍ରତି ଅଧିକ ଧ୍ୟାନ ଦେଇପାରୁଛି । କୃଷି କାର୍ଯ୍ୟର ତତ୍ତ୍ୱାବଧାନ ସୁଗମ ହୋଇ ପାରୁଛି ଏବଂ କୃଷକର ସାମଗ୍ରିକ ଖର୍ଚ୍ଚ ମଧ୍ୟ ହ୍ରାସ ହେଉଅଛି । ଫଳରେ ଉନ୍ନତ ବୈଜ୍ଞାନିକ କୃଷି ପ୍ରଣାଳୀ ଅବଲମ୍ବନ କରି ଲାଭଜନକ ଭାବେ କୃଷି କାର୍ଯ୍ୟ ପାଇଁ ଆଗ୍ରହାନ୍ୱିତ ହେଉଅଛି ।

ଚକବନ୍ଦୀ ଆଇନର ଧାରା ୩(୧) ଅନୁଯାୟୀ ଓଡ଼ିଶା ସରକାର ନିର୍ଦ୍ଦିଷ୍ଟ ଅଞ୍ଚଳକୁ ଚକବନ୍ଦୀ ଆଇନ୍ ପରିସରଭୁକ୍ତ କରିବାକୁ ବିଜ୍ଞପ୍ତି ପ୍ରକାଶନ କରନ୍ତି । ଏହି ବିଜ୍ଞପ୍ତି ପ୍ରକାଶନ ହେବା ପରେ ଜମିବାଡ଼ି ସଂକ୍ରାନ୍ତୀୟ ଦେୱାନି କାର୍ଯ୍ୟବିଧି ଆଇନ୍‌ରେ ଓ ବନ୍ଦୋବସ୍ତ ସଂସ୍ଥାରେ ଗଚ୍ଛିତ ଥିବା ମୋକଦ୍ଦମାଗୁଡ଼ିକ ବିଚାର ବହିର୍ଭୂତ ହୋଇ ଚକବନ୍ଦୀ କର୍ତ୍ତୃପକ୍ଷଙ୍କ ପରିସରଭୁକ୍ତ ହୁଏ । ଚକବନ୍ଦୀ ଆଇନ୍‌ର ୬ ଧାରା ଅନୁଯାୟୀ ଏହି ବିଜ୍ଞପ୍ତି ସଂପୃକ୍ତ ମୌଜାମାନଙ୍କରେ ଘୋଷଣା କରାଯିବା ପରେ ମୌଜାର ସର୍ଭେ ଓ ରେକର୍ଡ ପ୍ରସ୍ତୁତି କାର୍ଯ୍ୟ ଆରମ୍ଭ ହୁଏ । ପ୍ରତ୍ୟେକ ପଞ୍ଚାୟତରେ ଗୋଟିଏ ଗୋଟିଏ ଶିବିର ସ୍ଥାପନ କରାଯାଏ ଓ ପ୍ରତି ଶିବିରରେ ଜଣେ ଜଣେ ସହକାରୀ ଚକବନ୍ଦୀ ଅଧିକାରୀଙ୍କ ଅଧୀନରେ ଅନ୍ୟାନ୍ୟ କର୍ମଚାରୀ କାର୍ଯ୍ୟ କରନ୍ତି । ଆମିନ ମୌଜାକୁ ଯାଇ ଖଣ୍ଡ ରେଜିଷ୍ଟର ବା ପ୍ରାରମ୍ଭିକ ଭୂସ୍ୱତ୍ୱଲିପି ପ୍ରସ୍ତୁତ କରନ୍ତି ଓ ସହକାରୀ ଚକବନ୍ଦୀ ଅଫିସର ଏହା ଭୂମି ମାଲିକଙ୍କ ଉପସ୍ଥିତିରେ ଫଇସଲା କରନ୍ତି ।

ପ୍ରତ୍ୟେକ ମୌଜାରେ ୨(ଖ) ଧାରା ଅନୁସାରେ ୭ ଜଣରୁ ୧୫ ଜଣ ଭୂମି ମାଲିକଙ୍କୁ ନେଇ ଏକ ଚକବନ୍ଦୀ କମିଟି ଗଠନ କରାଯାଇଥାଏ । ଏହି କମିଟିରେ ଜଣେ ଲେଖାଏଁ କ୍ଷୁଦ୍ର ଚାଷୀ, ମଧ୍ୟମ ଚାଷୀ ଓ ବଡ଼ ଚାଷୀ, ଭୂମିହୀନ ଲୋକ, ହରିଜନ ଓ ଆଦିବାସୀ ଲୋକ ସଭ୍ୟ ରହନ୍ତି । ଏହି ସଭ୍ୟମାନେ ଗ୍ରାମବାସୀଙ୍କ ତରଫରୁ ପ୍ରତିନିଧି ରୂପେ ବଚ୍ଛା ହୋଇଥା'ନ୍ତି । ଏହି କମିଟି ସଭ୍ୟମାନଙ୍କର ପରାମର୍ଶ, ଜମିର ମୂଲ୍ୟ ନିର୍ଦ୍ଧାରଣ, ନୀତି ନିର୍ଦ୍ଧାରଣ ପତ୍ର ପ୍ରସ୍ତୁତି, ଚକବନ୍ଦୀ ଅଯୋଗ୍ୟ ଜମିର ତଦନ୍ତ, ଚକ ମନୋନୟନ ଓ ଚକ କଟା ସମୟରେ ନିଆଯାଇଥାଏ । ସହକାରୀ ଚକବନ୍ଦୀ ଅଧିକାରୀ, ଭୂମି ମାଲିକ ଓ ଚକବନ୍ଦୀ କମିଟିର ସଭ୍ୟମାନଙ୍କର ମତାମତ ନେଇ ଏକ ଅଯୋଗ୍ୟ ଜମି ତାଲିକା ଚକବନ୍ଦୀ ଆଇନ୍‌ର ୨(ଚ) ଧାରା ଅନୁଯାୟୀ ପ୍ରସ୍ତୁତ କରନ୍ତି । ତାହାକୁ ଚକବନ୍ଦୀ ଅଧିକାରୀ ଚକବନ୍ଦୀ ପାଇଁ ଅଯୋଗ୍ୟ ବୋଲି ଘୋଷଣା କରନ୍ତି । ସହକାରୀ ଚକବନ୍ଦୀ ଅଧିକାରୀ, ତାପରେ ପ୍ରତ୍ୟେକ ପ୍ଲଟ୍‌ର ମୂଲ୍ୟ ନିର୍ଦ୍ଧାରଣ କରିବା ନିମନ୍ତେ ଏକ ଆଦର୍ଶ ପ୍ଲଟ୍ ମନୋନୟନ କରନ୍ତି । ଏହି ଆଦର୍ଶ ପ୍ଲଟ୍‌କୁ ଆଖି ଆଗରେ ରଖି ଜମିର ଉର୍ବରତା, ଉତ୍ପାଦନ, ଜଳସେଚନ ସୁବିଧା, ଗତାଗତ ସୁବିଧାମାନର ହିସାବ ଅନୁସାରେ ଅନ୍ୟ ପ୍ଲଟ୍‌ଗୁଡ଼ିକର ମୂଲ୍ୟ ନିର୍ଦ୍ଧାରଣ ସହକାରୀ ଚକବନ୍ଦୀ ଅଧିକାରୀ କରନ୍ତି । ତାହାକୁ ୬(୩) ଧାରାରେ ଚକବନ୍ଦୀ ଅଧିକାରୀ ଅନୁମୋଦନ କରନ୍ତି । ତତ୍‌ପରେ ସହକାରୀ ଚକବନ୍ଦୀ ଅଧିକାରୀ କମିଟି ସଭ୍ୟମାନଙ୍କର ପରାମର୍ଶକ୍ରମେ ୮ ଧାରା ଅନୁସାରେ ନୀତି ନିର୍ଦ୍ଧାରଣ ପତ୍ର ପ୍ରସ୍ତୁତି କରନ୍ତି । ଏହି ନୀତି ନିର୍ଦ୍ଧାରଣ ପତ୍ରରେ ମୌଜାର ଗୋଚର, ଶ୍ମଶାନ, ଗ୍ରାମ୍ୟ ଜଙ୍ଗଲ, ଗ୍ରାମ୍ୟ ରାସ୍ତା, ଚକରାସ୍ତା, ପାଣି ନାଳ, ସଫେଇ ଓ ଗ୍ରାମର ବିଭିନ୍ନ ଉନ୍ନତି ମୂଳକ କାର୍ଯ୍ୟ ପାଇଁ ଜମି ସଂରକ୍ଷିତ ରଖାଯାଏ । ମୌଜାରେ ଥିବା ସରକାର ଜମିକୁ ଏହି ଉନ୍ନତି ମୂଳକ କାର୍ଯ୍ୟ ନିମନ୍ତେ ଭରଣା କରା ଗଲା ପରେ ଅଧିକ ଜମି ଆବଶ୍ୟକ ହେଲେ ଭୂମି ମାଲିକମାନଙ୍କ ଠାରୁ ସ୍ୱଳ୍ପ ଆକାରରେ ଆଦାୟ କରାଯାଏ । ଯେଉଁ ନିୟମ ଅବଲମ୍ବନ କରି ଚକ କଟାଯିବ ତାହା ମଧ୍ୟ ଏହି ନୀତି ନିର୍ଦ୍ଧାରଣ ପତ୍ରରେ ଉଲ୍ଲେଖ କରାଯାଏ । ଏହି ସମସ୍ତ କାର୍ଯ୍ୟ ପରେ ଏଗୁଡ଼ିକ ୯(୧) ଧାରାରେ ପ୍ରକାଶନ କରାଯାଏ ଏବଂ ୯(୨) ଧାରା ଅନୁଯାୟୀ ଲୋକମାନଙ୍କୁ ପର୍ଚ୍ଚା ଦିଆଯାଏ । ଲୋକମାନେ ପର୍ଚ୍ଚା ପାଇବାର ଏକମାସ ମଧ୍ୟରେ ଆପତ୍ତି ଥିଲେ ସହକାରୀ ଚକବନ୍ଦୀ ଅଧିକାରୀଙ୍କ ନିକଟରେ ଆପତ୍ତି ଦରଖାସ୍ତ ଦାଏର କରନ୍ତି । ୧୦ ଧାରାରେ ସହକାରୀ ଚକବନ୍ଦୀ ଅଧିକାରୀ କମିଟି ମେମ୍ବରମାନଙ୍କ ସହାୟତାରେ ଉଭୟ ପକ୍ଷମାନଙ୍କ ମଧ୍ୟରେ ମିଳାମିଶା କରି ମୋକଦ୍ଦମାଗୁଡ଼ିକ ଫଏସଲା କରନ୍ତି । ଚକବନ୍ଦୀ ଅଧିକାରୀ ୧୧ ଧାରାରେ ଓ ଚକବନ୍ଦୀ ଉପନିର୍ଦ୍ଦେଶକଙ୍କ ନିକଟରେ ୧୨ ଧାରାରେ ମଧ୍ୟ ଅପିଲ କରାଯାଏ । ୧୦, ୧୧ ଓ ୧୨ ଧାରାରେ ଫଏସଲା ହୋଇଥିବା ମୋକଦ୍ଦମାଗୁଡ଼ିକର ଆଦେଶ କାର୍ଯ୍ୟକାରୀ ହେବା ପରେ ୧୫ ଦିନ ନିମନ୍ତେ ୧୩ ଧାରାରେ ସର୍ବସାଧାରଣଙ୍କ ଅବଗତି ନିମନ୍ତେ ପ୍ରକାଶ କରାଯାଏ । ଏହାପରେ କୌଣସି ଚକବନ୍ଦୀ ଯୋଗ୍ୟ ଜମି ଚକବନ୍ଦୀ ଅଧିକାରୀଙ୍କ ଲିଖିତ ଅନୁମତି ବିନା ହସ୍ତାନ୍ତର, ବନ୍ଧକ ଦାନ କରାଯାଇ ପାରିବ ନାହିଁ । ପ୍ରକୃତ ପକ୍ଷେ ଚକବନ୍ଦୀ କାର୍ଯ୍ୟ ଏଠିଠାରୁ ଆରମ୍ଭ କରାଯାଏ ।

ପ୍ରତ୍ୟେକ ଇଉନିଟ୍ ନିମନ୍ତେ ୧୭ ଧାରାରେ ଚିଠା ଚକବନ୍ଦୀ ପରିକଳ୍ପନା ପ୍ରସ୍ତୁତ କରାଯାଏ ଚକ ବଣ୍ଟନ ପୂର୍ବରୁ ସମାନ ଶ୍ରେଣୀର ଓ ସମମୂଲ ଜମିଗୁଡ଼ିକୁ ନେଇ ମୌଜାକୁ କେତେ ଗୁଡ଼ିଏ ସେକ୍ଟରରେ ବିଭକ୍ତ କରାଯାଇଥାଏ । କୌଣସି ଜମି ମାଲିକଙ୍କୁ କୌଣସି ଇଉନିଟ୍‌ରେ ୩ ଚକରୁ ଊର୍ଦ୍ଧ୍ୱ ଦିଆଯିବ ନାହିଁ । ଜମି ମାଲିକମାନଙ୍କର ମତାମତ ଓ ସମିତି ସଦସ୍ୟଙ୍କ ସହ ପରାମର୍ଶ କରି ଜମି ମାଲିକଙ୍କୁ ଯେଉଁ ସ୍ଥାନରେ ଚକ ଦିଆଯିବ ସହକାରୀ ଚକବନ୍ଦୀ ଅଧିକାରୀ ଆଦେଶ ଦିଅନ୍ତି ଓ ତଦନୁସାରେ ଚକ ପ୍ରାରମ୍ଭିକ ଚିହ୍ନଟ ଦିଆଯାଏ । କୌଣସି ଜମି ମାଲିକଙ୍କୁ ତାଙ୍କ ମୂଳ ରକବାର ୩୩୧/୩ ଜମି କିମ୍ବା କମ୍ କିମ୍ବା ବେଶୀ ଦିଆଯାଇ ପାରିବ ନାହିଁ । ଜମି ମାଲିକଙ୍କୁ ସାଧାରଣତଃ ଆୟତାକାର ଚକ ଯୋଗାଇ ଦିଆଯାଏ । ପର୍ଚ୍ଚା ପାଇବାର ୩୦ ଦିନ ମଧ୍ୟରେ ଯଦି କୌଣସି ଜମି ମାଲିକଙ୍କର ଆପତ୍ତି ଥାଏ ତେବେ ସେ ଚକବନ୍ଦୀ ଅଧିକାରୀଙ୍କ ଦ୍ୱାରା କ୍ଷମତାପ୍ରାପ୍ତ ସହକାରୀ ଚକବନ୍ଦୀ ଅଧିକାରୀଙ୍କୁ ବିନା ମୂଲ୍ୟରେ ନିର୍ଦ୍ଦିଷ୍ଟ ଫର୍ମରେ ଆପତ୍ତି ଦରଖାସ୍ତ ଦେଇପାରିବେ । ଚକବନ୍ଦୀ ଅଧିକାରୀଙ୍କ ଦ୍ୱାରା ୧୯ ଧାରାରେ ମୋକଦ୍ଦମା ଗୁଡ଼ିକ ସରଜମିନ୍ ତଦନ୍ତ କରାଯାଇ ଫଇସଲା କରାଯାଏ । ଚକବନ୍ଦୀ ଅଧିକାରୀଙ୍କ ଆଦେଶର ୩୦ ଦିନ ମଧ୍ୟରେ ଚକବନ୍ଦୀ ଉପ ନିର୍ଦ୍ଦେଶକଙ୍କ ନିକଟରେ ଅପିଲ୍ ଦାଏର୍ କରାଯାଇପାରିବ । ସମସ୍ତ ଅପିଲ ଫଏସଲା କାର୍ଯ୍ୟ ଶେଷ ପରେ ଚକବନ୍ଦୀ ଉପ ନିର୍ଦ୍ଦେଶକ ମୌଜାକୁ ଯାଇ ଚକବନ୍ଦୀ ସମିତି ଓ ଜମି ମାଲିକଙ୍କ ସହ ଆଲୋଚନା କରି ମୌଜାକୁ ୨୧ ଧାରାରେ ଚୂଡ଼ାନ୍ତ କରନ୍ତି ଓ ଚୂଡ଼ାନ୍ତ ଚିଠା ଚକବନ୍ଦୀ ପରିକଳ୍ପନା ମୌଜାରେ ଏକ ଦିନ ପାଇଁ ପ୍ରକାଶନ ହୁଏ ।

ଚିଠା ଚକବନ୍ଦୀ ପରିକଳ୍ପନା ଚୂଡ଼ାନ୍ତ ପରେ ଚୂଡ଼ାନ୍ତ ସତ୍ତ୍ୱଲିପି ଓ ନକ୍ସା ପ୍ରସ୍ତୁତ କରାଯାଇ ୨୨(୨) ଧାରାରେ ୧୫ ଦିନ ନିମନ୍ତେ ପ୍ରକାଶନ କରାଯାଏ । ପ୍ରକାଶନ ପରେ ଜମି ମାଲିକଙ୍କୁ ପର୍ଚ୍ଚା ଯୋଗାଇ ଦିଆଯାଏ ।

ନୀତି ନିର୍ଦ୍ଧାରଣ ପତ୍ରରେ ଗ୍ରାମ ନିମନ୍ତେ ବିଭିନ୍ନ ଉନ୍ନତି ମୂଳକ ପରିକଳ୍ପନା ପାଇଁ ସଂରକ୍ଷିତ ଥିବା ଜମି ଚିହ୍ନଟ କରାଯାଏ ଓ କାଡା (CADA) ବିଭାଗ ଦ୍ୱାରା ଚକ ନାଳି ସଫେଇ ନାଳି ତିଆରି କରାଯାଏ ।

ଯେଉଁ ଜମି ମାଲିକମାନେ ଚକ ଦଖଲ ସମୟରେ କୌଣସି ପ୍ରତିବନ୍ଧକର ସମ୍ମୁଖୀନ ହୁଅନ୍ତି ସେମାନେ ସହକାରୀ ଚକବନ୍ଦୀ ଅଧିକାରୀଙ୍କ ନିକଟରେ ଲିଖିତ ଭାବେ ଜଣାଇଲେ ଚକବନ୍ଦୀ ଆଇନ୍‌ର ୨୫ ଧାରାରେ ସେମାନଙ୍କୁ ପୁଣି ଦଖଲ ଦିଆଯାଏ ।

୩୭(୨) ଧାରାରେ ଚକବନ୍ଦୀ ନିର୍ଦ୍ଦେଶକ ଓ ୩୬ ଓ ୩୭(୧) ଧାରାରେ ଚକବନ୍ଦୀ କମିଶନରଙ୍କ ନିକଟରେ ରିଭିଜନ ମୋକଦ୍ଦମା ଦାଏର କରିବାର ଆଇନ୍ ଗତ ବ୍ୟବସ୍ଥା ଅଛି । ଚକବନ୍ଦୀ ଅଦାଲତରେ ମୋକଦ୍ଦମା ଦାଏର କରିବା ପାଇଁ ଅନ୍ୟାନ୍ୟ ଅଦାଲତ ପରି କୋର୍ଟ ଫି ର ଆବଶ୍ୟକତା ପଡ଼େ ନାହିଁ ।

ଏହି ଯୋଜନା ପ୍ରଥମେ ମହାନଦୀ ସାଲନ୍ଦୀ ଋଷିକୁଲ୍ୟା ବୃହତ୍ ଜଳସେଚନ ପ୍ରକଳ୍ପ ଦ୍ୱାରା ଜଳ ସେଚିତ ହେଉଥିବା ଅଞ୍ଚଳରେ କରାଯାଉଥିଲା । କ୍ରମଶଃ ଏହା ମଧ୍ୟମ ଓ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ଅଞ୍ଚଳରେ କରାଯାଉଅଛି ।

ଓଡ଼ିଶାର ୧୩ଟି ଜିଲ୍ଲା ମଧ୍ୟରୁ କୋରାପୁଟ ବ୍ୟତୀତ ଅନ୍ୟ ୧୨ ଗୋଟି ଜିଲ୍ଲାରେ ଚକବନ୍ଦୀ କାର୍ଯ୍ୟ ଆରମ୍ଭ କରାଯାଇଅଛି । ତନ୍ମଧ୍ୟରୁ ବାଲେଶ୍ୱରରେ ୧.୩୫ ଲକ୍ଷ ହେକ୍ଟର, ବଲାଙ୍ଗିରରେ .୫୮ ଲକ୍ଷ ହେକ୍ଟର, କଟକରେ ୩.୨୨ ଲକ୍ଷ ହେକ୍ଟର, ଢେଙ୍କାନାଳରେ ୦.୪୪ ଲକ୍ଷ ହେକ୍ଟର, ଗଞ୍ଜାମରେ ୦.୫୮ ଲକ୍ଷ ହେକ୍ଟର, କଳାହାଣ୍ଡିରେ ୦.୧୪ ଲକ୍ଷ ହେକ୍ଟର, କେନ୍ଦୁଝରରେ ୦.୦୮ ଲକ୍ଷ ହେକ୍ଟର,

ମୟୂରଭଞ୍ଜରେ ୦.୩୫ ଲକ୍ଷ ହେକ୍ଟର, ଫୁଲବାଣୀରେ ୦.୩୩ ଲକ୍ଷ ହେକ୍ଟର, ପୁରୀରେ ୧.୮୧ ଲକ୍ଷ ହେକ୍ଟର, ସମ୍ବଲପୁରରେ ୧.୭୩ ଲକ୍ଷ ହେକ୍ଟର ଓ ସୁନ୍ଦରଗଡରେ ୦.୧୨ ଲକ୍ଷ ହେକ୍ଟର ଏହିପରି ସର୍ବମୋଟ ୧୦.୭୩ ଲକ୍ଷ ହେକ୍ଟର ଜମିରେ ଚକବନ୍ଦୀ କାର୍ଯ୍ୟ ଆରମ୍ଭ କରାଯାଇଅଛି । ୧୨ ଗୋଟି ଜିଲ୍ଲାରେ ମୋଟ ୭,୦୭୮ ଗୋଟି ଗ୍ରାମରେ ଚକବନ୍ଦୀ କାର୍ଯ୍ୟ ଆରମ୍ଭ କରାଯାଇ ଅଦ୍ୟାବଧି ୪,୬୪୧ ମୌଜାର ୬.୪୭ ଲକ୍ଷ ହେକ୍ଟର ଜମିରେ ଚକବନ୍ଦୀ କାର୍ଯ୍ୟ ସମାପ୍ତ ହେଲାଣି ।

ଏହି କାର୍ଯ୍ୟକ୍ରମକୁ ସଫଳ ରୂପାୟନ ଦେବା ନିମନ୍ତେ ଚକବନ୍ଦୀ ଅଞ୍ଚଳକୁ ୧୪ ଗୋଟି ଉପ ନିର୍ଦ୍ଦେଶକ ୨୪୨ ଟି ଶିବିର ଓ ୩୪ ଗୋଟି ମଣ୍ଡଳରେ ବିଭକ୍ତ କରାଯାଇ କାର୍ଯ୍ୟ କରାଯାଉଅଛି । ଏହି କାର୍ଯ୍ୟର ପରିଚାଳନା ନିମନ୍ତେ ୩ ଜଣ ଚକବନ୍ଦୀ କମିଶନର, ଜଣେ ଚକବନ୍ଦୀ ନିର୍ଦ୍ଦେଶକ, ୧୫ ଜଣ ଉପ ନିର୍ଦ୍ଦେଶକ, ୧ ଜଣ ସହ ନିର୍ଦ୍ଦେଶକ, ଚକବନ୍ଦୀ ଅଧିକାରୀ ୪୭ ଜଣ ଓ ସହକାରୀ ଚକବନ୍ଦୀ ଅଧିକାରୀ ୩୦୨ ଜଣଙ୍କୁ ନିଯୁକ୍ତ ବା ଅବସ୍ଥାପନା କରାଯାଇଅଛି । ବର୍ତ୍ତମାନ ସୁଦ୍ଧା ଏହି ସଂସ୍ଥାରେ ୬,୪୦୯ ଜଣଙ୍କୁ କାମ ଯୋଗାଇ ଦିଆଯାଇଅଛି ।

ଏଠାରେ ଉଲ୍ଲେଖ ଯୋଗ୍ୟ ଯେ, ପ୍ରଥମ ପର୍ଯ୍ୟାୟରେ ଚକବନ୍ଦୀ କାର୍ଯ୍ୟକୁ ୧୯୭୪ ଠାରୁ ଆରମ୍ଭ କରାଯାଇ ପଞ୍ଚମ ପଞ୍ଚ ବାର୍ଷିକ ଯୋଜନା ଶେଷ ସୁଦ୍ଧା ଅର୍ଥାତ୍ ୧୯୭୯-୮୦ ସୁଦ୍ଧା ୬ ବର୍ଷ ମଧ୍ୟରେ ମାତ୍ର ୬୨୮ ଗୋଟି ଗ୍ରାମର ୪୬ ହଜାର ହେକ୍ଟର ଜମିରେ ଚକବନ୍ଦୀ କାର୍ଯ୍ୟ ଦ୍ରୁତାନ୍ତ କରାଯାଇଥିଲା । କିନ୍ତୁ ଷଷ୍ଠ ପଞ୍ଚବାର୍ଷିକ ଯୋଜନା ଆରମ୍ଭରୁ ଅର୍ଥାତ୍ ୧୯୮୦-୮୧ ଠାରୁ ଆଜି ସୁଦ୍ଧା ବିଗତ ଆଠବର୍ଷ ମଧ୍ୟରେ ମୋଟ୍ ୩,୮୬୪ ଗ୍ରାମରେ ୫ ଲକ୍ଷ ୭୫ ହଜାର ହେକ୍ଟର ଜମିରେ ଚକବନ୍ଦୀ କାର୍ଯ୍ୟକ୍ରମ ଦ୍ରୁତାନ୍ତ ହୋଇଅଛି ।

ଚକବନ୍ଦୀ କାର୍ଯ୍ୟକ୍ରମ ଭଳି ଏକ ବିପ୍ଲବାତ୍ମକ ନୂତନ କାର୍ଯ୍ୟକ୍ରମ ଗ୍ରହଣ କରି ଚିରାଚରିତ ଭାବେ ପ୍ରଚଳିତ ଯୋତବନ୍ଦୀ ପ୍ରଥାକୁ ସଂପୂର୍ଣ୍ଣ ଭାବେ ପରିହାର କରିବା ଏକ କଷ୍ଟ ସାଧ୍ୟ ବ୍ୟାପାର । ଯେ କୌଣସି ପ୍ରକାର ନୂତନତ୍ୱ ଗ୍ରହଣ ନିମନ୍ତେ ବିତୃଷ୍ଣା ଭାବ ପ୍ରକାଶ ପାଇବା ସ୍ୱାଭାବିକ । କିନ୍ତୁ ଏହାର ସଫଳ ରୂପାୟନ ପାଇଁ ଜନସାଧାରଣଙ୍କର ଆନ୍ତରିକ ସହଯୋଗ ଓ ସକ୍ରିୟ ଅଂଶ ଗ୍ରହଣ ନିତାନ୍ତ ଦରକାର । ସେହିପରି ଚକବନ୍ଦୀ ସଂସ୍ଥାର କର୍ମକର୍ତ୍ତାମାନେ ମଧ୍ୟ ଆନ୍ତରିକତାର ସହ ଉତ୍ସର୍ଗୀକୃତ ଭାବେ ଜନ ସହଯୋଗ ହାସଲ ପୂର୍ବକ ଏହି କାର୍ଯ୍ୟକୁ ସଂପାଦନ କଲେ ଚକବନ୍ଦୀ ଭଳି ଏକ ସୁଦୂର ପ୍ରସାରୀ ଉନ୍ନୟନ ମୂଳକ ପରିକଳ୍ପନାର ସଫଳ ରୂପାୟନ ହୋଇପାରିବ ।





କିଆକୋଟୀ କ୍ଷେତ୍ରପାଳ ସାଂସ୍କୃତିକ ସଂସଦ ଉତ୍ସବରେ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସିଂହ

## ବିଗତ ଆଠବର୍ଷରେ ଓଡ଼ିଶା...

# ଜଳସେଚନ କ୍ଷେତ୍ରରେ ଅଗ୍ରଗତି

**ସେକ୍ ମତ୍‌ଲୁବ୍ ଅଲ୍ଲି**

ଓଡ଼ିଶା ଗୋଟିଏ କୃଷି ପ୍ରଧାନ ରାଜ୍ୟ । ଏହାର ଶତକଡା ପ୍ରାୟ ୮୦ ଭାଗ ଅଧିବାସୀ କୃଷି ଉପରେ ନିର୍ଭର କରି ଚଳିଥାନ୍ତି । ସୁତରାଂ ରାଜ୍ୟର ଜଳସଂପଦ ଓ କୃଷୋପଯୋଗୀ ଜମିର ଉପଯୁକ୍ତ ବିକାଶ ନିମନ୍ତେ ଜଳସେଚନ ବ୍ୟବସ୍ଥା କରିବାର ବିଶେଷ ଆବଶ୍ୟକତା ରହିଛି । ରାଜ୍ୟର ସମୁଦାୟ କୃଷୋପଯୋଗୀ ଜମିର ପରିମାଣ ୬୫·୫୯ ଲକ୍ଷ ହେକ୍ଟର ଏବଂ ସେଥି ମଧ୍ୟରୁ ବିଭିନ୍ନ ଉପାୟରେ ଜଳସେଚନ ପ୍ରକଳ୍ପ ମାଧ୍ୟମରେ ପ୍ରାୟ ୫୯ ଲକ୍ଷ ହେକ୍ଟର ଅର୍ଥାତ୍ ଶତକଡା ପ୍ରାୟ ୮୮ ଭାଗ ଜମିରେ ଜଳସେଚନ ବ୍ୟବସ୍ଥା କରାଯାଇ ପାରିବ । ଏଥିରୁ ଜଣାଯିବ ଯେ ଜଳସେଚନ ସକାଶେ ଜଳ ସଂପଦର ଅଭାବ ଆମ ରାଜ୍ୟରେ ନାହିଁ । ହିସାବରୁ ଜଣାଯାଇଛି ଯେ ବର୍ଷାଜଳ, ସ୍ରୋତ ଆକାରରେ ରାଜ୍ୟର ଯେଉଁସବୁ ନଦ ନଦୀମାନଙ୍କ ଜରିଆରେ ସମୁଦ୍ରକୁ ପ୍ରବାହିତ ହେଉଛି ସେଥିମଧ୍ୟରୁ ୧୦·୫୫ ନିୟୁତ ହେକ୍ଟର ମିଟର ଜଳ ନାନାଦି ବ୍ୟବହାର ପାଇଁ ମିଳିବ । ମାତ୍ର ରାଜ୍ୟର ଜଳସଂପଦର ବିକାଶ ନିମନ୍ତେ ୧୯୮୧ ମସିହାରେ ଯେଉଁ ମାଷ୍ଟର ପ୍ଲାନ ପ୍ରସ୍ତୁତ କରାଯାଇଛି ସେଥିରୁ ଜଣାଯାଏ ଯେ ଉପରୋକ୍ତ ୧୦·୫୫ ନିୟୁତ ହେକ୍ଟର ମିଟର ଜଳସଂପଦ ମଧ୍ୟରୁ ମାତ୍ର ୭·୮୪ ନିୟୁତ ହେକ୍ଟର ମିଟର ଜଳ ସଦୁପଯୋଗ କରାଯାଇ ପାରିବ । ଏତଦ୍‌ବ୍ୟତୀତ ଭୂତଳ ଜଳସଂପଦ ମଧ୍ୟରୁ ୩·୨୪ ନିୟୁତ ହେକ୍ଟର ମିଟର ଜଳ ଉପଯୋଗ କରାଯାଇ ପାରିବ । ସୁତରାଂ ମୋଟରେ ୧୧·୦୮ ନିୟୁତ ହେକ୍ଟର ମିଟର ଜଳସଂପଦ ବିଭିନ୍ନ ଉନ୍ନୟନ ମୂଳକ କାର୍ଯ୍ୟରେ ଲାଗି ପାରିବ । ଏହି ପ୍ରଚୁର ଜଳସଂପଦ ଓଡ଼ିଶା ପାଇଁ ପ୍ରକୃତିର ବଡ଼ ଦାନ ଅଟେ ।

ଜଳର ଆବଶ୍ୟକତା ସଂପର୍କରେ ଏଠାରେ ଆଲୋଚନା କରିବା ଅନାବଶ୍ୟକ । ମାତ୍ର ଏତିକି କହିଲେ ଯଥେଷ୍ଟ ହେବ ଯେ ଜଳସଂପଦର ଉପଯୁକ୍ତ ବିକାଶ ଉପରେ ରାଜ୍ୟର ଉନ୍ନତି ନିର୍ଭର କରେ । ଭୂତଳ ଜଳସଂପଦ ତୁଳନାରେ ଭୂପୃଷ୍ଠ ଜଳସଂପଦର ବିକାଶ ସାଧାରଣ ଅଧିକ ହୋଇଥାଏ । ମାତ୍ର ରାଜ୍ୟର ବ୍ୟବହାର ଉପଯୋଗୀ ମୋଟ ୭·୮୪ ନିୟୁତ ହେକ୍ଟର ମିଟର ଭୂପୃଷ୍ଠ ଜଳସଂପଦ ମଧ୍ୟରୁ ଏପର୍ଯ୍ୟନ୍ତ ମାତ୍ର ୧·୨୩ ନିୟୁତ ହେକ୍ଟର ମିଟର ଉପଯୋଗ କରାଯାଇ ପାରିଛି । ହୀରାକୁଦ ବନ୍ଧ ଯୋଜନା ଯଦିଓ ରାଜ୍ୟର ତଥା ସ୍ୱାଧୀନ ଭାରତର ସର୍ବପ୍ରଥମ ବହୁମୁଖୀ ବନ୍ଧ ଯୋଜନା ଅଟେ, ଷଷ୍ଠ ଯୋଜନା ପ୍ରାରମ୍ଭ (୧୯୮୦ ମସିହା) ସୁଦ୍ଧା ରାଜ୍ୟରେ ଜଳସେଚନର ବିକାଶ ନିମନ୍ତେ ସମୁଚିତ ଦୃଷ୍ଟି ଦିଆଯାଇ ନଥିଲା । ସେହି ସମୟକୁ ରାଜ୍ୟରେ ବିଭିନ୍ନ ଶ୍ରେଣୀର ଜଳସେଚନ ପ୍ରକଳ୍ପମାନଙ୍କ ଜରିଆରେ ୧୨ ଲକ୍ଷ ୯୦ ହଜାର ହେକ୍ଟର ଜମିରେ ଜଳସେଚନ କରିବା ସମ୍ଭବ ହୋଇଥିଲା । ଏହା ରାଜ୍ୟର ସମୁଦାୟ କୃଷୋପଯୋଗୀ ଜମିର ଶତକଡା ୧୯·୬ ଭାଗ ଏବଂ ମୋଟ ଜଳସେଚନ ଉପଯୋଗୀ ଜମିର ଶତକଡା ୨୧·୮ ଭାଗ ଅଟେ । ସେତେବେଳକୁ ରାଜ୍ୟରେ ୩୯ଟି ବୃହତ୍ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ, ତିନୋଟି ସଂପ୍ରସାରଣ ତଥା ଆଧୁନିକୀକରଣ ପ୍ରକଳ୍ପ, ୩୩୧ଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପର କାର୍ଯ୍ୟ ଅସଂପୂର୍ଣ୍ଣ ହୋଇ ବିଭିନ୍ନ ସ୍ତରରେ ଥିଲା । ପ୍ରଧାନତଃ ଆବଶ୍ୟକୀୟ ବ୍ୟୟ ବରାଦ ଅଭାବରେ ଏହି ସବୁ ପ୍ରକଳ୍ପଗୁଡ଼ିକର କାର୍ଯ୍ୟ ତ୍ୱରାନ୍ୱିତ କରାଯାଇ ପାରୁନଥିଲା ।

ଷଷ୍ଠ ଯୋଜନା କାଳରେ ରାଜ୍ୟ ସରକାର ଜଳସେଚନର ସଂପ୍ରସାରଣ ପାଇଁ ଅଧିକ ଗୁରୁତ୍ୱ ଦେଲେ । ମରୁଡ଼ି ପ୍ରପୀଡ଼ିତ ଓ ଜଳସେଚନ ଅଭାବ ରହିଥିବା ଅଞ୍ଚଳରେ ବିଶେଷତଃ ଆଦିବାସୀ ଏବଂ ଅନଗ୍ରସର ଅଞ୍ଚଳରେ ଜଳସେଚନର ସୁବିଧା କରିବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ସମୁଚିତ ଧ୍ୟାନ ଦେଲେ । ଏହି ଯୋଜନା କାଳରେ ନୂତନ କରି ୯ଟି ବୃହତ୍ ଜଳସେଚନ ପ୍ରକଳ୍ପ, ୭ଟି ମଧ୍ୟମ ଜଳସେଚନ ପ୍ରକଳ୍ପ ଏବଂ ୬୭ଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପର କାର୍ଯ୍ୟ ହାତକୁ ନିଆଗଲା । କମ୍ ସମୟ ବ୍ୟବଧାନରେ ଉଠାଜଳସେଚନ ପ୍ରକଳ୍ପ ଜରିଆରେ ଜଳସେଚନ ସୁଯୋଗ ସୃଷ୍ଟି କରାଯାଇ ପାରୁଥିବାରୁ ଏହି ଯୋଜନା କାଳରେ ଓଡ଼ିଶା ଉଠାଜଳସେଚନ ନିଗମର କାର୍ଯ୍ୟକୁ ତ୍ୱରାନ୍ୱିତ କରାଗଲା । ଫଳରେ ଷଷ୍ଠ ଯୋଜନା କାଳରେ ଦୁଇଟି ବୃହତ୍ ଜଳସେଚନ ପ୍ରକଳ୍ପ ଯଥା, ମହାନଦୀ ତ୍ରିକୋଣଭୂମି ଜଳସେଚନ ପ୍ରକଳ୍ପର ଦ୍ୱିତୀୟ ପର୍ଯ୍ୟାୟ, ସାଲନ୍ଦୀ ପ୍ରକଳ୍ପ, ୬ଟି ମଧ୍ୟମ ଜଳସେଚନ ପ୍ରକଳ୍ପ ଯଥା—ତାଳ, ଖଡ଼କେଇ, ନେସା, ସାଉପାନି, ତାହୁଜା ଏବଂ ରାମନଦୀ, ଦୁଇଟି ଆଧୁନିକୀକରଣ ପ୍ରକଳ୍ପ ଯଥା— ବଳଦିହା ଏବଂ ହୀରାକୁଦ ଜଳସେଚନ ପ୍ରକଳ୍ପର ସଂପ୍ରସାରଣ କାର୍ଯ୍ୟ ସଂପୂର୍ଣ୍ଣ କରାଯାଇଥିଲା । ଏତଦ୍‌ବ୍ୟତୀତ ବିଶ୍ୱବ୍ୟାଙ୍କ ସହାୟତାରେ କାର୍ଯ୍ୟକାରୀ ହେଉଥିବା ଡୁମରବାହାଲ ମଧ୍ୟମ ଜଳସେଚନ ପ୍ରକଳ୍ପର କାର୍ଯ୍ୟ ମଧ୍ୟ ପ୍ରାୟ ସଂପୂର୍ଣ୍ଣ ହୋଇଥିଲା । ଫଳରେ ଷଷ୍ଠ ଯୋଜନା କାଳ ମଧ୍ୟରେ ଏହି ସବୁ ପ୍ରକଳ୍ପଗୁଡ଼ିକ ଜରିଆରେ ଏବଂ ଚାଲୁ ରହିଥିବା ଅନ୍ୟ କେତେକ ପ୍ରକଳ୍ପ ଗୁଡ଼ିକରୁ ଆଂଶିକ ଜଳସେଚନ ସମ୍ଭବ ହେବା ଫଳରେ ବୃହତ୍ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ ଜରିଆରେ ଅତିରିକ୍ତ ୧,୧୧,୪୯୦ ହେକ୍ଟର ଖରିଫ ଜମିରେ ଜଳସେଚନ ଯୋଗାଇ ଦିଆଯାଇ ପାରିଥିଲା । ଏଥିମଧ୍ୟରେ କେନ୍ଦ୍ରୀୟ ଅନୁଦାନରେ କାର୍ଯ୍ୟକାରୀ ହେଉଥିବା ପୋଟେରୁ ବୃହତ୍ ଜଳସେଚନ ପ୍ରକଳ୍ପ ମଧ୍ୟ ଅନ୍ତର୍ଭୁକ୍ତ ।

କ୍ଷୁଦ୍ର ଜଳସେଚନ କ୍ଷେତ୍ରରେ ମଧ୍ୟ ସନ୍ତୋଷଜନକ ଅଗ୍ରଗତି କରାଯାଇଥିଲା । ପୂର୍ବଯୋଜନା କାଳରୁ ଗଡ଼ି ଆସିଥିବା ୩୩୧ ଟି ପ୍ରକଳ୍ପ ମଧ୍ୟରୁ ୩୨୨ଟି ପ୍ରକଳ୍ପର କାର୍ଯ୍ୟ ଏବଂ ନୂତନକରି ହାତକୁ ନିଆଯାଇଥିବା ୧୭ଟି ପ୍ରକଳ୍ପ ମଧ୍ୟରୁ ୮ ଟିର କାମ ଷଷ୍ଠ ଯୋଜନା କାଳମଧ୍ୟରେ ସଂପୂର୍ଣ୍ଣ କରାଯାଇ ୩୬,୧୭୦ ହେକ୍ଟର ଖରିଫ ଜମିପାଇଁ ଜଳସେଚନ ଯୋଗାଇ ଦିଆଯାଇଥିଲା । ଏହି ଯୋଜନା ସମୟର ଶେଷାର୍ଦ୍ଧରୁ କେନ୍ଦ୍ର ସରକାର ଗ୍ରାମାଞ୍ଚଳରେ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ ନିମନ୍ତେ ଆର. ଏଲ. ଇ. ଜି. ପି. କାର୍ଯ୍ୟକ୍ରମ ପ୍ରବର୍ତ୍ତନ କରିବା ଫଳରେ କୃଷିର ଅଧିକ ବିକାଶ ନିମନ୍ତେ ଜଳସେଚନର ଗୁରୁତ୍ୱ ଉପଲବ୍ଧି କରି ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ଏହାର ଯଥାର୍ଥ ବ୍ୟବହାର କରି କୃଷିର ଅଧିକ ବିକାଶ ନିମନ୍ତେ ବହୁବର୍ଷ ଧରି ସଂପୂର୍ଣ୍ଣ ଅକାମୀ ହୋଇ ପଡ଼ିଥିବା ଅଥବା ଅର୍ଦ୍ଧକାର୍ଯ୍ୟକ୍ଷମଥିବା ଅନେକଗୁଡ଼ିଏ କ୍ଷୁଦ୍ର ଜଳସେଚନ ପ୍ରକଳ୍ପର ପୁନରୁଦ୍ଧାର କାର୍ଯ୍ୟ ଶେଷ କରିବା ପାଇଁ ନିର୍ଦ୍ଦେଶ ଦେଲେ ।

ଉଠାଜଳସେଚନ କାର୍ଯ୍ୟକ୍ରମରେ ମଧ୍ୟ ଏହି ସମୟରେ ଉଲ୍ଲେଖନୀୟ ଅଗ୍ରଗତି କରାଯାଇ ପାରିଥିଲା । ଉଦାହରଣ ସ୍ୱରୂପ, ଷଷ୍ଠ ପଞ୍ଚବାର୍ଷିକ ଯୋଜନା ପ୍ରାରମ୍ଭରେ ରାଜ୍ୟରେ ମୋଟ ୩୯୯୦ ଟି ଉଠା ଜଳସେଚନ ପଏଣ୍ଟ କରିଆରେ ୮୭,୬୯୦ ହେକ୍ଟର ଖରିଫ ଜମିରେ ଜଳସେଚନ କରାଯାଉଥିବା ବେଳେ, କେବଳ ଷଷ୍ଠ ଯୋଜନା କାଳରେ ୪୨୫୩ ଟି ପଏଣ୍ଟ ବସାଯାଇ ଅତିରିକ୍ତ ୯୯,୬୯୦ ହେକ୍ଟର ଜମିରେ ଜଳସେଚନ ସାମର୍ଥ୍ୟ ସୃଷ୍ଟି କରାଯାଇଥିଲା ।

ଏହିପରି ଷଷ୍ଠ ଯୋଜନା କାଳରେ ଜଳସେଚନ ବିଭାଗ ଜରିଆରେ କାର୍ଯ୍ୟକାରୀ ହେଉଥିବା ସବୁ ପ୍ରକାରର ପ୍ରକଳ୍ପ ମାଧ୍ୟମରେ ମୋଟ ୨,୪୭,୯୯୦ ହେକ୍ଟର ଖରିଫ ଜମିପାଇଁ ଜଳସେଚନ ବ୍ୟବସ୍ଥା କରାଯାଇଥିଲା । ଏତଦ୍‌ବ୍ୟତୀତ ଗୋଷ୍ଠୀ ଉନ୍ନୟନ, କୃଷି ଓ ସମବାୟ ବିଭାଗ ଜରିଆରେ କାର୍ଯ୍ୟକାରୀ ହେଉଥିବା ଛୋଟ ଛୋଟ ପ୍ରକଳ୍ପ ଦ୍ୱାରା ଏହି ସମୟ ମଧ୍ୟରେ ୧,୮୪,୦୭୦ ହେକ୍ଟର ଖରିଫ ଜମିରେ ମଧ୍ୟ ଜଳସେଚନ ସାମର୍ଥ୍ୟ ସୃଷ୍ଟି କରାଯାଇଥିଲା । ଫଳରେ ଷଷ୍ଠ ଯୋଜନା କାଳରେ ସର୍ବମୋଟ ୪,୩୨,୦୬୦ ହେକ୍ଟର ଖରିଫ ଜମିରେ ଅତିରିକ୍ତ ଜଳସେଚନ ସାମର୍ଥ୍ୟ ସୃଷ୍ଟି କରାଯାଇଥିଲା । ଅର୍ଥାତ ଏହି ପାଞ୍ଚ ବର୍ଷ ମଧ୍ୟରେ କେବଳ ଜଳସେଚନ କ୍ଷେତ୍ରରେ ଶତକଡ଼ା ପ୍ରାୟ ୩୩ ଭାଗ ବୃଦ୍ଧି ଘଟିଥିଲା । ଜଳସେଚନ କ୍ଷେତ୍ରରେ ଏହା ଏକ ଉଲ୍ଲେଖଯୋଗ୍ୟ ଅଭିବୃଦ୍ଧି ଅଟେ । ତେଣୁ ଷଷ୍ଠ ଯୋଜନାର ଶେଷସୁଦ୍ଧା ମୋଟ ୧୭.୨୨ ଲକ୍ଷ ହେକ୍ଟର ଖରିଫ ଜମିରେ ଜଳସେଚନ ପାଇଁ ସୁବିଧା କରାଯାଇଥିଲା, ଯାହାକି ରାଜ୍ୟର ସମୁଦାୟ ଚାଷୋପଯୋଗୀ ଜମିର ଶତକଡ଼ା ୨୬.୨୫ ଭାଗ ଏବଂ ଜଳସେଚନ ଯୋଗ୍ୟ ଜମିର ଶତକଡ଼ା ପ୍ରାୟ ୨୯.୧୯ ଭାଗ ଅଟେ ।

ସପ୍ତମ ଯୋଜନା କାଳରେ ଜଳସେଚନର ରଥଚକ୍ରକୁ ଅଧିକ ଗତିଶୀଳ କରିବା ପାଇଁ ପଦକ୍ଷେପ ନିଆଯାଇଛି । ସରକାରଙ୍କର ଉଦ୍ଦେଶ୍ୟ ହେଉଛି ଜଳସେଚନ ଅଭାବ ଥିବା ଅଞ୍ଚଳରେ ବିଶେଷତଃ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଏବଂ ଅର୍ଥନୈତିକ ଦୃଷ୍ଟିରୁ ପଛୁଆ ଅଞ୍ଚଳରେ କିପରି ଅଗ୍ରାଧିକାର ଭିତ୍ତିରେ ଜଳସେଚନର ପ୍ରସାର ହୋଇପାରିବ ଏବଂ କିପରି କେତେ କମ ସମୟ ମଧ୍ୟରେ ସର୍ବଭାରତୀୟ ସ୍ତରରେ ଓଡ଼ିଶା ଅନ୍ୟ ରାଜ୍ୟମାନଙ୍କର ସମକକ୍ଷ ହୋଇପାରିବ । ସେଥିପାଇଁ ବୃହତ୍ ଓ ମଧ୍ୟମ ଜଳସେଚନ ପ୍ରକଳ୍ପଗୁଡ଼ିକ ଜରିଆରେ ୧,୫୧,୯୭୦ ହେକ୍ଟର, କ୍ଷୁଦ୍ର ଜଳସେଚନ ପ୍ରକଳ୍ପଗୁଡ଼ିକ ଜରିଆରେ ୧୪,୧୧୭ ହେକ୍ଟର ଏବଂ ଉଠା ଜଳସେଚନ ପଏଣ୍ଟଗୁଡ଼ିକ ଜରୀଆରେ ୧,୨୦,୦୦୦ ହେକ୍ଟର ଖରିଫ ଜମିରେ ଅତିରିକ୍ତ ଜଳସେଚନ ସୁବିଧା ଯୋଗାଇ ଦେବାପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଏହା ବ୍ୟତୀତ ଗୋଷ୍ଠୀ ଉନ୍ନୟନ ବିଭାଗ ଏବଂ କୃଷି ଓ ସମବାୟ ବିଭାଗ ସେମାନଙ୍କର ନିଜର କାର୍ଯ୍ୟକ୍ରମ ପ୍ରସ୍ତୁତ କରିଛନ୍ତି । ଜଳସେଚନ ବିଭାଗର ସପ୍ତମ ଯୋଜନା ପାଇଁ ଧାର୍ଯ୍ୟ କରାଯାଇଥିବା ଉପରୋକ୍ତ ଲକ୍ଷ୍ୟ ମଧ୍ୟରୁ ଗତ ତିନିବର୍ଷ ମଧ୍ୟରେ ଯଥାକ୍ରମେ ୨୭,୯୪୦ ହେକ୍ଟର, ୧,୬୯୫ ହେକ୍ଟର ଏବଂ ୪୦,୧୦୭ ହେକ୍ଟର ଜଳସେଚନ ସାମର୍ଥ୍ୟ ସୃଷ୍ଟି କରାଯାଇ ପାରିଛି । ଏହି ସମୟ ମଧ୍ୟରେ ବିଶ୍ୱବ୍ୟାଙ୍କ ସହାୟତାରେ କାର୍ଯ୍ୟକାରୀ ହେଉଥିବା ଆଠଟି ମଧ୍ୟମ ଜଳସେଚନ ପ୍ରକଳ୍ପ ଯଥା – ପିଲଶାଲକୀ, ଦହ, ରେମାଳ, ସରଫଗଡ଼, ତଳସରା, ଝାରବନ୍ଧ, ଯୋହୀରା ଓ ହୁମଁରିଆର କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଛି । ବଳିତ ଆର୍ଥିକ ବର୍ଷ ମହାନଦୀ-ଚିତ୍ରୁପା ଆନିକଟର କାର୍ଯ୍ୟ ସହିତ ଅନ୍ୟ କେତେକ ପ୍ରକଳ୍ପର କାର୍ଯ୍ୟ ମଧ୍ୟ ସମ୍ପୂର୍ଣ୍ଣ ହେବ । ସମ୍ପୂର୍ଣ୍ଣ ଅକ୍ଷମ ଅଥବା ଅର୍ଦ୍ଧକ୍ଷମ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ଗୁଡ଼ିକର ପୁନରୁଦ୍ଧାର ଏବଂ ଯେଉଁସବୁ ଉଠା ଜଳସେଚନ ପଏଣ୍ଟଗୁଡ଼ିକର ଜଳ ପ୍ରଣାଳୀ କାର୍ଯ୍ୟ ବାକିଅଛି ସେହିସବୁ କାର୍ଯ୍ୟ ସମ୍ପୂର୍ଣ୍ଣ କରିବାପାଇଁ ମଧ୍ୟ ସପ୍ତମ ଯୋଜନା କାଳରେ ଗୁରୁତ୍ୱ ଦିଆଯାଇଛି ।

ରେଙ୍ଗାଲି, ଅପରକୋଲାବ୍ ଏବଂ ଅପର ଇନ୍ଦ୍ରାବତୀ ନଦୀବନ୍ଧ ଯୋଜନାଗୁଡ଼ିକ ବହୁମୁଖୀ ଯୋଜନା ଅଟେ । ରାଜ୍ୟରେ ଶିଳ୍ପ ବିକାଶ ପ୍ରତି ଦୃଷ୍ଟିରଖି ବିଦ୍ୟୁତ ଚାହିଦା ପୂରଣ କରିବା ଉଦ୍ଦେଶ୍ୟରେ ଏହିସବୁ ବହୁମୁଖୀ ଯୋଜନାର ବନ୍ଧ ନିର୍ମାଣ କାର୍ଯ୍ୟ ଅଗ୍ରାଧିକାର ଭିତ୍ତିରେ କରାଯାଉଛି । ଇତ୍ୟବସରରେ ରେଙ୍ଗାଲି ଓ ଅପରକୋଲାବ୍ ପ୍ରକଳ୍ପର ବନ୍ଧ ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହୋଇଛି ଏବଂ ଅପର ଇନ୍ଦ୍ରାବତୀ ପ୍ରକଳ୍ପର ବନ୍ଧ ନିର୍ମାଣ କାର୍ଯ୍ୟ ତ୍ୱରାନ୍ୱିତ କରାଯାଉଛି । ସୀମିତ ସମ୍ବଳ ଦୃଷ୍ଟିରୁ ରେଙ୍ଗାଲି ଓ ଅପରକୋଲାବ୍‌ର ଆବଦ୍ଧ ଜଳକୁ ଏ ପର୍ଯ୍ୟନ୍ତ ଜଳସେଚନ କାର୍ଯ୍ୟରେ ଲଗାଯାଇପାରିନାହିଁ । ସୁବର୍ଣ୍ଣରେଖା ଜଳସେଚନ ପ୍ରକଳ୍ପର ନିର୍ମାଣକାର୍ଯ୍ୟ ବିହାର ରାଜ୍ୟ ମଧ୍ୟରେ ତ୍ୱରାନ୍ୱିତ ହେବା ଫଳରେ ଅଷ୍ଟମ ଯୋଜନାର ପ୍ରଥମ ବର୍ଷରେ ଓଡ଼ିଶାରେ ଜଳସେଚନ ପାଇଁ ଜଳ ମିଳିପାରିବ । ଇତି ମଧ୍ୟରେ ଓଡ଼ିଶା ଭିତରେ କେନାଲ ଖନନ କାର୍ଯ୍ୟ କରିବା ଅତ୍ୟନ୍ତ ଆବଶ୍ୟକ । ରାଜ୍ୟର ଦ୍ରୁତ ଜଳସେଚନ ତଥା କୃଷି ବିକାଶ ପାଇଁ ସ୍ୱତନ୍ତ୍ର ବ୍ୟୟବରାଦ କରାଯାଇ, ଏହି ଗୁରିରୋଟି ବୃହତ୍ ଜଳସେଚନ ପ୍ରକଳ୍ପର କେନାଲ ଖନନ କାର୍ଯ୍ୟ ୧୯୮୭-୮୮ ମସିହାରୁ ହାତକୁ ନିଆଯାଇଛି । ମହାନଦୀ ତ୍ରିକୋଣ ଭୂମିର ଜନାକୀର୍ଣ୍ଣ ଦୋଆବ ଅଞ୍ଚଳରେ ବନ୍ୟା ତଥା ମରୁଡ଼ି ଉଭୟର ପ୍ରକୋପ ଲୋକମାନେ ସହ୍ୟ କରିଥାଆନ୍ତି । ଏହାର ପ୍ରତିକାର କରିବା ଉଦ୍ଦେଶ୍ୟରେ ପ୍ରଥମ ପଦକ୍ଷେପ ସ୍ୱରୂପ ଚିତ୍ରୁପା-ଡେଙ୍ଗୁଚି ଜଳସେଚନ ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ମଧ୍ୟ ଆରମ୍ଭ କରାଯାଇଛି ।

ଓଡ଼ିଶାରେ ଲିଫ୍ଟ ଜଳସେଚନ ପ୍ରକଳ୍ପ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କର ଏକ ନୂତନ ପରିକଳ୍ପନା । ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରେ ଜୁଆରିଆ ମୁହାଣ ଦେଇ ଲୁଣା ଜଳ ପ୍ରକୋପରୁ ଚାଷ ଜମିକୁ ରକ୍ଷାକରି ଜଳସେଚନ ବ୍ୟବସ୍ଥା କରିବା ଉଦ୍ଦେଶ୍ୟରେ ଏହି ପରିକଳ୍ପନା ୧୯୮୪-୮୫ ମସିହାରେ ହାତକୁ ନିଆଯାଇଛି । ରାଜ୍ୟରେ ବର୍ତ୍ତମାନ ଦଶଟି ଲିଫ୍ଟ ଜଳସେଚନ ପ୍ରକଳ୍ପ କାର୍ଯ୍ୟକାରୀ ହେଉଛି ଏବଂ ଏହା ଫଳରେ ୬୨୭୦ ହେକ୍ଟର ଖରିଫ ଜମି ଜଳସେଚନ ପାଇ ପାରିବ ।

ସପ୍ତମ ଯୋଜନାର ଶେଷ ଦୁଇବର୍ଷ ମଧ୍ୟରେ ଦେଶରେ କୃଷି ଉତ୍ପାଦନ ବୃଦ୍ଧି କରିବା ପାଇଁ ପ୍ରଧାନମନ୍ତ୍ରୀ ଆହ୍ୱାନ କରିଛନ୍ତି । ସେଥିପାଇଁ ଏକ ସ୍ୱତନ୍ତ୍ର କୃଷି କାର୍ଯ୍ୟକ୍ରମ ରାଜ୍ୟର ପାଞ୍ଚଟି ଜିଲ୍ଲାରେ କାର୍ଯ୍ୟକାରୀ ହେଉଛି । କୃଷିପାଇଁ ଜଳସେଚନ ଅତ୍ୟାବଶ୍ୟକ ହୋଇଥିବାରୁ ପ୍ରଧାନମନ୍ତ୍ରୀଙ୍କର ଏହି ଆହ୍ୱାନକୁ ଫଳବତୀ କରିବା ଉଦ୍ଦେଶ୍ୟରେ ଆମର ମୁଖ୍ୟମନ୍ତ୍ରୀ ରାଜ୍ୟପାଇଁ ଏହି ଦୁଇବର୍ଷକୁ ଜଳସେଚନ ବର୍ଷରୂପେ ପାଳନ କରିବାପାଇଁ ଘୋଷଣା କରିଛନ୍ତି । ଆମର ଲକ୍ଷ୍ୟ ହେଉଛି, ସପ୍ତମ ଯୋଜନା ପାଇଁ ଯେଉଁ ଅତିରିକ୍ତ ଜଳସେଚନ ସାମର୍ଥ୍ୟ ସୃ କରିବାପାଇଁ କାର୍ଯ୍ୟକ୍ରମ ରହିଛି, ତାହାକୁ ପୂରଣ କରିବା ଏବଂ ଆସନ୍ତା ଦୁଇବର୍ଷ ମଧ୍ୟରେ ଅଧିକ ଜମିରେ ଜଳସେଚନର ସୁବିଧା ଯୋଗାଇ ଦେବା । ଏହି ଉଦ୍ଦେଶ୍ୟରେ ମହାନଦୀ ତ୍ରିକୋଣଭୂମି ଦ୍ୱିତୀୟ ପର୍ଯ୍ୟାୟ ପ୍ରକଳ୍ପର ଅସମ୍ପୂର୍ଣ୍ଣ କାର୍ଯ୍ୟଗୁଡ଼ିକ ସମ୍ପୂର୍ଣ୍ଣ କରିବାପାଇଁ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଫଳରେ ପ୍ରାୟ ୨୯,୦୦୦ ହେକ୍ଟର ଖରିଫ ଜମିରେ ଅତିରିକ୍ତ ଜଳସେଚନ ସମ୍ଭବପର ହେବ । ଏହା ସାଙ୍ଗକୁ ତ୍ରିକୋଣଭୂମି ଅଞ୍ଚଳରେ ଜଳ ନିଷ୍କାସନ ସମସ୍ୟା ଦୂର କରିବା ପାଇଁ ପଦକ୍ଷେପ ନିଆଯାଇଛି । ଏହାଦ୍ୱାରା ପ୍ରଥମ ପର୍ଯ୍ୟାୟରେ ପ୍ରାୟ ୨୫,୦୦୦ ହେକ୍ଟର ଜଳସେଚିତ ଜମିରେ ଜଳ ନିଷ୍କାସନ ସମସ୍ୟା ଦୂର ହୋଇପାରିବ । କମ ସମୟରେ ଏବଂ କମ ଖର୍ଚ୍ଚରେ ଅତ୍ୟନ୍ତ ଫଳବତୀ ହୋଇଥିବା ଲିଫ୍ଟ ଜଳସେଚନ ପ୍ରକଳ୍ପର ପ୍ରସାର ପାଇଁ ବାଲେଶ୍ୱର ଓ କଟକ ଜିଲ୍ଲାରେ ଅଧିକ ପ୍ରକଳ୍ପ କାର୍ଯ୍ୟକାରୀ କରାଯିବ । କ୍ଷୁଦ୍ର ଜଳସେଚନ କ୍ଷେତ୍ରରେ ମଧ୍ୟ ଅନୁରୂପ ବ୍ୟବସ୍ଥା ଗ୍ରହଣ କରାଯାଉଛି । ଆମ ରାଜ୍ୟରେ ପ୍ରଚୁର ଜଳ ସମ୍ପଦ ରହିଛି ଏବଂ ଏହାର ସଦୁପଯୋଗ କରିବା ପାଇଁ ସରକାର ବଦ୍ଧପରିକର ।

# ଓଡ଼ିଶାରେ କୃଷି ପ୍ରଗତି

ଶ୍ରୀ ରସବିହାରୀ ବେହେରା

ଓଡ଼ିଶା ଏକ କୃଷିପ୍ରଧାନ ରାଜ୍ୟ । କୃଷିର ପ୍ରଗତି ପାଇଁ ରାଜ୍ୟରେ ପ୍ରାକୃତିକ ସମ୍ପଦର ଅଭାବ ନାହିଁ । ଓଡ଼ିଶାର ଶତକଡ଼ା ୭୦ ଭାଗ ଅଧିବାସୀ କୃଷିକୁ ଜୀବିକାର୍ଜନରେ ମୁଖ୍ୟ ସମ୍ବଳଭାବେ ଗ୍ରହଣ କରିଛନ୍ତି । ରାଜ୍ୟର ମାଟି, ପାଣି ଓ ଜଳବାୟୁ, ନାନାବିଧ ଫସଲ ଚାଷ ପାଇଁ ସମ୍ପୂର୍ଣ୍ଣ ଅନୁକୂଳ ।

ଓଡ଼ିଶାର ସବୁଜ ଇତିହାସରେ ୧୯୬୦-୬୧ ରୁ ୧୯୮୦-୮୧ ମସିହା ପର୍ଯ୍ୟନ୍ତ ଦୀର୍ଘ ୨୦ ବର୍ଷକୁ କୃଷି ବିପ୍ଳବର ଏକ "ସ୍ଥାଣୁ ଅଧ୍ୟାୟ" କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ଦୀର୍ଘ ସମୟ ମଧ୍ୟରେ ଓଡ଼ିଶାର ଲୋକ ସଂଖ୍ୟା ଦେଢ଼ଗୁଣ ବଢ଼ିଥିଲେ ମଧ୍ୟ କୃଷି ଉତ୍ପାଦନ ପ୍ରାୟତଃ ସ୍ଥାଣୁ ଅବସ୍ଥାରେ ରହିଥିଲା ।

୧୯୮୦-୮୧ ମସିହାରୁ ବର୍ତ୍ତମାନର ଲୋକପ୍ରିୟ ସରକାର ଶାସନଭାର ଗ୍ରହଣକରି ରାଜ୍ୟର ଆର୍ଥିକ ଚିତ୍ର ବଦଳାଇବା ପାଇଁ କ୍ରମାଗତ ଉଦ୍ୟମ କରି ଆସୁଛନ୍ତି । ରାଜ୍ୟର ଶିଳ୍ପୋନ୍ନତି ପାଇଁ ନାନାପ୍ରକାର ସଫଳ ପଦକ୍ଷେପ ନିଆଯାଇଛି । ମାତ୍ର କୃଷି ଓ କୃଷକର ଉନ୍ନତି ବିନା ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ସମ୍ଭବ ନୁହେଁ । ଏଣୁ କୃଷିକୁ ଅଗ୍ରାଧିକାର ଦିଆଯାଇ ବର୍ତ୍ତମାନର ଯୋଜନା ପ୍ରଣୟନ କରାଯାଉଛି ।

ଗତ ୮ବର୍ଷ ମଧ୍ୟରେ ସମନ୍ୱିତ କୃଷି ସମ୍ପ୍ରସାରଣ କାର୍ଯ୍ୟକ୍ରମ ମାଧ୍ୟମରେ ବିଜ୍ଞାନ ସମ୍ମତ ନୂତନ ଜ୍ଞାନ କୌଶଳ ସିଧାସଳଖ ଚାଷୀମାନଙ୍କ ନିକଟରେ ପହଞ୍ଚାଇ ଦେବା ସଙ୍ଗେସଙ୍ଗେ, କୃଷି ପାଇଁ ଦରକାର ହେଉଥିବା ଜଳ, ଉନ୍ନତ ବିହନ, ସାର, କୃଷିଋଣ ଏବଂ ସର୍ବୋପରି ଉତ୍ପାଦିତ ଦ୍ରବ୍ୟର ଉପଯୁକ୍ତ ବିକ୍ରିବଟା ବ୍ୟବସ୍ଥାର ସୁବନ୍ଦୋବସ୍ତ କରାଯିବା ଦ୍ୱାରା, କୃଷି ଉତ୍ପାଦନ କ୍ଷେତ୍ରରେ ଏକ ନୂତନ ବିପ୍ଳବର ସୂତ୍ରପାତ ହୋଇଛି । ରାଜ୍ୟର ଖାଦ୍ୟ ଉତ୍ପାଦନ ଏବେ ୫୨ ଲକ୍ଷ ଟନ୍‌କୁ ଟପି, ଏକ ନୂତନ ରେକର୍ଡ଼ ସୃଷ୍ଟି କରିଛି । ୧୯୮୦—୮୫ ମଧ୍ୟରେ ହେକ୍ଟର ପ୍ରତି ଖାଦ୍ୟ ଅମଳ ବୃଦ୍ଧିପାଇ ୧୨.୬୩ କୁଇଣ୍ଟାଲରେ ପହଞ୍ଚିଛି । ପାଞ୍ଚବର୍ଷ ମଧ୍ୟରେ ଏହି ବୃଦ୍ଧିର ପରିମାଣ ଶତକଡ଼ା ୨୦ଭାଗ ହୋଇ ପାରିଛି । ଚଳିତବର୍ଷ ଶେଷସୁଦ୍ଧା ରାଜ୍ୟର ଖାଦ୍ୟ ଉତ୍ପାଦନ ହେକ୍ଟର ପ୍ରତି ୧୨.୮୦ କୁଇଣ୍ଟାଲରେ ପହଞ୍ଚାଇବା ପାଇଁ ଲକ୍ଷ୍ୟ ରଖାଯାଇଛି ।

ଉନ୍ନତ ବିହନ ଅଧିକ ଅମଳର ଚାବିକାଠି । ୧୯୮୦-୮୧ ମସିହାରେ ରାଜ୍ୟର ଶତକଡ଼ା ୨୬ ଭାଗ ଜମିରେ ଅଧିକ ଅମଳକ୍ଷମ ଧାନଚାଷ କରାଯାଉଥିଲା । ମାତ୍ର ୧୯୮୬-୮୭ ମସିହା ଶେଷସୁଦ୍ଧା ଏହା ଶତକଡ଼ା ୪୦ ଭାଗ ଜମିକୁ ସମ୍ପ୍ରସାରିତ ହୋଇପାରିଛି । ଏହି ଧାନ କିସମ ମଧ୍ୟରୁ ୧୦୦୯, ଯଯାତି, ଆଇ. ଆର. ୩୬, ଜଗନ୍ନାଥ, ତଥା ଏବଂ ପ୍ରତାପ ପ୍ରଭୃତି ଆମ ଚାଷୀଙ୍କ ନିକଟରେ ଖୁବ୍ ଆଦୃତ ହୋଇଛି ସେହିଭଳି ଉଦୟ ଏବଂ ଶକ୍ତି ରୋଗ-ପୋକ ସହଣୀ ଶକ୍ତିଯୋଗୁ ଖୁବ ଲୋକପ୍ରିୟ ହେଉଛି ।

ଗତବର୍ଷ ମରୁଡ଼ିଯୋଗୁ ୨୪ ଲକ୍ଷ ହେକ୍ଟର ଜମିରେ ଫସଲ ନଷ୍ଟ ହୋଇଛି । ଏଥିମଧ୍ୟରୁ ଅଧିକାଂଶ ଜମିରେ ଧାନଚାଷ କରାଯାଉଥିଲା । ଏଣୁ ଗତବର୍ଷ ମୋଟ ୧୩ ଲକ୍ଷ ଟନ ଧାନ ଉତ୍ପାଦନ କମିଯାଇଛି । ଜଳସେଚନ ଅବସ୍ଥାର ଉନ୍ନତି ଏବଂ ଉପଯୁକ୍ତ ଫସଲଚାଷ ଯୋଜନା ଦ୍ୱାରା ସରକାର ଏ ପ୍ରକାର କ୍ଷତିର ଭରଣା କରିବାକୁ ସ୍ଥିର କରିଛନ୍ତି ।

ଧାନଚାଷ ପାଇଁ ଅଧିକ ପାଣି ଏବଂ ଉର୍ବରା ଜମି ଦରକାର । ଅନ୍ୟପକ୍ଷରେ ମୁଗ, ବିରି, ହରଡ଼, ଚିନାବାଦାମ, ରାଶି ସୋୟାବିନ, କପା, ମାଣ୍ଡିଆ, ମକା ଇତ୍ୟାଦି ଅପେକ୍ଷାକୃତ କମ୍‌ପାଣି ଆବଶ୍ୟକ କରିବାର ଦେଖାଯାଇଛି । ଡିପ ଜମିରେ ଧାନ ଅପେକ୍ଷା ଏ ସବୁ ଫସଲରୁ ଅଧିକ ଅମଳ ମିଳିଥାଏ । ଏଣୁ ଉଚ୍ଚିଥିବା ଡିପ ବା ବିଆଳି (ମୋଟଜମି), ମଟିଆଳି ଓ ଖାର ଜମିରେ ଧାନ ଚାଷକୁ ସୀମିତ ରଖି ଡ଼ିପ ଜମିରେ ଉପରୋକ୍ତ ଅଣ-ଧାନ ଫସଲ ଚାଷକୁ ସମ୍ପ୍ରସାରିତ କରାଯାଉଛି । ଅଧିକନ୍ତୁ, ବିଆଳି ବା ମାଳ ଜମିରେ ଧାନ ଫସଲ ସହିତ ହରଡ଼କୁ ମିଶ୍ରିତ ଚାଷ କରିବା ପାଇଁ ଗୁରୁତ୍ୱ ଦିଆଯାଉଛି । ଏହାଦ୍ୱାରା ବର୍ଷାଭାବ ଯୋଗୁଁ ଧାନ ଅମଳ କିଛି କମିଗଲେ, ହରଡ଼ ଅମଳ ଦ୍ୱାରା ଏହି କ୍ଷତିକୁ କେତେକାଂଶରେ ଭରଣା କରାଯାଇ ପାରିବ । ଅନ୍ୟ କଥାରେ ଡ଼ିପ ଜମିର ଧାନ ଫସଲ ପାଇଁ ଏହା ମରୁଡ଼ି ବିପକ୍ଷରେ ବୀମା ବୋଲି କୁହାଯାଇ ପାରେ । ଫଳତଃ, ୧୯୭୦-୭୧ ମସିହାରେ ବର୍ଷାଦିନେ ହାରାହାରି ୪୩ ଲକ୍ଷ ହେକ୍ଟର ଜମିରେ ଧାନଚାଷ କରାଯାଉଥିବା ବେଳେ ୧୯୮୫-୮୬ ମସିହା ସୁଦ୍ଧା ଏହା ହାରାହାରି ୪୨ ଲକ୍ଷ ହେକ୍ଟରକୁ କମି ଯାଇଛି । ଅଥଚ ୧୯୭୦-୭୧ ମସିହାରେ ଖରିଫ ଖାଦ୍ୟ ଉତ୍ପାଦନ ମୋଟ ୩୯

ଲକ୍ଷ ଟନ (ହେକ୍ଟର ପ୍ରତି ୯.୦୨ କୁଇଣ୍ଟାଲ) ଥିଲାବେଳେ, ୧୯୮୫-୮୬ ମସିହାରେ ଏହା ମୋଟ ୪୯ ଲକ୍ଷ ଟନ (ହେକ୍ଟର ପ୍ରତି ୧୧.୬୩ କୁଇଣ୍ଟାଲରେ ପହଞ୍ଚିଛି । କୃଷକର ଏକାନ୍ତ ଉଦ୍ୟମ ଓ ବୈଜ୍ଞାନିକ କୃଷି ପଦ୍ଧତିର ଉପଯୋଗ ଦ୍ୱାରା ଏହା ସମ୍ଭବ ହୋଇ ପାରିଛି ।

ଅନ୍ୟ ପକ୍ଷରେ, ଦିନେ ଯେଉଁ ଏକଲକ୍ଷ ହେକ୍ଟର ଢିପ ଜମିରେ ଛୋଟ ଧାନ ଫସଲ ମରୁଡ଼ି ଯୋଗୁଁ କ୍ରମାଗତ ନଷ୍ଟ ହୋଇ ଯାଉଥିଲା, ସେସବୁ ଜମିରେ ଏବେ ଡାଲି, ତୈଳବୀଜ, କପା, ମକା, ମାଣ୍ଡିଆ, ଇତ୍ୟାଦି ମରୁଡ଼ି ସହଣୀ ଫସଲ ଚାଷକରି, ଚାଷୀ ପରିବାର ପାଣି ପାଗରେ ମଧ୍ୟ ନିଶ୍ଚିତ ଅମଳ ପାଇପାରୁଛି ।

ହେକ୍ଟରେ ପ୍ରତି ଧାନ ଉତ୍ପାଦନ ବଢ଼ାଇବା ପାଇଁ 'ସ୍ୱତନ୍ତ୍ର ଧାନ ଉତ୍ପାଦନ ଯୋଜନା' ଅନ୍ୟ ଏକ ସଫଳ ପଦକ୍ଷେପ । କେନ୍ଦ୍ର ସରକାରଙ୍କ ସହାୟତାରେ ୧୯୮୫-୮୬ ମସିହାରୁ ଏହା ଆମ ରାଜ୍ୟରେ କାର୍ଯ୍ୟକାରୀ ହେଉଛି । ପ୍ରାରମ୍ଭିକ ଅବସ୍ଥାରେ କେବଳ ୭ଟି ଜିଲ୍ଲାରେ ଏହି କାର୍ଯ୍ୟକ୍ରମ ଶୁରୁ କରାଯାଇଥିଲେ ମଧ୍ୟ କାର୍ଯ୍ୟକ୍ରମଟିର ସଫଳତା ଯୋଗୁଁ ପରବର୍ତ୍ତୀ ଅବସ୍ଥାରେ ରାଜ୍ୟରେ ୬୩ଟି ବ୍ଲକକୁ ସମ୍ପ୍ରସାରିତ କରାଯାଇଥିଲା । ଚଳିତବର୍ଷଠାରୁ ସ୍ୱତନ୍ତ୍ର ଧାନ ଉତ୍ପାଦନ ଯୋଜନା ରାଜ୍ୟର ୧୬୯ଟି ବ୍ଲକରେ କାର୍ଯ୍ୟକାରୀ ହେଉଛି । ଏହାଦ୍ୱାରା ଧାନର ମୋଟ ଉତ୍ପାଦନ ସାଙ୍ଗକୁ ଉତ୍ପାଦିକା ଶକ୍ତି ମଧ୍ୟ ବୃଦ୍ଧି କରାଯାଇ ପାରିବ ।

ଧାନଭଳି ଗହମ ଫସଲ ମଧ୍ୟ ଦିନକୁ ଦିନ ବେଶ୍ ଲୋକପ୍ରିୟ ହୋଇପାରିଛି । ଗହମ ରାଜ୍ୟର ଚାଷୀଙ୍କ ପାଖରେ ପ୍ରାୟତଃ ନୂଆ । ତଥାପି ୧୯୬୯-୮୦ ମସିହାରେ ଏହି ଫସଲ କେବଳ ୫୧ ହଜାର ହେକ୍ଟରରେ ଚାଷ କରାଯାଇଥିଲେ ମଧ୍ୟ ୧୯୮୫-୮୬ ବେଳକୁ ୫୬ ହଜାର ହେକ୍ଟରକୁ ବୃଦ୍ଧି ପାଇଛି । ଏହି ସମୟ ମଧ୍ୟରେ ଗହମ ଉତ୍ପାଦନ ହେକ୍ଟର ପ୍ରତି ୧୬୨୦ କେଜିରୁ ବୃଦ୍ଧିପାଇ ୧୭୬୯ କେଜିରେ ପହଞ୍ଚି ପାରିଛି । ୧୯୮୫-୮୬ ମସିହା ସୁଦ୍ଧା ମୋଟ ଗହମ ଉତ୍ପାଦନ ୯୯ ହଜାର ଟନ୍‌ରେ ପହଞ୍ଚିଥିଲେ ମଧ୍ୟ ୧୯୮୯-୯୦ ମସିହା ଶେଷ ସୁଦ୍ଧା ଏହାକୁ ଦୁଇ ଲକ୍ଷ ଟନ୍‌ରେ ପହଞ୍ଚାଇବା ଆମର ଲକ୍ଷ୍ୟ ।

ଡାଲି ଜାତୀୟ ଫସଲ ରାଜ୍ୟର ଦ୍ୱିତୀୟ ପ୍ରଧାନ ଫସଲ । ୧୯୮୦-୮୧ ସୁଦ୍ଧା ମୋଟ୍ ୧୭.୨୬ ଲକ୍ଷ ହେକ୍ଟର ଜମିରେ ଡାଲି ଫସଲ ଚାଷ କରାଯାଇ ୮.୮୬ ଲକ୍ଷ ଟନ୍ ଡାଲି ଉତ୍ପାଦନ ହୋଇଥିଲା । ଆମ ଆହାରରେ ପୁଷ୍ଟିସାର ଯୋଗାଇବା ସଙ୍ଗେସଙ୍ଗେ ଡାଲି ଫସଲ ମରୁଡ଼ି ସହିପାରୁଥିବାରୁ ବର୍ତ୍ତମାନ ସରକାର ଏହି ଫସଲ ଚାଷକୁ ବ୍ୟାପକ କରିବା ପାଇଁ ନାନା ପ୍ରକାର ପଦକ୍ଷେପ ନେଇଛନ୍ତି । ବର୍ଷର ସବୁ ଋତୁରେ ଡାଲି ଫସଲ ଚାଷପାଇଁ ବିଭିନ୍ନ ପ୍ରକାର ଉନ୍ନତ ବିହନ ଯୋଗାଇ ଦିଆଗଲାଣି । ଫଳରେ ବର୍ଷା, ଶରତ, ଶୀତ ଓ ଖରାଦିନେ ଡାଲି ଫସଲ ଚାଷହୋଇ ପାରୁଛି । ୧୯୮୫-୮୬ ମସିହା ସୁଦ୍ଧା ରାଜ୍ୟର ୧୯.୩୩ ଲକ୍ଷ ହେକ୍ଟର ଜମିରେ ଡାଲି ଜାତୀୟ ଫସଲ ଚାଷ କରାଯାଇ ୧୧ ଲକ୍ଷ ଟନ୍ ଡାଲି ଉତ୍ପାଦିତ ହୋଇପାରିଛି । ସେହିଭଳି ୧୯୮୦-୮୧ ମସିହାରେ ହେକ୍ଟର ପ୍ରତି ଉତ୍ପାଦନ ୫୧୩ କେଜି ଥିଲାବେଳେ ୧୯୮୫-୮୬ ବେଳକୁ ଏହା ବୃଦ୍ଧିପାଇ ୫୬୯ କେଜିରେ ପହଞ୍ଚିଲାଣି ।

ରାଜ୍ୟରେ ଡାଲି ଜାତୀୟ ଫସଲର ଉତ୍ପାଦନ ବଢ଼ାଇବା ପାଇଁ ବାଲେଶ୍ୱର, ବଲାଙ୍ଗିର, କଟକ, ଢେଙ୍କାନାଳ, ଗଞ୍ଜାମ, ପୁରୀ ଓ କୋରାପୁଟ୍ ଆଦି ୭ଟି ଜିଲ୍ଲାରେ ଜାତୀୟ ଡାଲି ଫସଲ ଉନ୍ନୟନ ଯୋଜନା (N.P.D.P.) କାର୍ଯ୍ୟକାରୀ ହେଉଛି । ଉନ୍ନତ ଚାଷ କୌଶଳ ଶିକ୍ଷା ଦେବା ସାଙ୍ଗକୁ ବିଭିନ୍ନ କୃଷି ସାମଗ୍ରୀମାନ ଠିକ୍ ସମୟ ଓ ଆବଶ୍ୟକତାନୁସାରେ ଯୋଗାଇ ଦେଇ ଡାଲି ଫସଲର ଉତ୍ପାଦନ ତଥା ଉତ୍ପାଦିକା ଶକ୍ତି ବୃଦ୍ଧି କରିବା ଏହି ଯୋଜନାର ଲକ୍ଷ୍ୟ । କେନ୍ଦ୍ର ସରକାରଙ୍କ ସହାୟତାରେ ଚାଷୀମାନଙ୍କୁ ଏଥିପାଇଁ କେତେକ ସ୍ୱତନ୍ତ୍ର ସୁବିଧା ମଧ୍ୟ ଦିଆଯାଉଛି ।

ରାଜ୍ୟର ଖାଦ୍ୟଶସ୍ୟ ଉତ୍ପାଦନ ପ୍ରତି ଦୃଷ୍ଟିଦେଲେ ଲକ୍ଷ୍ୟ କରାଯାଇ ପାରେ ଯେ ୧୯୮୦-୮୧ ମସିହାରେ ମୋଟ ଖାଦ୍ୟଶସ୍ୟ ଉତ୍ପାଦନ ୫୯.୬୮ ଲକ୍ଷ ଟନ୍ ଥିଲା ବେଳେ ୧୯୮୫-୮୬ ବେଳକୁ ତାହା ବୃଦ୍ଧିପାଇ ୬୯.୬୮ ଲକ୍ଷ ଟନ୍‌ରେ ପହଞ୍ଚି ପାରିଛି । ସପ୍ତମ ଯୋଜନା ଶେଷ ବେଳକୁ ରାଜ୍ୟର ଖାଦ୍ୟଶସ୍ୟ ଉତ୍ପାଦନ ୮୪.୬୩ ଲକ୍ଷ ଟନ୍‌ରେ ପହଞ୍ଚାଇବା ପାଇଁ ସରକାର ଲକ୍ଷ୍ୟ ରଖିଛନ୍ତି ।

ଅର୍ଥକରୀ ଫସଲଭାବେ ଆମ ଚାଷୀଙ୍କ ନିକଟରେ ତୈଳବୀଜ ଫସଲ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଜାତୀୟ ସ୍ତରରେ ମଧ୍ୟ ଏହାର ବ୍ୟାପକ ଆବଶ୍ୟକତା ରହିଛି । ୧୯୮୦-୮୧ ମସିହାରେ ରାଜ୍ୟର ୭.୪ ଲକ୍ଷ ହେକ୍ଟର ଜମିରେ ବିଭିନ୍ନ ତୈଳବୀଜ ଫସଲ ଚାଷ କରାଯାଇ ୪.୯ ଲକ୍ଷ ଟନ୍ ତୈଳବୀଜ ଉତ୍ପାଦନ କରାଯାଇଥିଲା । ସେତେବେଳେ ଏହାର ହେକ୍ଟର ପ୍ରତି ଉତ୍ପାଦନ ଥିଲା ମାତ୍ର ୬୬୦ କେଜି । ସାରାବର୍ଷ ଭିନ୍ନ ଭିନ୍ନ ଋତୁରେ ତୈଳବୀଜ ଚାଷ କରିବାପାଇଁ ଉନ୍ନତ ବିହନ ସାଙ୍ଗକୁ, ପାରମ୍ପରିକ ଚାଷ ପଦ୍ଧତି ବଦଳରେ ଆଧୁନିକ ଚାଷ କୌଶଳ ପ୍ରଦର୍ଶନ ଦ୍ୱାରା ୧୯୮୫-୮୬ ସୁଦ୍ଧା ରାଜ୍ୟର ୯.୭ ଲକ୍ଷ ହେକ୍ଟର ଜମିରେ ତୈଳବୀଜ ଚାଷ କରାଯାଇ ୭.୨୨ ଲକ୍ଷ ଟନ୍ ତୈଳବୀଜ ଉତ୍ପାଦନ କରାଯାଇ ପାରିଛି । ହେକ୍ଟର ପ୍ରତି ହାରାହାରି ଉତ୍ପାଦନ ମଧ୍ୟ ୬୬୦ କେଜିରୁ, ଏହି ସମୟ ମଧ୍ୟରେ ୭୮୩ କେଜିକୁ ବୃଦ୍ଧି ପାଇଛି । ୧୯୮୫-୮୬ ମସିହାରୁ ରାଜ୍ୟର ସାତୋଟି ଜିଲାରେ ଜାତୀୟ ତୈଳବୀଜ ଉନ୍ନୟନ ଯୋଜନା କାର୍ଯ୍ୟକାରୀ ହେବାଦ୍ୱାରା, ଏ ଦିଗରେ ବ୍ୟାପକ ଉନ୍ନତି ଆଶା କରାଯାଉଛି । ଏତଦ୍‌ବ୍ୟତୀତ ଗତବର୍ଷଠାରୁ ରାଜ୍ୟରେ ସମସ୍ତ ଜିଲାରେ "ତୈଳବୀଜ ଉନ୍ନୟନ ଅଗ୍ରାଧିକାର" ଯୋଜନା ମଧ୍ୟ କାର୍ଯ୍ୟକାରୀ ହେଉଛି । ଏହାଦ୍ୱାରା ତୈଳବୀଜ ଉନ୍ନୟନ କ୍ଷେତ୍ରରେ ଏକ ନୂତନ ଦିଗନ୍ତ ସୃଷ୍ଟି କରିବା ସରକାରଙ୍କର ଲକ୍ଷ୍ୟ । ୧୯୮୦-୮୧ ମସିହାରେ କେବଳ ୧.୭ ଲକ୍ଷ ହେକ୍ଟର ଜମିରେ ଚିନାବାଦାମ ଚାଷ କରାଯାଇ ୨.୩ ଲକ୍ଷ ଟନ୍ ଚିନାବାଦାମ ଅମଳ କରାଯାଇଥିଲା । ହେକ୍ଟର ପ୍ରତି ଏହାର ଅମଳଥିଲା ୧୩୪୦ କେଜି । ୧୯୮୫-୮୬ ମସିହାରେ ଚିନାବାଦାମ ରାଜ୍ୟର ୩.୨ ଲକ୍ଷ ହେକ୍ଟର ଜମିରେ ଚାଷ କରାଯାଇ ୪.୬ ଲକ୍ଷ ଟନ୍ ଅମଳ ମିଳିପାରିଛି । ହେକ୍ଟର ପ୍ରତି ଉତ୍ପାଦନ ମଧ୍ୟ ୧୩୪୦ କେଜିରୁ ବୃଦ୍ଧିପାଇ ୧୪୩୪ କେଜିରେ ପହଞ୍ଚିଲାଣି । ଗର୍ବର ବିଷୟ ଯେ ଆମର ଚାଷୀ ସାରା ଦେଶରେ ରବି ଖରାଦିନିଆ ଚିନାବାଦାମ ଚାଷରୁ ହେକ୍ଟର ପ୍ରତି ହାରାହାରି ୧୭୮୬ କେଜି ଅମଳ ପାଇ ସର୍ବୋଚ୍ଚ ସ୍ଥାନ ଅଧିକାର କରିପାରିଛନ୍ତି ।

ଚଳିତ ବର୍ଷ ମୋଟ ତୈଳବୀଜ ଉତ୍ପାଦନ ୯.୨୪ ଲକ୍ଷ ଟନ୍‌କୁ ବୃଦ୍ଧି କରିବା ପାଇଁ ସରକାର ଲକ୍ଷ୍ୟ ରଖିଛନ୍ତି ।

ଗତବର୍ଷ ଖରିଫ୍ ଋତୁଠାରୁ ସୋୟାବିନ୍ ପ୍ରଥମ କରି କୋରାପୁଟ, କଳାହାଣ୍ଡି, ସୁନ୍ଦରଗଡ଼ ଓ ବଲାଙ୍ଗୀର ଜିଲାରେ ଚାଷ କରାଯାଉଛି । ଏହାର ଉତ୍ପାଦନ ଖୁବ୍ ଉତ୍ସାହଜନକ ହୋଇଥିବାରୁ ଚଳିତ ବର୍ଷ ୨୦ ହଜାର ହେକ୍ଟର ଜମିରେ ଏହି ଫସଲ ଚାଷ କରାଯିବ ।

ଅନ୍ୟତମ ଅର୍ଥକରୀ ଫସଲ ନଡ଼ିଆ ଆମ ରାଜ୍ୟରେ ବହୁଦିନରୁ ପରିଚିତ । ଏହାର ବ୍ୟାପକ ପ୍ରସାର ଓ ହେକ୍ଟର ପ୍ରତି ଉତ୍ପାଦନ ବୃଦ୍ଧି କରିବା ପାଇଁ ସଂପ୍ରତି ରାଜ୍ୟରେ ସ୍ୱତନ୍ତ୍ର ଝୋଟ ଉନ୍ନୟନ ଯୋଜନା କାର୍ଯ୍ୟକାରୀ କରାଯାଉଛି । ଏଥିରେ ଏକଚାଟିଆ ଚାଷ ପ୍ରଦର୍ଶନ ଓ ସୁଲଭ ମୂଲ୍ୟରେ କୃଷି ସାମଗ୍ରୀମାନ ଚାଷୀଙ୍କୁ ଯୋଗାଇ ଦେବା ସଙ୍ଗେସଙ୍ଗେ, ବ୍ୟାପକ ଭାବେ ଆଧୁନିକ ଚାଷ କୌଶଳ ଅବଲମ୍ବନ ପ୍ରତି ଚାଷୀମାନଙ୍କୁ ଆଗ୍ରହୀ କରାଯିବ । ୧୯୮୦-୮୧ ମସିହାରେ ଝୋଟ ଅମଳ ହେକ୍ଟର ପ୍ରତି ୧୨୭୮ କେଜି ଥିବାସ୍ଥଳେ ୧୯୮୫-୮୬ ବେଳକୁ ଏହା ୧୪୯୮ କେଜିରେ ପହଞ୍ଚିଲାଣି ।

କପା ଚାଷ ଆମ ଚାଷୀଙ୍କ ପାଇଁ ପ୍ରାୟତଃ ନୂଆ ନୁହେଁ । ଏହା ସତ୍ତ୍ୱେ ରାଜ୍ୟର ୧୨ଟି ସୂତାକଳ ତଥା ହସ୍ତତନ୍ତ ଶିଳ୍ପର ଚାହିଦା ମେଣ୍ଟାଇବା ପାଇଁ କପା ଚାଷର ଯଥେଷ୍ଟ ଗୁରୁତ୍ୱ ରହିଛି । କପା ଫସଲ ମରୁଡ଼ି ସହି ପାରୁଥିବାରୁ, ଅଣଜଳସେଚିତ ଢିପ ଜମିମାନଙ୍କରେ ଏହାର ଚାଷକୁ ବ୍ୟାପକ କରାଯିବାର ବ୍ୟବସ୍ଥା ହେଉଛି । ଏକ ସ୍ୱତନ୍ତ୍ର ଯୋଜନା ମାଧ୍ୟମରେ ଚାଷୀମାନଙ୍କୁ ଏଥିପାଇଁ ରିହାତି ଦରରେ ସାର, ପୋକମରା ଔଷଧ ଇତ୍ୟାଦି ଯୋଗାଇ ଦେବାସହିତ, ଉତ୍ପାଦିତ କପାକୁ ସରକାରୀ ଧାର୍ଯ୍ୟ ମୂଲ୍ୟରେ କିଣିନେବା ପାଇଁ ସ୍ଥିର କରଯାଇଛି ।

ଆଖୁ ଆମ ରାଜ୍ୟର ଅନ୍ୟତମ ଅର୍ଥକରୀ ଫସଲ । ୧୯୮୦-୮୧ ମସିହାରେ ୪୯ ହଜାର ହେକ୍ଟର ଜମିରେ ଆଖୁ ଚାଷ କରଯାଇ ୩,୦୬୭ ହଜାର ମେଟ୍ରିକ୍ ଟନ୍ ଆଖୁ ଉତ୍ପାଦନ କରଯାଇଥିଲା । ଅର୍ଥାତ୍ ହେକ୍ଟର ପ୍ରତି ହାରହାରି ଅମଳ ଥିଲା ୬୩ ଟନ୍ । ପରେପରେ ଆଖୁ ଅମଳ ବଢ଼ାଇବା ପାଇଁ ରାଜ୍ୟର ତିନୋଟି ପୁରୁଣା ଚିନିକଳ ସାଙ୍ଗକୁ ଦୁଇଟି ନୂଆ ଚିନିକଳ ପ୍ରତିଷ୍ଠା କରଯାଇଛି ଓ ଆଧୁନିକ ଚାଷ କୌଶଳ ପ୍ରତି ଚାଷୀ ମାନଙ୍କୁ ଆଗ୍ରହୀ କରଯାଉଛି । ଫଳରେ ଆଖୁଚାଷର ଆୟତନ

ସ୍ଥିର ରହିଲେ ମଧ୍ୟ ହେକ୍ଟର ପ୍ରତି ଉତ୍ପାଦନ ୬୪.୬ ଟନ୍‌କୁ ବୃଦ୍ଧି ପାଇଛି । ସଂପ୍ରତି, ଚିନିକଳ ପାଖାପାଖି ଅଞ୍ଚଳମାନଙ୍କରେ ଆଖୁ-ଚାଷର ପ୍ରସାର ଓ ଆଧୁନିକ ଚାଷ କୌଶଳର ବ୍ୟାପକ ଉପଯୋଗ-ଦ୍ୱାରା ଆଖୁ ଉତ୍ପାଦନ ବୃଦ୍ଧି କରିବା ପାଇଁ ଚେଷ୍ଟା କରଯାଉଛି ।

## କୃଷି ସାମଗ୍ରୀ ଯୋଗାଣ

(କ) ଉନ୍ନତ ବିହନ—୧୯୭୯-୮୦ ସୁଦ୍ଧା ଉନ୍ନତ ବିହନ ଯୋଗାଣ ପରିମାଣ ୩୮,୫୦୦ କୁଇଣ୍ଟାଲ ଥିଲାବେଳେ, ୧୯୮୫-୮୬ ବେଳକୁ ତାହା ୬୭,୪୦୦ କୁଇଣ୍ଟାଲ ଓ ଚଳିତ ବର୍ଷ ୧ ଲକ୍ଷ କୁଇଣ୍ଟାଲରେ ପହଞ୍ଚିଛି । ସୁପରିକଳ୍ପିତ ବିହନ ଉତ୍ପାଦନ ଯୋଜନାଦ୍ୱାରା ଏହା ସମ୍ଭବ ହୋଇପାରିଛି । ସଂପ୍ରତି କୃଷି ବିଭାଗ, କୃଷି ବୈଷୟିକ ବିଶ୍ୱବିଦ୍ୟାଳୟ ଏବଂ ରାଜ୍ୟ ବିହନ ଯୋଗାଣ ନିଗମ ଉନ୍ନତ ବିହନ ଉତ୍ପାଦନ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ସପ୍ତମ ଯୋଜନା ଶେଷସୁଦ୍ଧା ରାଜ୍ୟରେ ୧୬,୬୭୯ ଟନ୍ ପ୍ରମାଣୀକୃତ (Certified) ବିହନ, ୧,୦୯୪ ଟନ୍ ଭିତ୍ତି ବିହନ (Foundation seed) ଏବଂ ୧୩୦ ଟନ୍ ବ୍ରିଡ଼ର ଷ୍ଟକ, ବିହନ ଉତ୍ପାଦନ ଲକ୍ଷ୍ୟ ରଖାଯାଇଛି । ଏହା ଫଳରେ ଦେଶୀ ଓ ସ୍ୱଳ୍ପ ଉତ୍ପାଦନକ୍ଷମ ବିହନ ବଦଳରେ ବ୍ୟାପକଭାବେ ଅଳ୍ପ ଦିନରେ ଅମଳ ହୋଇପାରୁଥିବା ଅଧିକ ଅମଳକ୍ଷମ ବିହନ ବ୍ୟବହାର କରିବା ସମ୍ଭବ ହୋଇ ପାରିବ ।

(ଖ) ସାର- -ସଂପ୍ରତି ରାଜ୍ୟର ଚାଷୀ ହେକ୍ଟର ପ୍ରତି ହାରାହାରି ୧୭ କେ. ଜି. ସାର ବ୍ୟବହାର କରୁଛନ୍ତି । ସର୍ବଭାରତୀୟ ସ୍ତରଠାରୁ ଏହା ଯଥେଷ୍ଟ କମ୍ । ଅଧିକ ଉତ୍ପାଦନ ପାଇବାକୁ ହେଲେ ସାର ବ୍ୟବହାର ପରିମାଣ ହେକ୍ଟର ପ୍ରତି ୩୦ କେଜିକୁ ବଢ଼ାଇବାକୁ ହିଁ ହେବ । ଏଥିପାଇଁ ଚଳିତବର୍ଷ ନିମ୍ନୋକ୍ତ ପଦକ୍ଷେପମାନ ନିଆଯାଉଛି—

୧ । ୧୦ କେଜି ପ୍ୟାକେଟ୍‌ରେ ସାର ବିକ୍ରୟ କରାଯିବ

୨ । ଛୋଟ ପୁଡ଼ିଆରେ ସାର ବିକ୍ରୟ ପାଇଁ ଲାଇସେନ୍‌ସ୍ ଦରକାର ହେବନାହିଁ ।

୩ । ଏହି ଅଞ୍ଚଳମାନଙ୍କରେ ବ୍ଲକ୍ ପିଛା ଅଧିକା ୬ଟି କରି ସରକାରୀ ବିକ୍ରୟକେନ୍ଦ୍ର ଖୋଲିବାର ବ୍ୟବସ୍ଥା ହୋଇଛି ।

୪ । ସଚଳ କାର୍ଯ୍ୟକ୍ରମ ବାହାରେ ଥିବା ବ୍ଲକ୍ ମାନଙ୍କରେ ଅଧିକ ସାର ବ୍ୟବହାର ଓ ଉତ୍ପାଦିକା ଶକ୍ତି ବିସ୍ତାର କରି ବ୍ଲକ୍ ପ୍ରତି ୧ ଲକ୍ଷ ଟଙ୍କାର ନଗଦ ପୁରସ୍କାର ଦେବାର ସୁବିଧା କରଯାଇଛି ।

୫ । ସାର ପରିବହନ କ୍ଷେତ୍ରରେ ରିହାତିର ମଧ୍ୟ ବ୍ୟବସ୍ଥା କରଯାଇଛି ।

ଏହା ସଫଳଭାବେ କାର୍ଯ୍ୟକାରୀ ହେଲେ ସପ୍ତମ ଯୋଜନା ଶେଷ ସୁଦ୍ଧା ରାଜ୍ୟରେ ୧୨୫,୦୦୦ ମେଟ୍ରିକ୍ ଟନ୍ ଯବକ୍ଷାରଜାନ, ୬୫,୦୦୦ ମେଟ୍ରିକ୍ ଟନ ଫସଫେଟ୍ ଓ ୪୦,୦୦୦ ମେଟ୍ରିକ୍ ଟନ୍ ପଟାସ ବ୍ୟବହାର କରିବାର ଲକ୍ଷ୍ୟ ହାସଲ କରଯାଇପାରିବ ।

(ଗ) ଜଳସେଚନ—ଏକ ସଫଳ ଉତ୍ପାଦନ ଯୋଜନା, ନିର୍ଭରଯୋଗ୍ୟ ଜଳ ସଂପଦର ଉପଯୁକ୍ତ ବିନିଯୋଗ ଉପରେ ବିଶେଷଭାବେ ନିର୍ଭର କରିଥାଏ । ଏହି ପରିପ୍ରେକ୍ଷୀରେ ବିଚାର କରି, ସପ୍ତମ ଯୋଜନାର ଶେଷ ଦୁଇବର୍ଷକୁ ସରକାର 'ଜଳସେଚନ ବର୍ଷ' ଭାବେ ଘୋଷଣା କରିଛନ୍ତି । ଏହି ଦୁଇ ବର୍ଷରେ ଅସଂପୂର୍ଣ୍ଣ ଯୋଜନାଗୁଡ଼ିକୁ ସଂପୂର୍ଣ୍ଣ କରିବା, ଯଥାସମ୍ଭବ ଅଧିକ ସଂଖ୍ୟକ ଉଠାଜଳସେଚନ ଯୋଜନା, ଜଳ ଅମଳ ପ୍ରକଳ୍ପ, କ୍ଷେତ ପୁଷ୍କରିଣୀ (Farm Pond), ସେଚକୂପ ଓ ଗଭୀର ନଳକୂପ ସାହାଯ୍ୟରେ ଜଳସେଚିତ ଜମିର ଆୟତନ ବୃଦ୍ଧି କରିବା ପାଇଁ ସଂକଳ୍ପବଦ୍ଧ । ଫଳରେ ୧୯୮୪-୮୫ ତୁଳନାରେ ଖରିଫ୍ ଜଳସେଚିତ ଜମିର ଆୟତନ ୧୧,୯୯,୯୩୦ ହେକ୍ଟରରୁ ବୃଦ୍ଧି ପାଇ ୧୫,୬୧,୯୩୦ ହେକ୍ଟରରେ ଓ ରବି ଜଳସେଚିତ ଜମିର ଆୟତନ ୩,୬୯,୮୪୦ ହେକ୍ଟରରୁ ବୃଦ୍ଧି ପାଇ ୫,୬୯,୮୪୦ ହେକ୍ଟରରେ ପହଞ୍ଚି-ପାରିବ ବୋଲି ସରକାର ଲକ୍ଷ୍ୟ ରଖିଛନ୍ତି ।

ଚାଷୀମାନଙ୍କୁ ଜଳସେଚନ ସମ୍ଭାବନା ବୃଦ୍ଧି କରିବା ଦିଗରେ ଆଗ୍ରହୀ କରିବାପାଇଁ ବିଭିନ୍ନ ଯୋଜନା ମାଧ୍ୟମରେ ରିହାତି ଦେବାର ମଧ୍ୟ ବ୍ୟବସ୍ଥା କରଯାଇଛି ।

## ସଂପ୍ରସାରଣ

କୃଷି କ୍ଷେତ୍ରରେ ନୂତନ ଜ୍ଞାନ-କୌଶଳର ଉପଯୋଗ କରି ଉତ୍ପାଦନ ବଢ଼ାଇବା ପାଇଁ, ଆଞ୍ଚଳିକ ଗବେଷଣା କେନ୍ଦ୍ରମାନଙ୍କରେ ସ୍ଥାନୀୟ ମାଟି ଓ ଜଳବାୟୁ ଭିତ୍ତିରେ ବିହନ ନିର୍ବାଚନ କରିବା ଓ ଏଥିପାଇଁ ଚାଷ କୌଶଳ ତଥା କୃଷି ସାମଗ୍ରୀର ବ୍ୟବହାର କରିବା ଉପରେ ଗବେଷଣା ଲକ୍ଷ୍ୟ ରଖାଯାଇଛି ।

ଏହି ଗବେଷଣାଲବ୍ଧ ବୈଜ୍ଞାନିକ ଚାଷ ପଦ୍ଧତି ରାଜ୍ୟର ପ୍ରାୟ ୩୬ ହଜାର ଚାଷୀ ପରିବାରଙ୍କ ପାଖରେ ନିୟମିତ ରୂପେ ପହଞ୍ଚାଇବା ପାଇଁ କୃଷି ବିଭାଗ ଦ୍ୱାରା "ତାଲିମ ଓ ପରିଦର୍ଶନ" କାର୍ଯ୍ୟକ୍ରମ ମଧ୍ୟ ସମାନ୍ତରାଳ ଭାବେ ଚାଲୁ ରହିଛି । ବିଭିନ୍ନ ବିଭାଗ ମଧ୍ୟରେ ସମନ୍ୱୟ ଏବଂ ଚାଷୀ ସଂକଳ୍ପ ତଥା ମନୋବଳ ଆମର ଲକ୍ଷ୍ୟ ପୂରଣ ପାଇଁ ଏକାନ୍ତ କାମ୍ୟ । ବିଶ୍ୱାସ, ଓଡ଼ିଶାକୁ ଭାରତର ସ୍ୱର୍ଣ୍ଣପ୍ରସୂ ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବା ପାଇଁ ଏହାର ଅଭାବ ହେବ ନାହିଁ ।



# ନଗର ଉନ୍ନୟନ ଯୋଜନା ଓ ଏହାର ଉପଯୋଗିତା

ଶ୍ରୀ ବଟକୃଷ୍ଣ ଜେନା

ନଗରବାସୀମାନେ ଖୁବ୍ ସୁଖ ସ୍ୱାଚ୍ଛନ୍ଦରେ ଥାଆନ୍ତି ବୋଲି ଯେଉଁ ସାଧାରଣ ଧାରଣା ଅଛି ତାହା ସଂପୂର୍ଣ୍ଣ ସତ୍ୟ ନୁହେଁ । ୧୯୫୧ ଜନଗଣନାରେ ଭାରତର ଜନସଂଖ୍ୟାର, ଶତକଡା ୧୭.୧୭ ଭାଗ ଲୋକ ସହରାଞ୍ଚଳରେ ବାସ କରୁଥିଲେ । ପରବର୍ତ୍ତୀ ତିନୋଟି ଦଶନ୍ଧିରେ ଏହା ବୃଦ୍ଧି ପାଇ ଯଥାକ୍ରମେ ଶତକଡା ୧୭.୯୮, ୧୯.୯୧ ଓ ୨୩.୭୩ରେ ପହଞ୍ଚିଥିଲା । ସେହି ସମୟ ମଧ୍ୟରେ ଓଡ଼ିଶାର ସହରାଞ୍ଚଳ ଜନସଂଖ୍ୟା ୧୯୫୧ ରେ ଶତକଡା ୪.୦୬ ରୁ ବୃଦ୍ଧି ପାଇ ୬.୩୨, ୮.୪୧ ଓ ୧୧.୮୨ ରେ ପହଞ୍ଚିଛି । ଏବେ ଏହି ସଂଖ୍ୟା ଯଥେଷ୍ଟ ବୃଦ୍ଧି ପାଇ ଗଲାଣି । ସହରାଞ୍ଚଳରେ ଇତରବସ୍ତି ଅଞ୍ଚଳମାନ ମଧ୍ୟ କ୍ରମେ ବୃଦ୍ଧି ପାଇବାରେ ଲାଗିଛି । ବିଜ୍ଞାନ ଓ ଯାନ୍ତ୍ରିକ ସଭ୍ୟତା ଅଭିବୃଦ୍ଧି ସଙ୍ଗେସଙ୍ଗେ ଜନସାଧାରଣଙ୍କ ସୁବିଧା ମଧ୍ୟ ବୃଦ୍ଧି ପାଇଛି । ୧୯୭୧–୮୧ ଦଶନ୍ଧିରେ ଭାରତର ହାରାହାରି ଜାତୀୟ ସହରାଞ୍ଚଳ ଅଭିବୃଦ୍ଧି ସୀମା ଲଙ୍ଘନ କରିଥିବା ୫୫୫ ସହର ମଧ୍ୟରୁ କେବଳ ଓଡ଼ିଶାରେ ୨୩ଟି ସହର ଅଛି । ଲୋକଙ୍କୁ ସହରାଞ୍ଚଳରେ ସର୍ବନିମ୍ନ ଆବଶ୍ୟକତା ଅନୁଯାୟୀ ସେବା ଯୋଗାଇ ଦେବା, ପରିବେଶକୁ ସୁସ୍ଥ ଓ ସ୍ୱାସ୍ଥ୍ୟକର ରଖିବା ଆଦି ପୂରଣ ନ କଲେ ବହୁ ଜନ ସମାଗମ ସହରମାନଙ୍କର ଅଧିବାସୀ ଯେ ପୂତି ଗନ୍ଧମୟ ନରକରେ ପତିତ ହେବେ, ଏ କଥା କହିବା ବାହୁଲ୍ୟ ମାତ୍ର ।

ସ୍ୱାଧୀନତାର ଦୀର୍ଘ ୪୦ ବର୍ଷ ପୂର୍ତ୍ତି ପାଳିତ ହେଉଥିଲେ ମଧ୍ୟ ପ୍ରାୟ ୧୯୮୦ ମସିହା ପର୍ଯ୍ୟନ୍ତ ନଗରାଞ୍ଚଳର ସର୍ବବିଧ ଉନ୍ନତି ପାଇଁ ଯଥେଷ୍ଟ ଦୃଷ୍ଟି ଦିଆଯାଇ ନଥିଲା । ଭାରତର ଜନପ୍ରିୟ ପ୍ରଧାନ ମନ୍ତ୍ରୀ ଶ୍ରୀଯୁକ୍ତ ରାଜୀବ ଗାନ୍ଧୀ ୧୯୮୫ ମସିହାରେ ସହରାଞ୍ଚଳର ଉନ୍ନତି ପାଇଁ କିଭଳି କାର୍ଯ୍ୟ କରାଯାଇ ପାରେ ସେଥିପାଇଁ ସୁପାରିଶ କରିବାକୁ ଭାରତ ଇତିହାସରେ ପ୍ରଥମ ଥର ପାଇଁ ଏକ ଜାତୀୟ କମିସନ୍ ନିଯୁକ୍ତ କରିଛନ୍ତି । ଏହି କମିସନଙ୍କର ଚୂଡ଼ାନ୍ତ ରିପୋର୍ଟକୁ ଅପେକ୍ଷା କରାଯାଉଛି । ତଥାପି ଓଡ଼ିଶା ସରକାର ବିଶେଷ ଭାବରେ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଦ୍ୱାରା ଗଠିତ ସରକାର ୧୯୮୦ ମସିହାରୁ ଏ ପର୍ଯ୍ୟନ୍ତ ନଗରାଞ୍ଚଳର ଉନ୍ନତି ପାଇଁ ଯୋଜନା ଓ ଅଣ ଯୋଜନା ବାବଦରେ ବହୁ ଅର୍ଥ ବ୍ୟୟ କରି ଏହାର ଅଧିବାସୀ ତଥା କର୍ମଚାରୀମାନଙ୍କ ପାଇଁ ବହୁବିଧ ଉନ୍ନତିମୂଳକ କାର୍ଯ୍ୟ କରି ଆସୁଛନ୍ତି ।

**(କ) ଆୟକାରୀ ଯୋଜନା :**

ନଗରାଞ୍ଚଳରେ ବେକାର ଯୁବକମାନଙ୍କୁ ଆୟର ପନ୍ଥା ଯୋଗାଇ ଦେବା ପାଇଁ ତଥା ପୌର ପରିଷଦମାନଙ୍କର ସମ୍ବଳ ବୃଦ୍ଧି ପାଇଁ ଏହି ଯୋଜନାରେ ଦୋକାନ ଘର ନିର୍ମାଣ କରିବା କାର୍ଯ୍ୟ ହାତକୁ ନିଆଯାଇଛି । ଯେଉଁ ପରିଷଦର ନିଜର ଜମି ଥିବ ଏବଂ ଲୋକେ ଦୋକାନଘର ନେବାକୁ ଆଗ୍ରହ ପ୍ରକାଶ କରୁଥିବେ, ସେଥିପାଇଁ ପରିଷଦମାନେ ଦୋକାନ ଘର ନିର୍ମାଣ ପ୍ରକଳ୍ପ ଚୂଡ଼ାନ୍ତ କରି ରାଜ୍ୟ ସରକାରଙ୍କୁ ଦେଲେ ରାଜ୍ୟ ସରକାର ଏହି ଯୋଜନାର ସମସ୍ତ ଖର୍ଚ୍ଚ ବାବଦରୁ ସର୍ବୋଚ୍ଚ ଶତକଡା ୪୦ ଭାଗ ପର୍ଯ୍ୟନ୍ତ ମାର୍ଜିନ ମନି ଆକାରରେ ଅନୁଦାନ ଦିଅନ୍ତି । ଏହି ଯୋଜନାରେ ଏ ପର୍ଯ୍ୟନ୍ତ ୬୯ଟି ପୌର ପରିଷଦରେ ୫୬ ଲକ୍ଷ ଟଙ୍କା ମଞ୍ଜୁର କରାଯାଇ ୭୧ ଟି ମାର୍କେଟ କଂପ୍ଲେକ୍ସ ନିର୍ମାଣ କରାଯାଇ ପାରିଛି । ଚଳିତ ବର୍ଷରେ ୧୫ ଲକ୍ଷ ଟଙ୍କା ବ୍ୟୟ କରାଯାଇ ୧୫ଟି ମାର୍କେଟ କଂପ୍ଲେକ୍ସ ନିର୍ମାଣ କରାଯିବା ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

**(ଖ) ରାସ୍ତା ଉନ୍ନୟନ :**

ସହରାଞ୍ଚଳରେ ରାସ୍ତା ଉନ୍ନୟନ ଓ ରକ୍ଷଣାବେକ୍ଷଣ ପୌରସଂସ୍ଥାର ଏକ ମୌଳିକ କାର୍ଯ୍ୟ । ଉନ୍ନତ ରାସ୍ତା ଦ୍ରୁତ ପ୍ରଗତିର ଏକ ସୂଚନା ହୋଇଥିବାରୁ ରାଜ୍ୟ ସରକାର ପୌର ପରିଷଦମାନଙ୍କର ରାସ୍ତା ଉନ୍ନତି ପାଇଁ ପ୍ରତିବର୍ଷ ଅର୍ଥ ମଞ୍ଜୁର କରିଥାନ୍ତି । ଏହି ଯୋଜନାରେ ରାଜ୍ୟ ସରକାର ଯାହା ଅର୍ଥ ମଞ୍ଜୁର କରନ୍ତି ସଂପୃକ୍ତ ପୌର ପରିଷଦମାନେ ନିଜସ୍ୱ ପାଣ୍ଠିରୁ ମଧ୍ୟ ସମପରିମାଣର ଅର୍ଥ ବିନିଯୋଗ କରି ରାସ୍ତା ଉନ୍ନତି ବିଧାନ କରନ୍ତି । ବିଗତ ୮ ବର୍ଷ ମଧ୍ୟରେ ଓଡ଼ିଶାର ୧୦୦ଟି ପୌର ପରିଷଦମାନେ ୧ କୋଟି ୬୫ ଲକ୍ଷ ଟଙ୍କା ବ୍ୟୟରେ ମୋଟ୍ ୨୩୫ କିଲୋମିଟର ରାସ୍ତାର ଉନ୍ନତି ବିଧାନ କରିଛନ୍ତି । ବର୍ତ୍ତମାନ ପୌର ପରିଷଦମାନେ ନିମ୍ନ ପରିମାଣ ଦୈର୍ଘ୍ୟ ରାସ୍ତାର ଅଧିକାରୀ ହୋଇଛନ୍ତି । ଯଥା–ପିଚୁ ରାସ୍ତା ୧,୬୬୦ କିଲୋମିଟର, ସିମେଣ୍ଟ କଂକ୍ରିଟ୍ ରାସ୍ତା ୨୧୭ କିଲୋମିଟର, ମେଟାଲ୍ ରାସ୍ତା ୨,୦୫୫ କିଲୋମିଟର, ମୋରମ ରାସ୍ତା ୨,୦୮୨ କିଲୋମିଟର, ମାଟି ରାସ୍ତା ୨,୪୧୦ କିଲୋମିଟର ।

**(ଗ) ସହରାଞ୍ଚଳର ଇତରବସ୍ତି ଉନ୍ନୟନ ଯୋଜନା :**

ସହରାଞ୍ଚଳରେ ଇତରବସ୍ତି ଅଞ୍ଚଳମାନ ମଧ୍ୟ କ୍ରମେ ବୃଦ୍ଧି ପାଉଥିବା ଲକ୍ଷ୍ୟ କରାଯାଉଛି । କୋଠାବାଡ଼ି, ରାସ୍ତାଘାଟ, ପୋଲ ଓ ନାଳ ନର୍ଦ୍ଦମା ଇତ୍ୟାଦି ନିର୍ମାଣ କରିବା ପାଇଁ ମୂଲିଆ, କାରିଗର, ଠିକାଦାର ଏବଂ ସହରାଞ୍ଚଳ ଲୋକମାନଙ୍କ ସେବା ଯୋଗାଇ ଦେବା ପାଇଁ ଧୋବା, ବାରିକ, ରିକ୍ସା ଚାଳକ, ଘରକାମ କରିବା ପାଇଁ ମୂଲିଆ ଓ ମୂଲିଆଣୀ ଇତ୍ୟାଦି ବହୁ ଲୋକଙ୍କର ଆବଶ୍ୟକତା ଅଛି । ଏହି ଲୋକମାନଙ୍କ ପାଇଁ ସହରାଞ୍ଚଳରେ କୌଣସି ବାସଗୃହ ଯୋଜନା କରିବା ବର୍ତ୍ତମାନ ସମ୍ଭବପର ହେଉ ନଥିବାରୁ ଏବଂ ଲୋକମାନେ ବାସ କରୁଥିବା ଇତରବସ୍ତିଗୁଡ଼ିକ ଭାଙ୍ଗି ନ ଦେଇ ସେଠାରେ ପାନୀୟ ଜଳ, ବିଜୁଳି ଆଲୋକ, ରାସ୍ତା, ନାଳ, ନର୍ଦ୍ଦମା, ପାଇଖାନା ଓ ଗାଧୁଆଘର ଆଦି କେତେକ ସୁବିଧା ଯୋଗାଇ ଦେଇ ସେମାନଙ୍କୁ ଏକ ସୁସ୍ଥ ବାତାବରଣ ଭିତରେ ବସବାସ କରି ରଖିବାର ଲକ୍ଷ୍ୟ ଏହି ଯୋଜନାର ଅନ୍ତର୍ଭୁକ୍ତ । ଚଳିତ ୭ମ ଯୋଜନାରେ କେନ୍ଦ୍ର ସରକାର ଅନ୍ୟୁନ ୯୦ ଲକ୍ଷ ଲୋକଙ୍କୁ ଉପରୋକ୍ତ ସୁବିଧା ଯୋଗାଇ ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରିଛନ୍ତି । ୧୯୮୧ ମସିହାର ଜନ ଗଣନାରୁ ଜଣାଯାଏ ଯେ, ଓଡ଼ିଶାର ସହରାଞ୍ଚଳରେ ପ୍ରାୟ ୫ ଲକ୍ଷ ଲୋକ ଇତରବସ୍ତି ଅଞ୍ଚଳରେ ବସବାସ କରନ୍ତି । ୭ମ ଯୋଜନା କାଳରେ ଓଡ଼ିଶାରେ ୪୦ ହଜାର ଲୋକଙ୍କୁ ଉପକୃତ କରିବା ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ବିଗତ ୧୯୮୭-୮୮ ମାର୍ଚ୍ଚ ସୁଦ୍ଧା ମୋଟ୍ ୩ କୋଟି ୪୧ ଲକ୍ଷ ୫୪ ହଜାର ୯୦୦ ଟଙ୍କା ଖର୍ଚ୍ଚ କରାଯାଇ ୧ ଲକ୍ଷ ୪୮ ହଜାର ୬୮୭ ସଂଖ୍ୟକ ଲୋକଙ୍କୁ ଉପରୋକ୍ତ ମୌଳିକ ସୁବିଧା ଯୋଗାଇ ଦିଆଯାଇଛି ।

**(ଘ) ଅଣ-ଆୟକାରୀ ଯୋଜନା :**

ଏହି ଯୋଜନା ମାଧ୍ୟମରେ ରାଜ୍ୟ ସରକାର ପୌରପରିଷଦମାନଙ୍କୁ ଉଦ୍ୟାନ ନିର୍ମାଣ, ରାସ୍ତା, ବିଦ୍ୟୁତ୍ କରଣ, ପୁଷ୍କରଣୀ ଖନନ ଓ ସେଠାରେ ଗାଧୁଆ ତୁଠ ନିର୍ମାଣ, ଟାଉନ୍ ହଲ୍ ନିର୍ମାଣ ଓ ଅନ୍ୟାନ୍ୟ ସୌନ୍ଦର୍ଯ୍ୟ ବୃଦ୍ଧିକାରୀ ଓ ମୌଳିକ ସୁବିଧା ନିମନ୍ତେ ଅନୁଦାନ ଦିଆଯାଇ ଥାଏ । ବିଗତ ୮ ବର୍ଷ ମଧ୍ୟରେ ପୌରସଂସ୍ଥାମାନଙ୍କୁ ୧୩ ଲକ୍ଷ ଟଙ୍କା ମଞ୍ଜୁର କରାଯାଇ ୨୦,୨୦୦ ବର୍ଗମିଟର ଉଦ୍ୟାନ ଓ ପୁଷ୍କରିଣୀ ସଂସ୍କାର, ରାସ୍ତା ବିଦ୍ୟୁତ୍‌କରଣ, ଶ୍ମଶାନ ଉନ୍ନତି, ବସ୍ ଷ୍ଟାଣ୍ଡ୍ ନିର୍ମାଣ ଆଦି ୭୯ ଟି ଅନ୍ୟାନ୍ୟ ଯୋଜନା କାର୍ଯ୍ୟକାରୀ କରାଯାଇଛି ।

ବର୍ତ୍ତମାନ ସୁଦ୍ଧା ଓଡ଼ିଶାର ୧୦୦ଟି ପୌର ପରିଷଦ ମଧ୍ୟରୁ ୨୨ଟିରେ ଟାଉନ୍‌ହଲ୍ ଅଛି ଏବଂ ୧୦ଟି ପୌର ସଂସ୍ଥାର ଟାଉନ୍‌ହଲ୍ ନିର୍ମାଣାଧୀନ ଅଛି ।

**(ଙ) ପୌର ମୌଳିକ ସେବା କାର୍ଯ୍ୟକ୍ରମ :**

ଏହି କାର୍ଯ୍ୟକ୍ରମ ୭ମ ଯୋଜନାର ଏକ ନୂତନ ପରିକଳ୍ପନା । ସହରାଞ୍ଚଳରେ ବସ୍ତିମାନଙ୍କରେ ବାସ କରୁଥିବା ଦରିଦ୍ର ପରିବାର ଲୋକଙ୍କ ଉନ୍ନତି ପାଇଁ ବିଶେଷ ଭାବରେ କୌଣସି କାର୍ଯ୍ୟକ୍ରମ ନଥିଲା । ଏହି ଯୋଜନା କାର୍ଯ୍ୟକାରୀ କଲେ ଶିଶୁ ଓ ମହିଳାମାନେ ଏଥିରେ ଉପକୃତ ହେବେ । ଶିଶୁ ଓ ମହିଳାମାନଙ୍କୁ ସୁସ୍ଥ ଓ ସ୍ୱାସ୍ଥ୍ୟ ରକ୍ଷା କାର୍ଯ୍ୟକ୍ରମ, ସେମାନଙ୍କ ପୁଷ୍ଟିସାଧନ, ନାଗରିକ ଦାୟିତ୍ୱ ସଂପର୍କରେ ତାଲିମ ଦେବା, ମହିଳାମାନଙ୍କ ପାଇଁ ମାଗଣା ଶିକ୍ଷାଦାନ ଓ ଅଧିକ ଉପାର୍ଜନକ୍ଷମ କରିବା ସକାଶେ ଉନ୍ନତ ଧରଣର କଳା, କୌଶଳ, ପ୍ରଶିକ୍ଷଣ, ପାନୀୟ ଜଳ ଯୋଗାଣ ଓ ଆରୋଗ୍ୟ ବ୍ୟବସ୍ଥା ପ୍ରଭୃତି ଏହି ଯୋଜନାର ଅଂଶ ବିଶେଷ ।

ଏହି ଯୋଜନା ଓଡ଼ିଶାରେ ୨୪ଟି ସହରରେ ପ୍ରଚଳନ କରାଯାଇଛି । ଏପର୍ଯ୍ୟନ୍ତ ଏହି ଯୋଜନାରେ ୬୯ ଲକ୍ଷ ୫ ହଜାର ଟଙ୍କା ଖର୍ଚ୍ଚ କରାଯାଇଛି ଏବଂ ୭ମ ଯୋଜନା ଶେଷ ସୁଦ୍ଧା ମୋଟ୍ ୨ କୋଟି ୧୪ ଲକ୍ଷ ୫୫ ହଜାର ଟଙ୍କା ଖର୍ଚ୍ଚ କରାଯାଇ ୪ ଲକ୍ଷ ୮୭ ହଜାର ୩୪୪ ଦରିଦ୍ର ଲୋକମାନଙ୍କର ଉନ୍ନତି କରିବା ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

**(ଚ) କ୍ଷୁଦ୍ର ଓ ମଧ୍ୟମ ଧରଣର ସହରଗୁଡ଼ିକର ସମନ୍ୱିତ ଉନ୍ନୟନ :**

ଭାରତର ବଡ଼ବଡ଼ ସହରରେ ଜନସଂଖ୍ୟା ଯେଉଁପରି ଭାବରେ ଦ୍ରୁତ ଗତିରେ ବୃଦ୍ଧି ପାଉଛି ତାହାକୁ ରୋକିବା ପାଇଁ ଏକ ଲକ୍ଷ ବା ତା'ଠାରୁ ଊଣା ଲୋକ ସଂଖ୍ୟା ବିଶିଷ୍ଟ କ୍ଷୁଦ୍ର ଓ ମଧ୍ୟମ ଧରଣର ସହରଗୁଡ଼ିକର ସମନ୍ୱିତ ଉନ୍ନୟନ ଯୋଜନା ପ୍ରଚଳନ କରାଯାଇଛି । ଏହି ଯୋଜନା ଅଧୀନରେ ଗୃହନିର୍ମାଣ ପାଇଁ ଭୂ-ଅର୍ଜନ, ଉନ୍ନୟନ ଓ ବଣ୍ଟନ, ବିଦ୍ୟମାନ ସଡ଼କଗୁଡ଼ିକର ସଂପ୍ରସାରଣ ତଥା ଉନ୍ନତି କରଣ, ନୂତନ ସଂଯୋଗ ରାସ୍ତା ନିର୍ମାଣ, ଦୋକାନ ଗୃହ, ମଣ୍ଡି, ମାଲ୍‌ଗୋଦାମ୍, ଟ୍ରକ୍ ଟର୍ମିନାଲ, ବସ୍‌ଷ୍ଟାଣ୍ଡ୍ ନିର୍ମାଣ ଓ ସ୍ୱଳ୍ପ ବ୍ୟୟରେ ଆରୋଗ୍ୟ ବ୍ୟବସ୍ଥା କରି ସହରଗୁଡ଼ିକର ବିକାଶ ଘଟାଇବା ଏହାର ଲକ୍ଷ୍ୟ । ଏହି ଯୋଜନା ୧୯୮୦ ରୁ ଆରମ୍ଭ କରାଯାଇଛି । ବିଗତ ୮ ବର୍ଷ ମଧ୍ୟରେ ଏହି ଯୋଜନା ଓଡ଼ିଶାର ୯ଟି ସହରରେ କାର୍ଯ୍ୟକାରୀ କରାଯାଇ ମୋଟ୍ ୫ କୋଟି ୩୧ ଲକ୍ଷ ୮୩ ହଜାର ଟଙ୍କା ଖର୍ଚ୍ଚ କରାଯାଇଛି । ଏହାଦ୍ୱାରା ଜନସାଧାରଣ ପ୍ରଭୂତ ଭାବରେ ଉପକୃତ ହୋଇଛନ୍ତି ।

**(ଛ) ମେହେନ୍ତରର ମୁକ୍ତି ପରିକଳ୍ପନା :**

ସହରମାନଙ୍କରେ ନିଯୁକ୍ତଥିବା ସଫେଇ କର୍ମଚାରୀମାନଙ୍କ ଦ୍ୱାରା ସହରର ମଇଳା, ମଳ ଓ ଆବର୍ଜନାକୁ ମୁଣ୍ଡରେ ବୋହି ନେଇ ସହର ବାହାରେ ପକାଇବା କାର୍ଯ୍ୟକୁ ବନ୍ଦ୍ କରି ସେମାନଙ୍କୁ ଏକ ସୁସ୍ଥ ନାଗରିକ ହିସାବରେ ବଞ୍ଚିବାର ସୁଯୋଗ ଦେବା ଉଦ୍ଦେଶ୍ୟରେ ଏହି ଯୋଜନା ହାତକୁ ନିଆଯାଇଛି । ଏକ ପରିସଂଖ୍ୟାନରୁ ଜଣାଯାଇଛି ଯେ ଓଡ଼ିଶାରେ ସହରାଞ୍ଚଳରେ ମୋଟ୍ ୧ ଲକ୍ଷ ୩୧ ହଜାର ୬୪୫ଟି ଉଠା ପାଇଖାନା ବ୍ୟବହୃତ ହେଉଛି । ପର୍ଯ୍ୟାୟକ୍ରମେ ଏହି ପାଇଖାନାଗୁଡ଼ିକୁ ଉଠାଇ ଏହି ସ୍ଥାନରେ ଅଳ୍ପ ବ୍ୟୟରେ ଜଳମୁଦ ପାଇଖାନା ନିର୍ମାଣ କରାଇବା କାର୍ଯ୍ୟ ରାଜ୍ୟ ସରକାର ହାତକୁ ନେଇଛନ୍ତି । ବିଗତ ୮ ବର୍ଷ ମଧ୍ୟରେ ମୋଟ ୮୫ ଲକ୍ଷ ୮୯ ହଜାର ୬୦୦ ଟଙ୍କା ଖର୍ଚ୍ଚ କରି ୬ ହଜାର ୧୯୮ ଟି ଉଠା ପାଇଖାନାକୁ ଜଳମୁଦ ପାଇଖାନାରେ ପରିଣତ କରାଯାଇଛି ।

**(ଜ) ସ୍ୱଳ୍ପ ବ୍ୟୟରେ ପୌର ପରିମଳ ବ୍ୟବସ୍ଥା :**

ବ୍ୟକ୍ତିଗତ ବା ଘରୋଇ ପାଇଖାନାକୁ ସ୍ୱଳ୍ପ ମୂଲ୍ୟରେ ଜଳମୁଦ ପାଇଖାନାରେ ପରିଣତ କରିବା ପାଇଁ ଏହି ଯୋଜନା ୧୯୭୦-୭୧ ଠାରୁ କାର୍ଯ୍ୟକାରୀ କରାଯାଇଥିଲେ ମଧ୍ୟ ଘର ମାଲିକମାନଙ୍କର ଆଗ୍ରହର ଅଭାବ ଯୋଗୁଁ ଏହା ବିଶେଷଭାବେ କାର୍ଯ୍ୟକାରୀ ହୋଇପାରି ନଥିଲା । ହିତାଧିକାରୀମାନଙ୍କୁ ନଗଦ ଋଣ ନ ଦେଇ ସ୍ଥାନୀୟ ପୌରସଂସ୍ଥା ଦ୍ୱାରା ପାଇଖାନାକୁ ପରିବର୍ତ୍ତନ କରାଇବା ନିଷ୍ପତ୍ତି ନିଆଗଲା । ଫଳରେ ବିଗତ ୮ ବର୍ଷ ମଧ୍ୟରେ ଏହି ଯୋଜନା ସଫଳ ଭାବେ କାର୍ଯ୍ୟ କରୁଛି ଏବଂ ଏପର୍ଯ୍ୟନ୍ତ ୩୯ ଲକ୍ଷ ୮୦ ହଜାର ଟଙ୍କା ଖର୍ଚ୍ଚରେ ୪,୦୦୭ଟି ଉଠା ପାଇଖାନାକୁ ସ୍ୱଳ୍ପ ମୂଲ୍ୟରେ ଜଳମୁଦ ପାଇଖାନାରେ ପରିଣତ କରାଯାଇଛି ।

**(ଝ) ସର୍ବସାଧାରଣ ଶୌଚାଗାର ନିର୍ମାଣ :**

କୌଣସି ସହରର ଶିଳ୍ପ ବାଣିଜ୍ୟ, କୋର୍ଟ କଚେରୀ କାର୍ଯ୍ୟ ପାଇଁ କିମ୍ବା ଭ୍ରମଣ ପାଇଁ ସହର ନିକଟବର୍ତ୍ତୀ ତଥା ଦୂରବର୍ତ୍ତୀ ଅଞ୍ଚଳରୁ ବହୁ ଲୋକ ଅଳ୍ପ ସମୟ ପାଇଁ ଆସିବା ଏକ ସାଧାରଣ କଥା । ମାତ୍ର ସେମାନଙ୍କୁ ଉପଯୁକ୍ତ ସ୍ଥାନରେ ଉପଯୁକ୍ତ ଭାବେ ସାଧାରଣ ଶୌଚାଗାର ଯୋଗାଇ ନଦେବା ଦ୍ୱାରା ସେମାନେ ସହରର ଯେ କୌଣସି ସ୍ଥାନରେ ମଳ ମୂତ୍ର ତ୍ୟାଗକରି ସହରକୁ ଆବର୍ଜନାମୟ କରି ପକାନ୍ତି । ଏହାକୁ ଦୂର କରିବା ଉଦ୍ଦେଶ୍ୟରେ ତଥା ଜନସାଧାରଣଙ୍କୁ ଉପଯୁକ୍ତ ସେବା ଦେବା ଉଦ୍ଦେଶ୍ୟରେ ଏହି ଯୋଜନା ହାତକୁ ନିଆଯାଇଛି । ଏ ପର୍ଯ୍ୟନ୍ତ ଏଥିରେ ୧ କୋଟି ୨୦ ଲକ୍ଷ ୩୨ ହଜାର ଟଙ୍କା ବ୍ୟୟ କରାଯାଇ ୫୩ଟି ସର୍ବସାଧାରଣ ଶୌଚାଗାର ତଥା ସ୍ନାନାଗାର ନିର୍ମାଣ କରାଯାଇଛି । ଏହା ବ୍ୟତୀତ ଆବର୍ଜନା ବସ୍ତିମାନଙ୍କରେ ମଧ୍ୟ ସର୍ବସାଧାରଣ ଶୌଚାଗାରମାନ ନିର୍ମାଣ କରାଯାଇଛି ।

**(ଚ) ସହରାଞ୍ଚଳରେ ଜଳ ଯୋଗାଣ :**

ସହରର ଅଧିବାସୀମାନଙ୍କୁ ନିର୍ମଳ ଓ ବିଶୁଦ୍ଧ ପାନୀୟ ଜଳ ଯୋଗାଇ ଦେବା ସକାଶେ ଏହି ପରିକଳ୍ପନା ବହୁ ପୂର୍ବରୁ ହାତକୁ ନିଆଯାଇ ଥିଲେ ମଧ୍ୟ ଅନେକ ସ୍ଥଳରେ ଏହା ଧୀରେଧୀରେ ଗ୍ରୁଳୁଥିବାର କିମ୍ବା ଅର୍ଦ୍ଧନିର୍ମାଣ ଅବସ୍ଥାରେ ପଡ଼ି ରହିଥିବାର ଲକ୍ଷ୍ୟ କରାଗଲା । କ୍ରମେ ବିଶୁଦ୍ଧ ପାନୀୟ ଜଳ ଯୋଗାଣ ପାଇଁ ଲୋକଙ୍କର ଦାବୀ ବଢ଼ିବାରେ ଲାଗିଲା । ଫଳରେ ନିର୍ମାଣାଧୀନ ଜଳ ଯୋଗାଣ ଯୋଜନାଗୁଡ଼ିକୁ ତ୍ୱରାନ୍ୱିତ କରିବା ସଙ୍ଗେସଙ୍ଗେ ନୂତନ ଯୋଜନା ହାତକୁ ନେବା ପାଇଁ ରାଜ୍ୟ ସରକାର ମନସ୍ଥ କଲେ । ବିଗତ ୮ ବର୍ଷ ମଧ୍ୟରେ ୩୬ଟି ଯୋଜନା ସଂପୂର୍ଣ୍ଣ କରାଯାଇଛି ଓ ୨୮ଟି ଯୋଜନା ନିର୍ମାଣାଧୀନ ଅବସ୍ଥାରେ ଅଛି । ଏମାନଙ୍କ ମଧ୍ୟରୁ ୭ମ ଯୋଜନା ଶେଷସୁଦ୍ଧା ୧୭ଟି ଜଳ ଯୋଗାଣ ଯୋଜନା କାର୍ଯ୍ୟକାରୀ କରାଯିବାର ଲକ୍ଷ୍ୟ ରଖାଯାଇଛି । ଏବେ ସୁଦ୍ଧା ୧୦୦ଟି ପୌରସଂସ୍ଥା ମଧ୍ୟରୁ ମୋଟ୍ ୮୧ଟି ପୌରାଞ୍ଚଳରେ ପାଇପ୍ ଯୋଗେ ଜଳ ଯୋଗାଣ ବ୍ୟବସ୍ଥା କରାଯାଇଛି ।

ଏହା ବ୍ୟତୀତ ରାଜ୍ୟ ସରକାରଙ୍କ ତରଫରୁ ସହରାଞ୍ଚଳର ଜଳକ୍ଲିଷ୍ଟ ଅଞ୍ଚଳମାନଙ୍କରେ ମୋଟ ୪,୯୬୪ଟି ନଳକୂପ ଖନନ କରାଯାଇ ଜଳାଭାବକୁ ଦୂରୀକରଣ କରାଯାଇଛି । ସ୍ଥଳ ବିଶେଷରେ ପୌରସଂସ୍ଥାମାନେ ମଧ୍ୟ ତାଙ୍କ ନିଜସ୍ୱ ପାଣ୍ଠିରୁ ଅର୍ଥ ଖର୍ଚ୍ଚ କରି ନଳକୂପ ସାହାଯ୍ୟରେ ଜଳ ଯୋଗାଣ ବ୍ୟବସ୍ଥା କରୁଛନ୍ତି ।

**(ଟ) ସହରାଞ୍ଚଳ ସୀମା ବହିର୍ଭୁତ ଭୂ-ଅର୍ଜନ :**

କେନ୍ଦ୍ର ସରକାର ଏକ ଆଇନ୍ ଦ୍ୱାରା ତା ୧୭-୨-୭୬ରିଖ ଠାରୁ ନଗରାଞ୍ଚଳରେ ଖାଲି ପଡ଼ିଥିବା ଜମିର ସୀମା ନିର୍ଦ୍ଧାରଣ କରିଛନ୍ତି । ଏହି ଆଇନ୍‌ର ପରିସର ମଧ୍ୟରେ ଓଡ଼ିଶାର କେବଳ କଟକ ପୌରାଞ୍ଚଳ ଅନ୍ତର୍ଭୁକ୍ତ । କଟକରେ ଏହି ଆଇନ୍ ୧୯୭୬ ମସିହାରୁ ବଳବତ୍ତର ଥିଲେ ମଧ୍ୟ ୧୯୮୦ମସିହା ପର୍ଯ୍ୟନ୍ତ କୌଣସି ଉଦ୍‌ବୃତ୍ତ ଜମି ଅର୍ଜନ କରାଯାଇ ନଥିଲା । ବିଗତ ୮ ବର୍ଷ ମଧ୍ୟରେ ରାଜ୍ୟ ସରକାରଙ୍କ ତ୍ୱରାନ୍ୱିତ କାର୍ଯ୍ୟକ୍ରମ ଫଳରେ ମୋଟ୍ ୧୩୨.୬୩୪ ଏକର ଜମି ଅର୍ଜିତ କରାଯାଇ ଅଧିସୂଚନାମାନ ଜାରି କରାଯାଇଛି । ଏଥିମଧ୍ୟରୁ ଏ ୭୮.୩୨୩ ଡେସିମିଲ୍ ଜମି ହାତକୁ ନିଆଯାଇଛି । ଏହି ନିୟମରେ ଥିବା ବ୍ୟବସ୍ଥା ମୁତାବକ କଟକ ସହରରେ ବିଭିନ୍ନ ପୌର ଉନ୍ନୟନ ଯୋଜନାମାନଙ୍କରେ ତଥା ଶିକ୍ଷା, ସଂସ୍କୃତି, ଅଫିସ୍ ଓ ବାସଗୃହ ଇତ୍ୟାଦି ପାଇଁ ମୋଟ୍ ଏ ୪୪.୪୭୩ ଡେସିମିଲ୍ ଜମି ଆବଣ୍ଟନ କରାଯାଇଛି । ସପ୍ତମ ଯୋଜନା ଶେଷ ସୁଦ୍ଧା ଏହି ଉଦ୍‌ବୃତ୍ତ ଜମି ସଂଗ୍ରହ କାର୍ଯ୍ୟ ଶେଷ କରିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

ଉପରୋକ୍ତ ଯୋଜନାଭିତ୍ତିକ କାର୍ଯ୍ୟକ୍ରମ ବ୍ୟତୀତ ଓଡ଼ିଶାର ପୌର ସଂସ୍ଥାମାନେ ସରକାରୀ ଅନୁଦାନ ତଥା ଋଣ ବା ନିଜସ୍ୱ ପାଣ୍ଠିରୁ ଅର୍ଥ ବ୍ୟୟ କରି ବହୁ ଜନହିତକର କାର୍ଯ୍ୟମାନ କରୁଛନ୍ତି । ଏ ସବୁର ବିସ୍ତୃତ ବିବରଣୀ ଏଠାରେ ଦେବା ସମ୍ଭବ ନୁହେଁ । ଓଡ଼ିଶାର ଦୁଇଟି ମୁଖ୍ୟ ସହର ଭୁବନେଶ୍ୱର ଓ କଟକର କେତେକ କାର୍ଯ୍ୟ ସୁସ୍ପଷ୍ଟ ଭାବରେ ନିମ୍ନରେ ପ୍ରଦତ୍ତ କରାଗଲା ।

**ଭୁବନେଶ୍ୱର ପୌରପାଳିକା**

ବିଗତ ୮ ବର୍ଷ ମଧ୍ୟରେ ଏହି ପୌର ପାଳିକା ୪୨ ଲକ୍ଷ ୧୦ ହଜାର ଟଙ୍କା ବ୍ୟୟରେ ସହିଦ୍ ନଗର ଓ ନୟାପଲ୍ଲୀ ଅଞ୍ଚଳରେ ୩ଟି କଲ୍ୟାଣ ମଣ୍ଡପ ନିର୍ମାଣ କରିଛନ୍ତି ଓ ୧୭ ଲକ୍ଷ ୯୧ ହଜାର ଟଙ୍କା ବ୍ୟୟରେ ଆଉ ଦୁଇଟି କଲ୍ୟାଣ ମଣ୍ଡପ ନିର୍ମାଣ କରିବା ପାଇଁ ସ୍ଥିର କରିଛନ୍ତି । ଲୋକମାନଙ୍କ ଗମନାଗମନ ପାଇଁ ରାଜ୍ୟସରକାରଙ୍କର ୧୩ ଲକ୍ଷ ଟଙ୍କା ଅନୁଦାନ ଓ ନିଜସ୍ୱ ପାଣ୍ଠିରୁ ଖର୍ଚ୍ଚ କରି ୪ଟି ବଡ଼ବଡ଼ ଟାଉନ୍ ବସ୍ ପ୍ରଚଳନ କରାଇଛନ୍ତି । ୪୮ ଲକ୍ଷ ୪୨ ହଜାର ଟଙ୍କା ବ୍ୟୟରେ ପୁରୁଣା ଭୁବନେଶ୍ୱର, ସହିଦ୍‌ନଗର ଓ ଭୁବନେଶ୍ୱର ବସ୍ ଷ୍ଟାଣ୍ଡ ନିକଟରେ ବଜାର ପ୍ରକଳ୍ପମାନ ମଧ୍ୟ ନିର୍ମାଣ କରାଯାଇଛି । ସମଗ୍ର ସହରରେ ବିଭିନ୍ନ ଜାଗାରେ ୨୪ ଲକ୍ଷ ୪୮ ହଜାର ଟଙ୍କା ବ୍ୟୟରେ ୬ଟି ସୁଲଭ ଶୌଚାଳୟ ନିର୍ମାଣ କରାଯାଇଛି ଏବଂ ଆଉ ୨ଟି ନିର୍ମାଣ କରିବାକୁ ସିଦ୍ଧାନ୍ତ ଗ୍ରହଣ କରାଯାଇଛି । ସ୍ୱଳ୍ପ ମୂଲ୍ୟରେ ଯାତ୍ରୀମାନେ ରହିବା ପାଇଁ ୩୬ ଲକ୍ଷ ୪୮ ହଜାର ଟଙ୍କା ବ୍ୟୟରେ ୨୦୦ଟି ଶଯ୍ୟା ବିଶିଷ୍ଟ ଏକ ଯାତ୍ରୀ ନିବାସ ନିର୍ମାଣାଧୀନ ଅଛି । ରାସ୍ତା ଆଲୋକିତ କରିବା ପାଇଁ ୧,୩୨୭ ଟି ସ୍ୱର୍ଣ୍ଣାଭ ମର୍କୋରୀ ଆଲୋକର ବ୍ୟବସ୍ଥା କରାଯାଇଛି ଏବଂ ଚଳିତ ବର୍ଷରେ ୨୯ ଲକ୍ଷ ଟଙ୍କା ବ୍ୟୟରେ ଆଉ ୪୪୯ଟି ସ୍ୱର୍ଣ୍ଣାଭ ଆଲୋକ ଲଗାଇବାର ବ୍ୟବସ୍ଥା କରାଯାଇଛି । ଶଲ୍ୟ, ଭେଷଜ, ନିଦାନ, ଚକ୍ଷୁ, ଶିଶୁ, ସ୍ତ୍ରୀ ରୋଗ, କର୍ଣ୍ଣ, ଗଳା ଓ ନାଶା ଓ ଦନ୍ତ ବିଶେଷଜ୍ଞମାନଙ୍କ ସେବା ସହ ପୌର ପରିଷଦ ୮୫ଟି ଶଯ୍ୟା ବିଶିଷ୍ଟ ଏକ ଡାକ୍ତରଖାନା ପରିଚାଳନା କରୁଛନ୍ତି । ଏହାବ୍ୟତୀତ ପୌରାଞ୍ଚଳରେ ଦୁଇଟି ଏଲୋପାଥିକ୍ ଡାକ୍ତରଖାନା ଓ ୬ଟି ହୋମିଓପାଥିକ୍ ଡାକ୍ତରଖାନାର ମଧ୍ୟ ବ୍ୟବସ୍ଥା କରାଯାଇଛି ।

**କଟକ ପୌର ପାଳିକା**

କଟକ ଓଡ଼ିଶାର ପୁରାତନ ତଥା ପ୍ରସିଦ୍ଧ ନଗରୀ ହୋଇଥିବାରୁ ନଗର ଉନ୍ନୟନ ବ୍ୟତୀତ ଅନ୍ୟ ବିଭାଗମାନେ ମଧ୍ୟ କଟକର ସମୂହ ଉନ୍ନତି ପାଇଁ ବହୁ ବ୍ୟବସ୍ଥା କରୁଛନ୍ତି । କଟକର ସ୍ୱରିପଟେ ରିଙ୍ଗ୍‌ବନ୍ଧ ନିର୍ମାଣ ସହ ଏକ ତରଫା ରାସ୍ତା ନିର୍ମାଣ ଏବଂ ରାସ୍ତାଗୁଡ଼ିକରେ ଉଜ୍ଜ୍ୱଳ ଆଲୋକ ବ୍ୟବସ୍ଥା ସହ ୩୮ ଲକ୍ଷ ଟଙ୍କା ବ୍ୟୟରେ ଏକ ଅତ୍ୟାଧୁନିକ ଟାଉନ୍ ହଲ ୪୨ ଲକ୍ଷ ଟଙ୍କା ବ୍ୟୟରେ ଏକ ପାନ୍ଥ ନିବାସ , ୧୬ ଲକ୍ଷ ଟଙ୍କାରେ ଏକ ବିଦ୍ୟୁତ୍ ଶବଦାହ ଚୁଲା , ୭୦ ଲକ୍ଷ ଟଙ୍କା ବ୍ୟୟରେ ୭ଟି ସୁଲଭ ଶୌଚାଳୟ ଓ ୨୨ଟି ଅନ୍ୟାନ୍ୟ ଶୌଚାଳୟ, ୪ ଲକ୍ଷ ୫୦ ହଜାର ଟଙ୍କା ବ୍ୟୟରେ ଗୋପବନ୍ଧୁ ପାର୍କର ନବୀକରଣ, ୩୦ ଲକ୍ଷ ଟଙ୍କାରେ ମାଲ୍ ଗୋଦାମରେ ମାର୍କେଟ ନିର୍ମାଣ, ବସ୍ ଷ୍ଟାଣ୍ଡ, ଇନ୍‌ଡୋର ଷ୍ଟାଡ଼ିୟମ୍, ଉନ୍ନତ ଖେଳ ପଡ଼ିଆ, ଉନ୍ନତ ପାର୍କ, ପାଠାଗାର, ବିଦ୍ୟାଳୟ ଆଦି କୋଟି କୋଟି ଟଙ୍କା ବ୍ୟୟରେ ନିର୍ମାଣ କରାଯାଇଛି ।

ଏତଦ୍‌ବ୍ୟତୀତ କଟକ ଓ ଭୁବନେଶ୍ୱରରେ କାର୍ଯ୍ୟ କରୁଥିବା ଉନ୍ନୟନ ପ୍ରାଧିକାରୀମାନେ ନିଜନିଜ ପରିସର ମଧ୍ୟରେ ବହୁ ଉନ୍ନୟନ ଯୋଜନାମାନ ମଧ୍ୟ କାର୍ଯ୍ୟକାରୀ କରୁଛନ୍ତି । ସେମାନଙ୍କ ମଧ୍ୟରୁ କଟକର ମହାନଦୀ ବିହାର ଗୃହ ନିର୍ମାଣ ଯୋଜନା ତଥା ବିଡ଼ାନାସୀ ନୂତନ ପରିକଳ୍ପନା ଯୋଜନା ଓ ଜଗତପୁର ଟ୍ରକ ଟର୍ମିନାଲ ଯୋଜନା ଆଦି ଏବଂ ଭୁବନେଶ୍ୱରର ଗୃହନିର୍ମାଣ ଯୋଜନା, ଇନ୍ଦିରାପାର୍କ, କଳିଙ୍ଗ ଷ୍ଟାଡ଼ିୟମ୍ ପ୍ରିୟ ଦର୍ଶିନୀ ବଜାର ଆଦି ଉଲ୍ଲେଖ ଯୋଗ୍ୟ ।

ତଥାପି କଟକ ଓ ଭୁବନେଶ୍ୱରର ସାମୁହିକ ଉନ୍ନତି ପାଇଁ ରାଜ୍ୟ ସରକାର ସେଠାରେ ଗୋଟିଏ ଗୋଟିଏ ପୌର ନିଗମ ସୃଷ୍ଟି କରିବା ପାଇଁ ଏକ ବିଧେୟକ ବିଧାନ ସଭାରେ ଆଗତ କରିଛନ୍ତି । ଏହା ବିଧାନ ସଭାର ବିଚାରାଧୀନ ଅଛି ।



(୧) ଆମ ଦେଶର ସମ୍ବିଧାନ ଓ ଆଇନ କାନୁନକୁ ଅକ୍ଷରେ ଅକ୍ଷରେ ନାରୀ ଜାତିକୁ ସମ୍ମାନ ଦେବା ସଙ୍ଗେ ସଙ୍ଗେ ସେମାନଙ୍କର ଅଧିକାରକୁ ସାବ୍ୟସ୍ତ କରିବାକୁ ହେବ ଓ ସମାଜର କୁସଂସ୍କାରକୁ ଦୂର କରିବାକୁ ହେବ ।

# ଦାଦନ ଶ୍ରମିକଙ୍କ ସମସ୍ୟା

ଶ୍ରୀ ଭୂପାଳ ଚନ୍ଦ୍ର ମହାପାତ୍ର

ବିହୁ ପୂରାକାଳରୁ ଓଡ଼ିଶାର ଶ୍ରମିକମାନେ ଭାରତର ବିଭିନ୍ନ ରାଜ୍ୟକୁ ଦାଦନ ଶ୍ରମିକ ରୂପେ କାମ କରିବାକୁ ଯାଉଥିଲେ । ଏବେ ତା'ର ସଂଖ୍ୟା ହ୍ରାସ ପାଇଥିଲେ ମଧ୍ୟ ସମ୍ପୂର୍ଣ୍ଣରୂପେ ଏ ପ୍ରଥାର ବିଲୋପ କରାଯାଇ ପାରିନାହିଁ । ଏହା ମଧ୍ୟ ନିକଟ ଭବିଷ୍ୟତରେ ସମ୍ଭବ ନୁହେଁ । ଯେ କୌଣସି ଚିନ୍ତାଶୀଳ ବ୍ୟକ୍ତି ଗଭୀର ଭାବେ ଅନୁଶୀଳନ କଲେ ଜାଣି ପାରିବେ, ଆମ ରାଜ୍ୟରୁ ଯେପରି ଭାବେ ଲୋକମାନେ ଅନ୍ୟ ରାଜ୍ୟକୁ ଦାଦନ ଶ୍ରମିକ ରୂପେ କାମ କରିବାକୁ ଯାଉଛନ୍ତି, ସେହିପରି ଭାବେ ପଡ଼ୋଶୀ ରାଜ୍ୟରୁ ଲୋକମାନେ ଆମ ରାଜ୍ୟକୁ କାମ କରିବାକୁ ଦାଦନ ଶ୍ରମିକ ରୂପେ ଆସୁଛନ୍ତି । ଓଡ଼ିଶାର ୧୩ଟି ଜିଲ୍ଲାରେ ଅଣସଙ୍ଗଠିତ ଶ୍ରମିକମାନଙ୍କର ସଂଖ୍ୟା ଅଳ୍ପ ବହୁତେ ବଳକା ହେଉଥିଲେ ମଧ୍ୟ ଦାଦନ ଶ୍ରମିକଭାବେ ପୁରୀ ଏବଂ ଗଞ୍ଜାମ ଜିଲ୍ଲାରୁ ସର୍ବାଧିକ ଶ୍ରମିକ ଦେଶ ଏବଂ ଦେଶ ବାହାରକୁ ଅର୍ଥୋପାର୍ଜନ, ନୂତନ ସ୍ଥାନ ଦେଖିବାର ଅଭିପ୍ସା ସହିତ ପରିବାରର ଭରଣ ପୋଷଣ ପ୍ରଭୃତି ବିଭିନ୍ନ କାରଣ ପାଇଁ ଯାଉଥିବା ଜଣାଯାଏ । ସମୟେ ସମୟେ ଅସାଧୁ ମାଲିକ, ବିନା ପରିଶ୍ରମରେ ଅନ୍ୟର ପରିଶ୍ରମରୁ ଲାଭ ଉଠାଉଥିବା କେତେକ ଅସାଧୁ ଠିକାଦାରମାନଙ୍କ ଦ୍ୱାରା ଏହି ଶ୍ରମିକମାନେ ନିର୍ଯ୍ୟାତିତ ହେଉଥିବାର ସମ୍ବାଦ ଆମ ଦୃଷ୍ଟିକୁ ଆସିଛି । ଓଡ଼ିଶା ସରକାର ଜନସଚେତନ ପ୍ରତି ଅଗ୍ରାଧିକାର ଦେଉଥିବା ଦୃଷ୍ଟିରୁ ଆଗାମୀ ବର୍ଷମାନଙ୍କରେ ଦାଦନ ଶ୍ରମିକମାନଙ୍କର ସଂଖ୍ୟା ନିଶ୍ଚୟ ହ୍ରାସ ପାଇବ ।

ବର୍ଷର କିଛିମା ସମୟରେ ବିକଳ୍ପ କାମଧନ୍ଦା ଅଭାବରୁ ଏ ପ୍ରକାର ଅଣସଙ୍ଗଠିତ ଶ୍ରମିକ ଅନ୍ୟ ରାଜ୍ୟକୁ କିଛି ଅଗ୍ରୀମ ଅର୍ଥ ବା ଅଗ୍ରୀମ ନେଇ ଦାଦନ ଖଟିବା ପାଇଁ ଯାଉଥିବାର ପ୍ରଥା ପ୍ରାୟ ଏକଶହ ବର୍ଷରୁ ଊର୍ଦ୍ଧ୍ୱ । ସବୁ କ୍ଷେତ୍ରରେ ନହେଲେ ବି କେତେକ କ୍ଷେତ୍ରରେ ଅନ୍ୟ ରାଜ୍ୟରେ ଓଡ଼ିଆ ଦାଦନ ଶ୍ରମିକ ମଝିରେ ମଝିରେ ହଇରାଣ ହରକତ ହୋଇ ଘରକୁ ଫେରନ୍ତି । ଓଡ଼ିଆ ଦାଦନ ଶ୍ରମିକଙ୍କ ସୁରକ୍ଷା ପାଇଁ ୧୯୭୫ ମସିହା ପୂର୍ବରୁ କୌଣସି ସ୍ୱତନ୍ତ୍ର ଆଇନ୍ ନଥିଲା । ପ୍ରଥମେ ଓଡ଼ିଶା ଦାଦନ ଶ୍ରମିକ ଉଚ୍ଛେଦ ଓ ନିୟନ୍ତ୍ରଣ ଆଇନ ୧୯୭୫ ପ୍ରଣୟନ କରାଯାଇ ୧.୧.୧୯୭୬ ଠାରୁ ଲାଗୁ କରାଯାଇଥିଲା । ଏହା ଏକ ରାଜ୍ୟ ଆଇନ୍ ହୋଇଥିବା ଯୋଗୁଁ ଓଡ଼ିଶା ବାହାରେ ଦାଦନ ଖଟିବାକୁ ଯାଇ ଅନ୍ୟ ରାଜ୍ୟରେ ନିର୍ଯ୍ୟାତିତ ହେଉଥିବା ଦାଦନ ଶ୍ରମିକଙ୍କ ସୁରକ୍ଷା ପାଇଁ ଏହି ଆଇନ୍‌ର ପ୍ରୟୋଗ ଯେଉଁ ଅନ୍ତରାୟ ଦେଖାଦେଉଥିଲା । ଏଣୁ ୧୯୭୯ ମସିହାରେ ଆନ୍ତଃପ୍ରାଦେଶିକ ଶ୍ରମିକ ନିଯୁକ୍ତି ଓ ସେବା ସର୍ତ୍ତାବଳୀ ନିୟନ୍ତ୍ରଣ ଆଇନ୍ ନାମକ ଏକ ସ୍ୱତନ୍ତ୍ର କେନ୍ଦ୍ରୀୟ ଆଇନ୍ ପ୍ରଣୟନ କରାଯାଇ ଆମ ରାଜ୍ୟରେ ତାହା ୨.୧୦.୧୯୮୦ ଠାରୁ ଲାଗୁ କରାଯାଇଅଛି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଦାଦନ ଶ୍ରମିକମାନେ ମୁଖ୍ୟତଃ କୃଷି ଓ ଅଣସଙ୍ଗଠିତ ଶ୍ରମିକଶ୍ରେଣୀ ପରିସରଭୁକ୍ତ । ଚାଷ ବେଉସଣ ନଥିବା ସମୟରେ ସେମାନଙ୍କ ମଧ୍ୟରୁ ବିଶେଷ କରି ଗଞ୍ଜାମ ଓ ପୁରୀ ଜିଲ୍ଲାରୁ ଭାରତର ଅନ୍ୟ ରାଜ୍ୟ ଯଥା:— ପଶ୍ଚିମବଙ୍ଗ, ବିହାର, ହରିୟାନା, ଉତ୍ତରପ୍ରଦେଶ, ମହାରାଷ୍ଟ୍ର, ଆସାମ, ଜାମ୍ମୁ ଓ କାଶ୍ମୀର ପ୍ରଭୃତି ରାଜ୍ୟକୁ ଦାଦନ ଠିକାଦାର, ଖାତାଦାର ଓ ସର୍ଦ୍ଦାରଙ୍କ ଜରିଆରେ ଯାଆନ୍ତି । ସେମାନଙ୍କ ଯିବା ପଛରେ ଅଧିକା ମୂଲ ମଜୁରୀ କମାଇବାର ଲୋଭ ତଥା ନୂଆ ନୂଆ ଜାଗା ଦେଖିବାର ମୋହ ଦୁଇଟି ମୁଖ୍ୟ କାରଣ ରୂପେ ଜଣାଶୁଣା । ବହୁ କ୍ଷେତ୍ରରେ କିଛି ନବୁଝି ବିଭ୍ରାନ୍ତି ପ୍ରଲୋଭନର ବଶବର୍ତ୍ତୀ ହୋଇ ଏହି ଦାଦନ ଶ୍ରମିକମାନେ ହଇରାଣ ହରକତ ହେବା ସଙ୍ଗେସଙ୍ଗେ ସର୍ବନିମ୍ନ ମଜୁରୀ କମ୍ ପାଇ ଫେରୁଥିବା ଏକ ସାଧାରଣ କଥା ।

ଅଣସଙ୍ଗଠିତ ତଥା କୃଷି ଶ୍ରମିକଙ୍କ ସ୍ୱାଧିକାର ଏବଂ ସୁରକ୍ଷା ଏବେ ପ୍ରାଧାନ୍ୟ ଲାଭ କରିଛି । ସପ୍ତମ ପଞ୍ଚବାର୍ଷିକ ଯୋଜନାରେ ଏହି ମର୍ମରେ ଆରୋପିତ ଗୁରୁତ୍ୱ, ସଂଶୋଧିତ ବିଂଶସୂତ୍ରୀ କାର୍ଯ୍ୟକ୍ରମରେ ସେମାନଙ୍କ ପାଇଁ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ତଥା ଗ୍ରାମୀଣ ଶ୍ରମିକଙ୍କ ଅବସ୍ଥାର ଅନୁଶୀଳନ ଏବଂ ଆଶୁପ୍ରତିକାର ପାଇଁ ଜାତୀୟ ଗ୍ରାମୀଣ ଶ୍ରମ କମିଶନ ମୁତୟନ ଆଦି ପଦକ୍ଷେପ ସମେତ ରାଜ୍ୟ ସରକାର ଦାଦନ ଶ୍ରମିକଙ୍କର ସୁରକ୍ଷା ପାଇଁ ସବିଶେଷ ତତ୍ପର ଏହା ବଖାଣିବା ଅନାବଶ୍ୟକ । ଇତ୍ୟବସରରେ ଦାଦନ ଶ୍ରମିକଙ୍କ ସୁରକ୍ଷା ପାଇଁ ବଳବତ୍ତର ଆଇନ୍‌ର ପର୍ଯ୍ୟାପ୍ତ ପ୍ରୟୋଗ ତଥା ଅଭିଯୋଗର ପ୍ରତିକାର ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ପାଇଁ ପୁରୀଠାରେ ଏକ ସ୍ୱତନ୍ତ୍ର ଦାଦନ ସେଲ ଖୋଲାଯାଇ ଅଛି ଏବଂ ଜଣେ ସହକାରୀ ଶ୍ରମ କମିଶନର, ଜଣେ ସହକାରୀ ଶ୍ରମ ଅଫିସର ଓ ୪ ଜଣ ଗ୍ରାମୀଣ ଶ୍ରମନିରୀକ୍ଷକଙ୍କୁ ମୁତୟନ କରାଯାଇଅଛି । ପ୍ରଚଳିତ ଦାଦନ ଆଇନର ଖିଲାପକାରୀ ଦାଦନ ଠିକାଦାରଙ୍କ ବିରୁଦ୍ଧରେ ୧୯୮୭ ବର୍ଷ ଶେଷ ସୁଦ୍ଧା ୫୭୬ ଟି ଫୌଜଦାରୀ ମକଦ୍ଦମା ରୁଜୁ କରାଯାଇଅଛି । ଏହି ସମୟ ମଧ୍ୟରେ ଓଡ଼ିଶା ବାହାରେ ହଇରାଣ ହରକତ ହେଉଥିବା ଦାଦନ

ଶ୍ରମିକଙ୍କ ସଂପର୍କରେ ଖବର ପାଇଲାକ୍ଷଣି ୨୫ ଜଣ ପଦସ୍ଥ ଅଫିସରଙ୍କୁ ପଠାଇଯାଇଥିଲା । ସେମାନଙ୍କ ହସ୍ତକ୍ଷେପ ଫଳରେ ସଂପୃକ୍ତ ଦାଦନ ଶ୍ରମିକଙ୍କ ପ୍ରାପ୍ୟ ଓ ଫେରନ୍ତା ଗସ୍ତଖର୍ଚ୍ଚ ଦିଆଯାଇ ଗାଁକୁ ଫେରାଇ ଅଣାଯାଇଥିଲା । ୧୯୮୦ ମସିହାଠାରୁ ଇତ୍ୟବସରରେ ଅନ୍ୟ ରାଜ୍ୟରେ ଦାଦନ ଶ୍ରମିକ ରୂପେ କାମ କରିବାକୁ ଯାଇ କାର୍ଯ୍ୟ ସ୍ଥଳରେ ଦୁର୍ଘଟଣା ହେତୁ ଆହତ ଓ ମୃତ ଦାଦନ ଶ୍ରମିକଙ୍କ କ୍ଷତିପୂରଣ ନିମିତ୍ତ ୨୪୦ଟି ମାମଲା ଆଗତ ହୋଇଥିଲା ।ସେଥିରୁ ୧୦୩ଟି ମାମଲା ଅନ୍ୟ ରାଜ୍ୟର କ୍ଷତିପୂରଣ କମିଶନର ଆମ ରାଜ୍ୟକୁ ଫଇସଲା ପାଇଁ ପଠାଇଥିଲେ । ସେଥିରୁ ୧୦୦ଟି ମାମଲା ଫଇସଲା କରାଯାଇ ମୃତ ଦାଦନ ଶ୍ରମିକଙ୍କର ଆଇନତଃ ଉତ୍ତରାଧିକାରୀଙ୍କୁ ଷୋହଳଲକ୍ଷ ଚଉସ୍ତରୀ ହଜାର ପାଞ୍ଚଶହ ବାଉନ ଟଙ୍କା କ୍ଷତିପୂରଣ ଅର୍ଥ ବାବଦରେ ଦିଆଯାଇଅଛି ।

କେବଳ ଆନ୍ତଃ ପ୍ରବାସିକ ଶ୍ରମିକ ନିଯୁକ୍ତି ଓ ସେବା ସର୍ତ୍ତାବଳୀ ନିୟନ୍ତ୍ରଣ ଆଇନ ୧୯୭୯ ଓ ତତ୍ ପ୍ରଣୀତ ରାଜ୍ୟ ନିୟମାବଳୀ ୧୯୮୦ ର ଫଳପ୍ରଦ ପରିପାଳନ ନୁହେଁ, ନିଜର ନିରକ୍ଷରତା, ଅଜ୍ଞତା, ତଥା ସରଳତା ଯୋଗୁଁ ହଇରାଣ ହରକତ ହେଉଥିବା ଅଣ ସଂଗଠିତ ଦାଦନ ଶ୍ରମିକଙ୍କୁ ସେମାନଙ୍କର ସ୍ୱାଧିକାର ଏବଂ ସୁରକ୍ଷା ସଂପର୍କରେ ସଚେତ କରିବା ପାଇଁ ଶ୍ରମ ବିଭାଗ ପକ୍ଷରୁ ରାଜ୍ୟର ୮୦ଟି ବ୍ଲକରେ ୮୦ ଜଣ ଅବୈତନିକ ଶ୍ରମ ସଂଗଠକ ଏବଂ ୬୫ ଜଣ ଗ୍ରାମୀଣ ଶ୍ରମନିରୀକ୍ଷକଙ୍କୁ ମୁତୟନ କରାଯାଇଅଛି । ତାଛଡା, ଦାଦନ ଶ୍ରମିକ ଅନ୍ୟ ରାଜ୍ୟକୁ ଦାଦନ ଖଟିବାକୁ ଯିବା ପୂର୍ବରୁ କ'ଣ କ'ଣ ଜାଣିବା କଥା ଓ କରିବା କଥା ସେ ସଂପର୍କରେ ପ୍ରେସ ଇସ୍ତାହାର ବିଭିନ୍ନ ସଂବାଦପତ୍ର ଓ ଆକାଶବାଣୀ ମାଧ୍ୟମରେ ପ୍ରଚାର କରାଯାଇଅଛି । ଏହା ବ୍ୟତୀତ କୃଷି ସମେତ ୬୫ଟି ଅଣ ସଂଗଠିତ ସଂସ୍ଥାର ଅଣକୁଶଳୀ, ସମକୁଶଳୀ, କୁଶଳୀ ଶ୍ରମିକଙ୍କ ପାଇଁ ସମୟ ୮ ଘଣ୍ଟା ହାରରେ ଦୈନିକ ସର୍ବନିମ୍ନ ମଜୁରୀ ସଂଶୋଧନ କରାଯାଇ ବଳବତ୍ତର କରାଯାଇଅଛି । ଆଉ ୧୪ଟି ସଂସ୍ଥାର ଖଣ୍ଡହାର ମଜୁରୀ ନିର୍ଦ୍ଧାରଣ ଏବେ ଚୂଡାନ୍ତ ପର୍ଯ୍ୟାୟରେ ବିଚାରାଧୀନ ଅଛି । କେବଳ ସର୍ବନିମ୍ନ ମଜୁରୀ ହାରର ପ୍ରୟୋଗ ନୁହେଁ, କୃଷି ବେଉଷଣ ନଥିବା ସମୟରେ ଅଣସଂଗଠିତ ଶ୍ରମିକଙ୍କ ପାଇଁ ବିକଳ୍ପ ନିଯୁକ୍ତି ନିମିତ୍ତ ଆମ ରାଜ୍ୟରେ ଦ୍ରୁତ ଶିଳ୍ପାୟନ ପ୍ରକ୍ରିୟା ଏବେ ଚାଲୁ ରହିଛି । ତା ବ୍ୟତୀତ ଅଣ ସଂଗଠିତ ଗ୍ରାମୀଣ ଶ୍ରମିକଙ୍କର ଅର୍ଥନୈତିକ ପୁନରୁଦ୍ଧାର ନିମିତ୍ତ ଗରିବ ଗ୍ରାମୀଣଙ୍କ ଆର୍ଥିକ ଅଭ୍ୟୁତ୍ଥାନ କାର୍ଯ୍ୟକ୍ରମ (ଇ.ଆର.ଆର.ପି.) ସମନ୍ୱିତ ଗ୍ରାମୀଣ ପୁନର୍ଗଠନ ଯୋଜନା କାର୍ଯ୍ୟକ୍ରମ (ଆଇ.ଆର.ଆର.ପି., ଜାତୀୟ ଗ୍ରାମୀଣ ନିଯୁକ୍ତି କାର୍ଯ୍ୟକ୍ରମ (ଏନ୍.ଆର.ଆର.ଇ.ପି.) ପ୍ରଭୃତି ସ୍ୱତନ୍ତ୍ର ସହାୟକ କାର୍ଯ୍ୟକ୍ରମ ଉପରେ ପ୍ରାଧାନ୍ୟ ଦିଆଯାଉଅଛି ।

ଏଠାରେ ଉଲ୍ଲେଖନୀୟ ଦାଦନ ସମସ୍ୟା ବହୁ ବର୍ଷର । ଏହାର ସଂପୂର୍ଣ୍ଣ ନିବାରଣ ରାତାରାତି ସମ୍ଭବ ନୁହେଁ । ଆଗଠାରୁ ଦାଦନ ଶ୍ରମିକଙ୍କ ମଧ୍ୟରେ ସଚେତନତା କ୍ରମେ ବୃଦ୍ଧି ପାଉଛି । ଏଠାରେ ଉଲ୍ଲେଖନୀୟ ଯେ, ୧୯୮୩ ବର୍ଷ ମଧ୍ୟରେ ୭୪ ଜଣ ଲାଇସେନ୍ସ ପ୍ରାପ୍ତ ଠିକାଦାରଙ୍କ ଜରିଆରେ ୧,୫୫୦ ଜଣ ଦାଦନ ଶ୍ରମିକ ଅନ୍ୟ ରାଜ୍ୟକୁ ଦାଦନ ଖଟିବାକୁ ଯାଉଥିବା ବେଳେ ୧୯୮୬ ବର୍ଷ ମଧ୍ୟରେ ସେମାନଙ୍କର ସଂଖ୍ୟା ୧୩,୦୨୦ ଓ ୧୯୮୭ ବର୍ଷ ମଧ୍ୟରେ ସେମାନଙ୍କ ସଂଖ୍ୟା ୧୧,୬୦୦ ଥିଲା । ଏହା ଯେଉଁଳି ଆଶା ସଂଚାରୀ ସେଉଁଳି ଉଲ୍ଲେଖନୀୟ ।

ଦାଦନ ଶ୍ରମିକଙ୍କ ନିର୍ଯ୍ୟାତନା ଏକ ଭାବମୂର୍ତ୍ତି କ୍ଷୁଣ୍ଣକାରୀ ସମସ୍ୟା ଓ ଏହାର ଆଶୁ ନିରାକରଣ ଏକ ସାମୂହିକ ଦାୟ । ଏକ ଦିଗରୁ ଦାଦନ ଶ୍ରମିକଙ୍କ ଆଖି ଖୋଲିବା ଯେଉଁଳି ଆବଶ୍ୟକ ଅପର ଦିଗରୁ ସଂପୃକ୍ତ ଦାଦନ ଠିକାଦାର ଓ ଏଜେଣ୍ଟ ମାନଙ୍କର ଆଚରଣର ସମୟୋଚିତ ପରିବର୍ତ୍ତନ ସେହିଭଳି ଅପରିହାର୍ଯ୍ୟ । ଦାଦନ ଶ୍ରମିକମାନେ ଅନ୍ୟ ରାଜ୍ୟକୁ ଯିବା ପୂର୍ବରୁ କେଉଁଠିକୁ ଯାଉଛନ୍ତି ବା ଯିବେ, କି କାମ ଓ କେତେଦିନ ଖଟିବେ ଏବଂ କେଉଁ ହାରରେ ମଜୁରୀ ଓ ସୁବିଧା ଆଦି ପାଇବେ ତାହା ଭଲଭାବେ ବୁଝି ସୁଝି ଗୋଡ କାଢିବା ଆବଶ୍ୟକ । ସେହିଭଳି ସଂଗ୍ରହକାରୀ ଖାତାଦାର, ସର୍ଦ୍ଦାର, ଏଜେଣ୍ଟ ଓ ବାହାର ରାଜ୍ୟର ଠିକାଦାର, ମୁଖ୍ୟ ନିଯୁକ୍ତା ତଥା କାର୍ଯ୍ୟସ୍ଥଳୀର ପୁରା ସଠିକ ଠିକଣା ଆଦି ସ୍ଥାନୀୟ ଶ୍ରମ ଅଫିସରଙ୍କୁ ଜଣାଇ ବୁଝି ସୁଝି ଯିବା ସବୁଠାରୁ ବେଶୀ ଜରୁରୀ । ବେଆଇନ ଓ ନୀତି ବିରୁଦ୍ଧ ଭାବେ ଦାଦନ ଶ୍ରମିକ ଚାଲାଣ କରୁଥିବା ଠିକାଦାରମାନଙ୍କ କବଳରୁ ମୁକ୍ତି ପାଇବା ପାଇଁ ଶ୍ରମିକମାନେ ସେମାନଙ୍କ ଆଇନଗତ ଅଧିକାର ସମ୍ବନ୍ଧରେ ଭଲ ଭାବରେ ଅବହିତ ହେବା ଉଚିତ । ତାହା ନିମ୍ନରେ ଉଲ୍ଲେଖ କରାଗଲା ।

୧. ନିଜ ଭିଟାମାଟି ଛାଡ଼ି ରାଜ୍ୟ ବାହାରକୁ ଦାଦନ ନେଇ କାମ କରିବାକୁ ଗଲାପୂର୍ବରୁ ଶ୍ରମିକଙ୍କୁ ସଂପୃକ୍ତ ଠିକାଦାର ଗୋଟିଏ ପାଶ୍‌ବୁକ୍ ଦେବାକୁ ବାଧ୍ୟ । ଉକ୍ତ ପାଶ୍‌ବୁକ୍‌ରେ ସଂପୃକ୍ତ ଶ୍ରମିକଙ୍କ ଫଟୋ ରହିବା ସହିତ ରାଜ୍ୟ ବାହାରେ କେଉଁ ଯୋଜନାରେ, କେଉଁ ସ୍ଥାନରେ କେଉଁ ଠିକାଦାରଙ୍କ ଅଧୀନରେ, କେଉଁ କାମ ପାଇଁ ଦୈନିକ କେତେ ମଜୁରୀରେ ଉକ୍ତ ଶ୍ରମିକ ଯାଉଛନ୍ତି ତାହା ଉଲ୍ଲେଖ ରହିବ ।

ପୁନଶ୍ଚ ଉକ୍ତ 'ପାଶ୍‌ବୁକ୍'ରେ ଶ୍ରମିକଙ୍କୁ ରାଜ୍ୟ ବାହାରକୁ ନେବାର ତାରିଖ ରାଜ୍ୟ ବାହାରେ କାର୍ଯ୍ୟକ୍ଷେତ୍ରରେ ପହଞ୍ଚି କାର୍ଯ୍ୟରେ ବାହାଲ ହେବା ତାରିଖ, ମଜୁରୀକାଳ, କାର୍ଯ୍ୟ କରିଥିବା ମୋଟ ଦିନ, ଠିକା ହିସାବରେ କାର୍ଯ୍ୟ କରୁଥିଲେ ଠିକା କାର୍ଯ୍ୟର ହିସାବ, ସର୍ବମୋଟ ମଜୁରୀ, ମଜୁରି କାଟ, ଦିଆଯାଇଥିବା ମଜୁରୀର ହିସାବ, ଶ୍ରମିକଙ୍କର ନିକଟତମ ଉତ୍ତରାଧୀକାରୀଙ୍କର ନାମ ଉଲ୍ଲେଖ ରହିବ ଏବଂ ସେଥିରେ ମୁଖ୍ୟ ଠିକାଦାର କିମ୍ବା ତାଙ୍କର କ୍ଷମତାପ୍ରାପ୍ତ ପ୍ରତିନିଧିଙ୍କର ସ୍ୱାକ୍ଷର ରହିବ ।

୨. ଆଇନ ଅନୁଯାୟୀ ଲାଇସେନ୍ସ ପାଇଥିବା ଠିକାଦାର ହିଁ କେବଳ ଦାଦନ ଶ୍ରମିକଙ୍କୁ ରାଜ୍ୟ ବାହାରକୁ ନେଇପାରିବେ । ଲାଇସେନ୍ସ ପାଇନଥିବା ଠିକାଦାର ଦାଦନ ଶ୍ରମିକଙ୍କୁ ନେଲେ ତାହା ଆଇନଗତ ଅପରାଧ ହେବ । ଲାଇସେନ୍ସ ପାଇନଥିବା ଠିକାଦାର ବା ଖାତାଦାରଙ୍କର ଚାଟୁବାକ୍ୟ ବା ପ୍ରଲୋଭନର ବଶବର୍ତ୍ତୀ ହୋଇ କୌଣସି ଦାଦନ ଶ୍ରମିକ ରାଜ୍ୟ ବାହାରକୁ ଯିବା ଉଚିତ ନୁହେଁ । କାରଣ ଲାଇସେନ୍ସ ନପାଇଥିବା ଠିକାଦାରଙ୍କ ଦ୍ୱାରା ମୁତୟନ ହୋଇଥିଲେ ଶ୍ରମିକଙ୍କୁ କୌଣସି ଆଇନ୍‌ଗତ ସୁବିଧା ମିଳିବ ନାହିଁ । ଅନ୍ୟ ରାଜ୍ୟର କାର୍ଯ୍ୟକ୍ଷେତ୍ରକୁ ପୂର୍ବରୁ ଦାଦନ ଶ୍ରମିକମାନେ ତଦାରଖ କରିବା କଥା ଯେ, ଯେଉଁ ଠିକାଦାର ସେମାନଙ୍କୁ ନେଉଛନ୍ତି ତାଙ୍କ ପାଖରେ ଲାଇସେନ୍ସ ଅଛି ।

୩. ସଂପୃକ୍ତ ବାହାର ରାଜ୍ୟ ସରକାରଙ୍କ ଦ୍ୱାରା ଧାର୍ଯ୍ୟ କରାଯାଇଥିବା ସର୍ବନିମ୍ନ ମଜୁରୀଠାରୁ କମ୍ ମଜୁରୀ କୌଣସି ଦାଦନ ଶ୍ରମିକଙ୍କୁ ଦିଆଯିବ ନାହିଁ ।

୪. ମାସିକ ମଜୁରୀର ଅଧା କିମ୍ବା ପଅଁଷଠି ଟଙ୍କା ଏ ଦୁଇଟି ମଧ୍ୟରୁ ଯେଉଁଟି ଅଧିକ ତାହା ସ୍ଥାନାନ୍ତର ଭତ୍ତା ହିସାବରେ ରାଜ୍ୟ ବାହାରକୁ ଯିବା ପୂର୍ବରୁ ଦାଦନ ଶ୍ରମିକ ପାଇବେ ଏବଂ ଏହା ଶ୍ରମିକଙ୍କ ମଜୁରୀରୁ କଟା ଯିବନାହିଁ ।

୫. ନିଜ ଗ୍ରାମରୁ ବାହାର ରାଜ୍ୟର କାର୍ଯ୍ୟକ୍ଷେତ୍ର ପର୍ଯ୍ୟନ୍ତ ଯିବାକୁ ଏବଂ ସେଠାରୁ ନିଜ ଘରକୁ ଫେରିଆସିବା ପାଇଁ ଆବଶ୍ୟକ ଯାତ୍ରା ଖର୍ଚ୍ଚ ସଂପୃକ୍ତ ଠିକାଦାର ବା ଖାତାଦାରଙ୍କ ଠାରୁ ପାଇବା ପାଇଁ ହକ୍‌ଦାର ହେବେ । ଏହାଛଡା, ଯିବା ଆସିବାରେ ଯେତେଦିନ ଲାଗିବ ସେ ଦିନମାନଙ୍କ ପାଇଁ ମଜୁରୀ ସଂପୃକ୍ତ ଶ୍ରମିକ ପାଇବ ।

୬. ବାହାର ରାଜ୍ୟରେ କାର୍ଯ୍ୟକ୍ଷେତ୍ରରେ ବାସ କରିବା ପାଇଁ ଘର ଓ ମାଗଣା ଚିକିତ୍ସା ପାଇବା ପାଇଁ ଦାଦନ ଶ୍ରମିକମାନେ ହକ୍‌ଦାର ହେବେ ।

୭. କାର୍ଯ୍ୟକରୁଥିବା ସ୍ଥାନରେ ଠିକ୍ ସମୟରେ ମଜୁରୀ, ରହିବା ପାଇଁ ଘର, ମାଗଣା ଚିକିତ୍ସା, ଶୀତଲୁଗା, ଦୁର୍ଘଟଣା ଜନିତ କ୍ଷତିପୂରଣ ଆଦି ମିଳିବାରେ ଅସୁବିଧା ହେଲେ, ସଂପୃକ୍ତ ଶ୍ରମିକ ଠିକାଦାରଙ୍କ ବିରୁଦ୍ଧରେ ଉକ୍ତ ରାଜ୍ୟର ଶ୍ରମ ବିଭାଗର ଅଫିସର କିମ୍ବା ଶ୍ରମ ଦପ୍ତର, ଭୁବନେଶ୍ୱରଙ୍କୁ ତୁରନ୍ତ ଜଣାଇବେ ।

୮. ଦାଦନ ଶ୍ରମିକ ନିଜ ଗ୍ରାମ ଛାଡ଼ି କୌଣସି ଠିକାଦାରଙ୍କ ଜରିଆରେ ବାହାର ରାଜ୍ୟକୁ ଯିବା ପୂର୍ବରୁ କେଉଁ ଠିକାଦାରଙ୍କ ସହିତ କେଉଁ ରାଜ୍ୟର କେଉଁ ସ୍ଥାନକୁ କାମ କରିବାକୁ ଯାଉଛନ୍ତି ତାହା ସ୍ଥାନୀୟ ଶ୍ରମ ଅଫିସର/ପୁଲିସ ଥାନାରେ ଜଣାଇବେ ।

୯. କାର୍ଯ୍ୟ କ୍ଷେତ୍ରରେ କୌଣସି ଦୁର୍ଘଟଣାରେ କୌଣସି ଦାଦନ ଶ୍ରମିକଙ୍କର ମୃତ୍ୟୁ ହେଲେ ତାଙ୍କର ଉତ୍ତରାଧିକାରୀ ଏବଂ ଦୁର୍ଘଟଣାରେ ସାଙ୍ଘାତିକ ଭାବରେ ଆହତ ହୋଇଥିବା ଶ୍ରମିକ ନିଜେ ଘଟଣାର ବିବରଣୀ ଓଡ଼ିଶା ତଥା ସଂପୃକ୍ତ ରାଜ୍ୟର କମିଶନରମାନଙ୍କୁ ତାର ବାର୍ତ୍ତା ଦ୍ୱାରା ତୁରନ୍ତ ଜଣାଇବେ ।

ଭାଗବତରେ ଉଲ୍ଲେଖ ଅଛି,

"ବୁଦ୍ଧି ବିସ୍ତରି କାମ କଲେ, ସମାଦ ନପଡଇ ଭଲେ" ।

# ଓଡ଼ିଶାରେ ସାମାଜିକ ବନୀକରଣ




ଶ୍ରୀ ଡମ୍ବରୁଧର ଉଲାକା

ଆମ ରାଜ୍ୟର ମୋଟ୍ ଭୌଗଳିକ କ୍ଷେତ୍ରଫଳ ୧,୫୫,୮୪୨ ବର୍ଗ କି.ମି. । ତନ୍ମଧ୍ୟରୁ ମୋଟ୍ ଜଙ୍ଗଲ କ୍ଷେତ୍ର ୫୯,୯୬୩ ବର୍ଗ କି.ମି., ଯାହାକି ରାଜ୍ୟର ସମସ୍ତ ଭୌଗଳିକ କ୍ଷେତ୍ରର ପ୍ରାୟ ଶତକଡା ୩୮ ଭାଗ । ଦେଶର ଜଙ୍ଗଲ କ୍ଷେତ୍ରର ଏହା ପ୍ରାୟ ଶତକଡା ୮ ଭାଗ । ମୋଟ୍ ଜଙ୍ଗଲ କ୍ଷେତ୍ର ମଧ୍ୟରୁ ପ୍ରାୟ ୨୫,୦୪୨ ବର୍ଗ କି.ମି. ଆରକ୍ଷିତ ଜଙ୍ଗଲ, ୧୮,୦୮୪ ବର୍ଗ କି.ମି. ସୀମାଙ୍କିତ ସଂରକ୍ଷିତ ଜଙ୍ଗଲ, ୧୬,୮୨୨ ବର୍ଗ କି.ମି. ଅସୀମାଙ୍କିତ ସଂରକ୍ଷିତ ଜଙ୍ଗଲ ଏବଂ ୧୫ ବର୍ଗ କି.ମି. ବିନା ଶ୍ରେଣୀଭୁକ୍ତ ଜଙ୍ଗଲ ଅଟେ ।

ପ୍ରତି ବର୍ଷ ବହୁଳ ପରିମାଣରେ ଜଙ୍ଗଲ କ୍ଷୟ ଘଟୁଛି । ଅଳ୍ପ ବର୍ଷ ତଳେ ନ୍ୟାସନାଲ୍ ରିମୋଟ୍ ସେନ୍‌ସିଂ ଏଜେନ୍‌ସିଙ୍କ ଦ୍ୱାରା ହୋଇଥିବା ଏକ ସର୍ଭେରୁ ଜଣା ପଡୁଛି ଯେ ୧୯୮୧-୮୨ ମସିହା ବେଳକୁ ଜଙ୍ଗଲ ଜମି ୩୯,୪୨୫ ବର୍ଗ କି.ମି. ରହିଛି ଯାହାକି ଭୌଗଳିକ କ୍ଷେତ୍ରଫଳର ପ୍ରାୟ ଶତକଡା ୨୫.୩୧ । କେବଳ ସେତିକି ନୁହେଁ ଏହି ଜଙ୍ଗଲ ଜମି ମଧ୍ୟରୁ ଭଲ ଜଙ୍ଗଲ ଥିବା ଅଞ୍ଚଳ ୩୨,୦୫୯ ବର୍ଗ କି.ମି. ଯାହାକି ଭୌଗଳିକ କ୍ଷେତ୍ରଫଳର ପ୍ରାୟ ଶତକଡା ୨୦.୬୩ । ଜଙ୍ଗଲ କ୍ଷୟ ରୋକିବା ଦିଗରେ ସରକାର ବନ ସଂରକ୍ଷଣ କର୍ମଚାରୀଙ୍କ ସଂଖ୍ୟା ତଥା ଏ.ପି.ଆର୍. ଫୋର୍ସ ସଂଖ୍ୟା ବୃଦ୍ଧି କରିଛନ୍ତି ଏବଂ ନିକଟ ଭବିଷ୍ୟତରେ ଏହା ଅଧିକ ବୃଦ୍ଧି କରାଯିବ । ମାତ୍ର ଏହି ସଂଖ୍ୟା ବୃଦ୍ଧି କରିଦେଲେ ଯେ ଜଙ୍ଗଲ କ୍ଷୟର ପୂର୍ଣ୍ଣ ସମାଧାନ ହୋଇଯାଇ ପାରିବ, ତାହା ନୁହେଁ । ଜଙ୍ଗଲ କ୍ଷୟକୁ ଭରଣା କରିବା ନିମିତ୍ତ ନୂତନ ବୃକ୍ଷ ରୋପଣ ବହୁଳ ପରିମାଣରେ ଆବଶ୍ୟକ ।

ଏହି ପରିସ୍ଥିତିକୁ ଲକ୍ଷ୍ୟ ରଖି ଓଡ଼ିଶା ସରକାର ଷଷ୍ଠ ଯୋଜନାର ଆରମ୍ଭରୁ ବ୍ୟାପକ ବୃକ୍ଷ ରୋପଣ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ପ୍ରଥମ ପଞ୍ଚବାର୍ଷିକ ଯୋଜନାରୁ ପଞ୍ଚମ ପଞ୍ଚବାର୍ଷିକ ଯୋଜନା ଶେଷ ପର୍ଯ୍ୟନ୍ତ ୨,୨୦,୪୨୯ ହେକ୍ଟର ଜମିରେ ବୃକ୍ଷ ରୋପଣ କରାଯାଇ ଥିବା ସ୍ଥଳେ ଷଷ୍ଠ ପଞ୍ଚବାର୍ଷିକ ଯୋଜନା ମଧ୍ୟରେ ୧,୬୦,୮୯୬ ହେକ୍ଟର ଜମିରେ ବୃକ୍ଷ ରୋପଣ କରାଯାଇଅଛି । ସେହିପରି ୫ମ ପଞ୍ଚବାର୍ଷିକ ଯୋଜନା ଶେଷ ସୁଦ୍ଧା ମାତ୍ର ୩୦,୦୦୦ ହେକ୍ଟର କ୍ଷୟ ପ୍ରାପ୍ତ ଜଙ୍ଗଲରେ ଥଇଥାନ କାର୍ଯ୍ୟକ୍ରମ ସଂପାଦିତ ହୋଇଥିଲା ବେଳେ ଷଷ୍ଠ ପଞ୍ଚବାର୍ଷିକ ଯୋଜନାରେ ୫୭,୬୭୦ ହେକ୍ଟର କ୍ଷୟପ୍ରାପ୍ତ ଜଙ୍ଗଲରେ ଥଇଥାନ କାର୍ଯ୍ୟକ୍ରମ ସଂପାଦନ କରାଯାଇଅଛି । ୫ମ ପଞ୍ଚବାର୍ଷିକ ଯୋଜନା ଶେଷ ସୁଦ୍ଧା ୨,୦୦୦ କି.ମି. ସଡକ କଡରେ ପଥପାର୍ଶ୍ୱ ବନୀକରଣ କରାଯାଇ ଥିବା ସ୍ଥଳେ ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାଳରେ ୧,୯୮୫ କି.ମି. ପଥପାର୍ଶ୍ୱ ବନୀକରଣ କରାଯାଇଅଛି । ୫ମ ପଞ୍ଚବାର୍ଷିକ ଯୋଜନା ସୁଦ୍ଧା ଲୋକମାନଙ୍କୁ ମାଗଣାରେ ଚାରା ବଣ୍ଟନ କାର୍ଯ୍ୟକ୍ରମ ଅତି ନଗଣ୍ୟ । କେବଳ ୪୫ ଲକ୍ଷ ଚାରା ବଣ୍ଟନ କରାଯାଇଥିଲା । ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାଳରେ ମାଗଣା ଚାରା ବଣ୍ଟନର ସଂଖ୍ୟା ୪୯୪ ଲକ୍ଷରେ ପହଞ୍ଚିଛି । ୧୯୮୦-୮୧ ମସିହା ପରେ ବୃକ୍ଷ ରୋପଣ କାର୍ଯ୍ୟକ୍ରମ ବର୍ଷକୁ ବର୍ଷ ଦ୍ରୁତତର କରାଯାଇ ଅଛି ଏବଂ ଅଧିକ କ୍ଷେତ୍ରରେ ବୃକ୍ଷ ରୋପଣ କାର୍ଯ୍ୟକ୍ରମ ସଂପାଦନ କରାଯାଇଅଛି । ୧୯୮୧-୮୨ ମସିହାରୁ ୧୯୮୭-୮୮ ମସିହା ପର୍ଯ୍ୟନ୍ତ ବୃକ୍ଷ ରୋପଣ, ଥଇଥାନ, ପଥପାର୍ଶ୍ୱ ବନୀକରଣ ଏବଂ ମାଗଣାରେ ଚାରା ଗଛ ବଣ୍ଟନର ଏକ ହିସାବ ନିମ୍ନରେ ପ୍ରଦତ୍ତ ହେଲା ।



| ବର୍ଷ | ବୃକ୍ଷରୋପଣ (ହେକ୍ଟରରେ) | ଅଭୟାନ (ହେକ୍ଟରରେ) | ପଥପାର୍ଶ୍ୱ ବୃକ୍ଷ ରୋପଣ (ସଡକ କି.ମି.ରେ) | ମାଗଣାରେ ଚାରା ଗଛ ବଣ୍ଟନ (ଲକ୍ଷରେ) |
|---|---|---|---|---|
| (୧) | (୨) | (୩) | (୪) | (୫) |
| ୧୯୮୧-୮୨ | ୨୪,୦୫୪ | ୬,୬୩୧ | ୪୦.୫ | ୬୬.୧୮ |
| ୧୯୮୨-୮୩ | ୨୬,୬୧୯ | ୧୪,୩୨୬ | ୧୩୭ | ୧୭୪.୭୩ |
| ୧୯୮୩-୮୪ | ୪୨,୧୦୮ | ୨୭,୦୬୧ | ୪୧୫ | ୧୧୧.୦୦ |
| ୧୯୮୪-୮୫ | ୪୪,୪୧୨ | ୧,୩୯୧ | ୧୭୨ | ୯୬.୭୮ |
| ୧୯୮୫-୮୬ | ୩୮,୪୫୫.୫ | ୩୭,୭୨୫ | ୧୯୪୫.୬ | ୧୪୦.୩୫ |
| ୧୯୮୬-୮୭ | ୪୮,୬୭୮.୫ | ୪୧,୨୪୮ | ୧୦୦୭ | ୧୮୯.୪୦ |
| ୧୯୮୭-୮୮ | ୫୦,୩୫୭.୫ | ୨୮,୨୪୫ | ୨୦୮୬.୦୬ | ୧୭୭.୧୫ |



ବୃକ୍ଷ ରୋପଣ କାର୍ଯ୍ୟକ୍ରମକୁ ଅଧିକ ବ୍ୟାପକ ତଥା ତ୍ୱରାନ୍ୱିତ କରିବା ନିମିତ୍ତ ରାଜ୍ୟ ସରକାର ୧୯୮୫-୮୬ ମସିହାରୁ ଏକ ବୃକ୍ଷ ରୋପଣ ନିଗମ ସ୍ଥାପନ କରିଛନ୍ତି । ସ୍ୱିଡେନ୍ ସରକାରଙ୍କ ସହାୟତାରେ ଓଡ଼ିଶା ସାମାଜିକ ବନୀକରଣ ପ୍ରକଳ୍ପ ପାଞ୍ଚ ବର୍ଷ ପାଇଁ ୧୯୮୩-୮୪ରୁ କାର୍ଯ୍ୟକାରୀ ହୋଇଅଛି । ଏହି ପ୍ରକଳ୍ପ ଆଉ ୫ ବର୍ଷ କାର୍ଯ୍ୟ କରିବା ପାଇଁ ନୀତିଗତ ଭାବରେ ନିଷ୍ପତ୍ତି ଗ୍ରହଣ କରାହୋଇ ସାରିଛି । ପ୍ରଥମ ପର୍ଯ୍ୟାୟର ୫ ବର୍ଷ ମଧ୍ୟରେ ଏହି ପ୍ରକଳ୍ପ ରାଜ୍ୟର ୫,୦୦୦ ଗ୍ରାମରେ ବୃକ୍ଷ ରୋପଣ କାର୍ଯ୍ୟକ୍ରମ ସଂପାଦନ କରିଛନ୍ତି ଏବଂ ଦ୍ୱିତୀୟ ପର୍ଯ୍ୟାୟରେ (୧୯୮୮-୮୯ରୁ ୧୯୯୨-୯୩ ମସିହା ମଧ୍ୟରେ) ଏହି କାର୍ଯ୍ୟକ୍ରମ ଅଧିକ ୮,୫୦୦ ଗ୍ରାମରେ କାର୍ଯ୍ୟକାରୀ କରାଯିବା ପାଇଁ ପ୍ରସ୍ତାବ ରହିଛି । ପ୍ରଧାନ ମୁଖ୍ୟ ବନ ସଂରକ୍ଷକଙ୍କ ଅଧୀନରେ ଥିବା ରାଜ୍ୟ କ୍ଷେତ୍ରୀୟ ଡିଭିଜନ୍‌ଗୁଡ଼ିକ କରିଆରେ ମଧ୍ୟ ବୃକ୍ଷ ରୋପଣ ତଥା ଅଙ୍ଗଥାନ କାର୍ଯ୍ୟକ୍ରମ ସଂପାଦନ କରାଯାଇ ଅଛି । ଏତଦ୍‌ବ୍ୟତୀତ ଓଡ଼ିଶା ବନ ନିଗମ ଓ ଶିମିଳିପାଳ ବନ ଉନ୍ନୟନ ନିଗମ ବୃକ୍ଷ ରୋପଣ କାର୍ଯ୍ୟମାନ ହାତକୁ ନେଇଛନ୍ତି ।

ଓଡ଼ିଶାରେ ପରୀକ୍ଷା ମୂଳକ ଭାବରେ ରବର ବୃକ୍ଷ ମଧ୍ୟ କରାଗଲାଣି । ଢେଙ୍କାନାଳ, ମୟୂରଭଞ୍ଜ, ବାଲେଶ୍ୱର, କଟକ, ପୁରୀ ଏବଂ କେନ୍ଦୁଝର ଜିଲ୍ଲା ମାନଙ୍କରେ ରବର ବୃକ୍ଷ ରୋପଣ କରିବା ପାଇଁ ରବର ବୋର୍ଡ ଅନୁକୂଳ ରିପୋର୍ଟମାନ ଦେଇଅଛନ୍ତି । ରବର ବୋର୍ଡଙ୍କ ପରାମର୍ଶକ୍ରମେ ଓଡ଼ିଶା ବନ ନିଗମ ପୁରୀ ଓ କଟକ ଜିଲ୍ଲାରେ, ଓଡ଼ିଶା ବୃକ୍ଷ ରୋପଣ ଉନ୍ନୟନ ନିଗମ ଢେଙ୍କାନାଳ ଓ ବାଲେଶ୍ୱର ଜିଲ୍ଲାରେ ଏବଂ ଶିମିଳିପାଳ ବନ ଉନ୍ନୟନ ନିଗମ ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାରେ ରବର ବୃକ୍ଷ ରୋପଣ କରିବେ । ପୁରୀ ଡିଭିଜନର 'ଧନି' ଜଙ୍ଗଲରେ ଓଡ଼ିଶା ବନ ନିଗମ ଦ୍ୱାରା ପରୀକ୍ଷାମୂଳକ ଭାବେ ୬୪ ହେକ୍ଟର ଜମିରେ ରବର ବୃକ୍ଷ ରୋପଣ କରାଯାଇଅଛି ଓ ତାହା ଖୁବ୍ ଭଲ ହୋଇଛି ରାଜ୍ୟରେ ରବର ବୃକ୍ଷକୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ରବର ବୋର୍ଡ ଭୁବନେଶ୍ୱରଠାରେ ଏକ ଆଞ୍ଚଳିକ କାର୍ଯ୍ୟାଳୟ ଖୋଲିଅଛନ୍ତି ।

ବ୍ୟାପକ ବୃକ୍ଷ ରୋପଣ କାର୍ଯ୍ୟକ୍ରମ ପ୍ରଚଳନ କରାଯାଇଥିଲେ ମଧ୍ୟ ଏସବୁକୁ ତଥା ବର୍ତ୍ତମାନ ଥିବା ଜଙ୍ଗଲକୁ ଯଦି ରକ୍ଷା କରାଯାଇ ନପାରେ, ତେବେ ଆଶାନୁରୂପ ସାଫଲ୍ୟ ମିଳିବ ନାହିଁ । ବୃକ୍ଷ ରୋପଣ ତଥା ଉପସ୍ଥିତ ଜଙ୍ଗଲର ରକ୍ଷଣାବେକ୍ଷଣ ସମ୍ବନ୍ଧରେ ସରକାର ଯଥା ସମ୍ଭବ ଉଦ୍ୟମ କରୁଛନ୍ତି । ମାତ୍ର ଜଙ୍ଗଲର ସୁରକ୍ଷା ଲୋକମାନଙ୍କ ଉପରେ ବେଶୀ ନିର୍ଭର କରେ । ପ୍ରତ୍ୟେକ ଗ୍ରାମରେ ଗ୍ରାମବାସୀ ଏକତାବଦ୍ଧ ଭାବରେ ତାଙ୍କ ନିଜ ଦରକାରରେ ଲାଗୁଥିବା ଏହି ବୃକ୍ଷ ରୋପଣ ଅଞ୍ଚଳ ତଥା ବର୍ତ୍ତମାନ ଜଙ୍ଗଲ ରକ୍ଷା କରିବା ଦାୟିତ୍ୱ ବହନ କରିବା ଉଚିତ୍ । ○








ଯୌତୁକ ବିରୁଦ୍ଧରେ ଅତି କଠୋର ଆଇନ୍ କରାଯିବା ସତ୍ତ୍ୱେ ଅନେକ ଲୋକ ଯୌତୁକ ଆଇନ୍‌କୁ ଆଖି ମିଟିକା ମାରି ଯୌତୁକ ପ୍ରଥାକୁ ସମାଜରେ ଚଳେଇବା ପାଇଁ ଚେଷ୍ଟା କରୁଛନ୍ତି । କେବଳ ଆଇନ୍ ବଳରେ କୁସଂସ୍କାର ଦୂର କରାଯାଇ ପାରିବ ନାହିଁ । ସେଥିପାଇଁ ଶିକ୍ଷାର ବିକାଶ ଓ ଜନଜାଗରଣର ଆବଶ୍ୟକତା ରହିଛି । ଏଦିଗରେ ଉଭୟ ନାରୀ ଓ ପୁରୁଷ କାନ୍ଧକୁ କାନ୍ଧ ମିଳାଇ ଆନ୍ଦୋଳନ କରିବା ଦରକାର ।

# ଓଡ଼ିଶାରେ ସାଂସ୍କୃତିକ ବିକାଶ



ଶ୍ରୀ ଶରତ ରାଉତ

କପିଳ ସଂହିତାରେ ବର୍ଣ୍ଣିତ ଅଛି :

ବର୍ଷାଣାଂ ଭାରତ ଶ୍ରେଷ୍ଠ
ଦେଶାନାଂ ଉତ୍କଳ ଶ୍ରୁତଃ
ଉତ୍କଳସ୍ୟ ସମଂ ଦେଶ
ଦେଶନାସ୍ତି ମହୀତଳେ ॥

ଯୁଗେ ଯୁଗେ ପୁରାଣ ପୃଷ୍ଠାରୁ ଏ ପର୍ଯ୍ୟନ୍ତ ଆମ ଦେଶ ଭାରତ କଳା, ସଂସ୍କୃତି, ସାହିତ୍ୟ, ଧର୍ମ, ଦର୍ଶନ ଓ ବିଜ୍ଞାନ କ୍ଷେତ୍ରରେ ବିଶ୍ୱର ଶ୍ରେଷ୍ଠ ଦେଶ ରୂପେ ସମ୍ମାନ ପାଇ ଆସିଛି ଏବଂ ଠିକ୍ ସେହି ବିସ୍ତାରରେ ଭାରତବର୍ଷର ସଭ୍ୟତା ଓ ସଂସ୍କୃତିର କ୍ରମ ବିକାଶରେ ପ୍ରାଚୀନ କଳିଙ୍ଗ, କୋଶଳ, ଉତ୍କଳ ଏବଂ ଆଜିର ଓଡ଼ିଶା ବିଭିନ୍ନ ଦିଗରେ ମହିମାନ୍ୱିତ କରିଥିବାରୁ ଆମ ରାଜ୍ୟ ଶ୍ରେଷ୍ଠତ୍ୱ ବଜାୟ ରଖିଛି । ବହୁ ଭାଷା, ବହୁ ଧର୍ମ, ବହୁ ବିଶ୍ୱାସ ଭଳି ବହୁ ବିଭିନ୍ନତା ମଧ୍ୟରେ ଐକ୍ୟ ଭାବକୁ ଯୁଗଯୁଗ ଧରି ପ୍ରତିଷ୍ଠିତ କରାଇ ରଖିବା ଲାଗି ଯେଉଁ ସଂସ୍କାରକୁ ମୂଳ ଆଧାର ଭାବେ ଗ୍ରହଣ କରି ଏ ଭୂମିରେ ରୂପାୟିତ କରାଯାଇଛି, ତାହା ହେଉଛି ଭାରତୀୟ ସଂସ୍କୃତି । ଏକରେ ଅନେକ ଏବଂ ଅନେକରେ ଏକ ପ୍ରତୀତିହିଁ ଭାରତୀୟ ସଂସ୍କୃତିର ବୈଶିଷ୍ଟ୍ୟ । ତେଣୁ ଭାରତୀୟ ସଭ୍ୟତା ଓ ସଂସ୍କୃତି ଇତିହାସର ବନ୍ଧୁର ପଥରେ ବହୁ ଉତ୍‌ଥାନ ପତନ ମଧ୍ୟରେ ଗତି କରି ଏହି ମହାନ ପରମ୍ପରାକୁ ସଞ୍ଜୀବିତ ଓ ତେଜୋଦୀପ୍ତ କରି ରଖିଛି ଏବଂ ସମଗ୍ର ବିଶ୍ୱକୁ ସେହି ଦୀପ୍ତିରେ ଉଦ୍‌ଭାସିତ କରୁଅଛି । ଏହି ଭାରତୀୟ ସଂସ୍କୃତି ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ସବୁ ଅଞ୍ଚଳର ମହନୀୟ ଦାନରେ ସୁସମୃଦ୍ଧ ହୋଇଛି ଏବଂ ଏହି କ୍ରମ ବର୍ଦ୍ଧିଷ୍ଣୁ ସାଂସ୍କୃତିକ ଚେତନାକୁ ସମୃଦ୍ଧ ଓ ରୁଚିଶୀଳ କରିବା ପାଇଁ ହରିୟାନା ଓ ଗୁଜୁରାଟଠାରୁ ଆରମ୍ଭ କରି ଓଡ଼ିଶା ଓ ବଙ୍ଗ ପର୍ଯ୍ୟନ୍ତ ଏବଂ କେରଳ ଓ କର୍ଣ୍ଣାଟକଠାରୁ ଆରମ୍ଭ କରି ତ୍ରିପୁରା ଓ ମଣିପୁର ପର୍ଯ୍ୟନ୍ତ ପଲ୍ଲିବାସୀ ଓ ନଗରବାସୀ ସମସ୍ତେ ନିଜର କୃତିତ୍ୱ ଓ ବୈଶିଷ୍ଟ୍ୟ ଦ୍ୱାରା ଯେଉଁ ମହନୀୟ ଦାନ କରି ଆସିଛନ୍ତି ତାହା ଏହି ଭାରତୀୟ ସଂସ୍କୃତିର ଅଖଣ୍ଡ ସଲିଳ ସ୍ରୋତର ପରିଣତି ଓ ପରିପ୍ରକାଶ । ଏ କ୍ଷେତ୍ରରେ ଓଡ଼ିଶାର ଦାନ ଅତୁଳନୀୟ ଓ ବିଶ୍ୱ ବିଦିତ । ଏ ରାଜ୍ୟର କଳା ଓ କମନୀୟତା ଏବଂ ସୁସମୃଦ୍ଧ ସାଂସ୍କୃତିକ ପରମ୍ପରା ଭାରତର ଐତିହ୍ୟ ସଂସ୍କୃତିକୁ ଯେ ବହୁଧା ସମୃଦ୍ଧ, ସମନ୍ୱିତ ଓ ପରିପୁଷ୍ଟ କରିଛି ଏଥିରେ ସନ୍ଦେହ ନାହିଁ ।

ଭାରତର ପୂର୍ବ ଉପକୂଳରେ ଅବସ୍ଥିତ ଓଡ଼ିଶା ପୂର୍ବେ ଉଡ୍ର, କଳିଙ୍ଗ, କୋଶଳ ଓ କଙ୍ଗୋଦ ଆଦି ବିଭିନ୍ନ ନାମରେ ବିଦିତ ଥିଲା । ଏହି ନାମଗୁଡ଼ିକ ମଧ୍ୟରୁ ପ୍ରତ୍ୟେକ ନାମର ସ୍ୱାତନ୍ତ୍ର୍ୟ, ମହତ୍ତ୍ୱ ଓ ଐତିହ୍ୟ ରହିଛି । ଓଡ଼ିଶା ହେଲା ଏହାର ବର୍ତ୍ତମାନ ନାମ । ଆଧୁନିକ ଓଡ଼ିଶା ଭୌଗୋଳିକ ଦୃଷ୍ଟିରୁ ପୂର୍ବରେ ମହୋଦଧି, ପଶ୍ଚିମରେ ମଧ୍ୟ ପ୍ରଦେଶ, ଉତ୍ତରରେ ପଶ୍ଚିମ ବଙ୍ଗ ଓ ଦକ୍ଷିଣରେ ଆନ୍ଧ୍ର ପ୍ରଦେଶ ଦ୍ୱାରା ପରିବେଷ୍ଟିତ । ଉତ୍ତର ଓ ଦକ୍ଷିଣ ଭାରତର ଏହା ହେଉଛି ମିଳନ ସ୍ଥଳ । ଏଣୁ ସମଗ୍ର ଭାରତର ଧାର୍ମିକ, ସାମାଜିକ ରାଜନୀତିକ ଓ ସର୍ବୋପରି ସାଂସ୍କୃତିକ ପ୍ରବାହର ମିଳନସ୍ଥଳ ଓଡ଼ିଶାରେ ହିଁ ସର୍ବ ଭାରତୀୟ ସଂସ୍କୃତିର ସମନ୍ୱୟ ସାଧିତ ହୋଇଛି । ଉଭୟ ଆର୍ଯ୍ୟ ଓ ଦ୍ରାବିଡ଼ ସଂସ୍କୃତିର ସାରତତ୍ତ୍ୱକୁ ଆଗ୍ରହର ସହ ଗ୍ରହଣ କରି ଓଡ଼ିଶାର ସଂସ୍କୃତି ସ୍ୱକୀୟ ସତ୍ତା, ବୈଶିଷ୍ଟ୍ୟ, ମର୍ଯ୍ୟାଦା ଓ ମହିମାରେ ମହିମାନ୍ୱିତ ହୋଇଛି । ଓଡ଼ିଶାର ସଂସ୍କୃତି ତୁଳନାତ୍ମକ ଭାବେ ଅନ୍ୟ ଦ୍ୱାରା ପ୍ରଭାବିତ ହେବା ଅପେକ୍ଷା ଅନ୍ୟ ଅଞ୍ଚଳର ସାଂସ୍କୃତିକ ଜୀବନକୁ ଏପରିକି କେତେକ କ୍ଷେତ୍ରରେ ସମଗ୍ର ଭାରତ ତଥା ବିଶ୍ୱକୁ ପ୍ରଭାବିତ କରି ଆସିଛି । ଶ୍ରୀ ଜଗନ୍ନାଥ ହେଲେ ଏହି ପ୍ରଭାବର ମୂଳ ହେତୁ । ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କୁ କେନ୍ଦ୍ର କରି ଗଢ଼ି ଉଠିଥିବା ଓଡ଼ିଶାର ସଂସ୍କୃତି କେବଳ ଭାରତ ନୁହେଁ, ଭାରତ ବାହାରେ ମଧ୍ୟ ସଂପ୍ରସାରିତ ହୋଇଛି । ଏଣୁ ବିଶ୍ୱ ସଂସ୍କୃତିକୁ ଓଡ଼ିଶାର ଶ୍ରେଷ୍ଠ ଅବଦାନ ହେଉଛି ଶ୍ରୀ ଜଗନ୍ନାଥ ସଂସ୍କୃତି, ଯାହାକି ମହାନତାର ପ୍ରତୀକ । ଏଇ ପରିପ୍ରେକ୍ଷୀରେ ଏହାର କଳା, ସଂସ୍କୃତି, ଧର୍ମ ଓ ରାଜନୀତି ସମୃଦ୍ଧ ତଥା ସ୍ୱତନ୍ତ୍ର । ଏଇ ପୃଷ୍ଠଭୂମି, ଐତିହ୍ୟ ଓ ସାଂସ୍କୃତିକ ପରମ୍ପରାକୁ ଦୃଷ୍ଟିରେ ରଖି ବର୍ତ୍ତମାନ ରାଜ୍ୟ ସରକାର କେତେଗୁଡ଼ିଏ ବିଶେଷ କାର୍ଯ୍ୟକ୍ରମ ଦ୍ୱାରା ରାଜ୍ୟର ସାମାଜିକ ଓ ସାଂସ୍କୃତିକ ଜୀବନକୁ ଅଧିକ ରୁଚିବନ୍ତ ଓ କ୍ରିୟାଶୀଳ କରିବା ପାଇଁ ସତତ ଚେଷ୍ଟିତ ।

ଓଡ଼ିଶାର ସାଂସ୍କୃତିକ ବିଭବ ମଧ୍ୟରେ ପ୍ରାଗୈତିହାସିକ ଉପାଦାନ ବ୍ୟତୀତ ପୋଥି ଓ ପଥରର ମହତ୍ତ୍ୱ ସର୍ବାଦୌ ଉଲ୍ଲେଖନୀୟ । ପ୍ରାଚୀନ ଓଡ଼ିଶାର କଳା, ଶିଳ୍ପ, ଚିତ୍ର, ଭାସ୍କର୍ଯ୍ୟ, ଇତିହାସ ଓ ସାହିତ୍ୟ ସେହି ପୋଥି ଓ ପଥରରେ ଅଦ୍ୟାବଧି ସୁରକ୍ଷିତ ରହିଛି । ସେଥିରୁ ହଜାର ହଜାର ବର୍ଷ ପୂର୍ବେ ଓଡ଼ିଶାର ସାଂସ୍କୃତିକ ଜୀବନଧାରା କିପରି ଥିଲା ସେ ସମ୍ବନ୍ଧରେ

ଉପାଦେୟ ତଥ୍ୟ ଧୀରେଧୀରେ ଲୋକ ଲୋଚନକୁ ଆସୁଛି । ସର୍ବେକ୍ଷଣ, ଭୂଖୋଦନ, ଅପ୍ରକାଶିତ ଗ୍ରନ୍ଥଗୁଡ଼ିକର ପ୍ରକାଶନ ଦ୍ୱାରା ପ୍ରାଚୀନ ଐତିହ୍ୟ ଓ ସାଂସ୍କୃତିକ ଉପାଦାନ ଆବିଷ୍କୃତ ହେଉଛି । ଭାରତବର୍ଷର ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଓଡ଼ିଶାର ଜନସାଧାରଣ କିପରି ସୁଶିକ୍ଷିତ, ସଂଯତ, ସଂଗଠିତ ଓ ସଂସ୍କୃତି ସଂପନ୍ନ ଥିଲେ ତାହା କ୍ରମଶଃ ଉଦ୍‌ଘାଟିତ ହେଉଛି । ପ୍ରାଚୀନ ତାମ୍ରପତ୍ର ଗୁଡ଼ିକରୁ ମଧ୍ୟ ଏ ସମ୍ବନ୍ଧରେ ଅନେକ ଉପାଦେୟ ସୂଚନା ମିଳୁଛି । ରାଜ୍ୟ ସଂଗ୍ରହାଳୟରେ ତାଳପତ୍ର, ଭୂର୍ଜପତ୍ର, ବାଉଁଶପତ୍ର, ହାତୀଦାନ୍ତ, କାଗଜ ପ୍ରଭୃତିରେ ପ୍ରସ୍ତୁତ ସେହିପରି ପ୍ରାୟ ୫୭ ହଜାର ଉପାଦେୟ ପୋଥି ସଂଗୃହୀତ ହୋଇରହିଛି । ସେଥିରୁ ସଂଗୀତ, ନୃତ୍ୟ, ନାଟକ, କାବ୍ୟ, ଇତିହାସ, ଧର୍ମ, ସମାଜ ଓ ସଂସ୍କୃତି ସମ୍ବନ୍ଧୀୟ ୫୦–୬୦ ଖଣ୍ଡି ପୋଥି ପୁସ୍ତକାକାରରେ ପ୍ରକାଶ ପାଇଛି । ତନ୍ମଧ୍ୟରେ ଗୀତ ଗୋବିନ୍ଦ, ଅଭିନବ ଗୀତ ଗୋବିନ୍ଦ, ଗଙ୍ଗବଂଶାନୁଚରିତମ୍, ଧର୍ମଶାସ୍ତ୍ର ଶବ୍ଦକୋଷ ଭଳି ପୁରାତନ ଗ୍ରନ୍ଥ ଓ ଜଗନ୍ନାଥ ପାଣି ଗ୍ରନ୍ଥାବଳୀ, ବ୍ରଜରାଜ ଗ୍ରନ୍ଥାବଳୀ, ଅଭିମନ୍ୟୁ ଗ୍ରନ୍ଥାବଳୀ, କୋଇଲି ସଂଗ୍ରହ, ଭଜନ ସଂଗ୍ରହ ଗ୍ରନ୍ଥ ଓ ସଂଗୀତ ନୃତ୍ୟ ସମ୍ବନ୍ଧୀୟ ଗ୍ରନ୍ଥ ଭଳି ଶତାଧିକ ରଚନା ଗୁଡ଼ିକର ନାମ ଉଲ୍ଲେଖନୀୟ । ଆର୍ଥିକ ସମ୍ବଳ ସୀମା ମଧ୍ୟରେ ଅନ୍ୟ ଉପାଦେୟ ଗ୍ରନ୍ଥ ଗୁଡ଼ିକ ପର୍ଯ୍ୟାୟକ୍ରମେ ପ୍ରକାଶ କରିବା ପାଇଁ ପଦକ୍ଷେପ ନିଆଯାଉଛି । ତାଳପତ୍ର ପୋଥିଗୁଡ଼ିକ ମଧ୍ୟରେ ବହୁ ମୂଲ୍ୟବାନ ଶତାଧିକ ପ୍ରାଚୀନ ଚିତ୍ରପୋଥି ରହିଛି । ସେଥିରୁ ଅନେକ ଶତକ ପ୍ରକାଶ ପାଇଛି ଓ ଅନ୍ୟ ଗୁଡ଼ିକ ପ୍ରକାଶ କରିବା ପାଇଁ ଉଦ୍ୟମ କରାଯାଉଛି । ଗବେଷକ ଓ ସର୍ବସାଧାରଣଙ୍କ ସୁବିଧା ପାଇଁ ୨୮ଟି ବିଭାଗରେ ବିଭକ୍ତ ପୋଥି ଗୁଡ଼ିକର ୧୬ ଖଣ୍ଡି ତାଲିକା ଗ୍ରନ୍ଥ ପ୍ରକାଶିତ ହୋଇଛି ।

ପଥର ହେଉଛି ଓଡ଼ିଶାର ଅମୂଲ୍ୟ ସାଂସ୍କୃତିକ ସଂପଦ । ସମଗ୍ର ଓଡ଼ିଶାରେ ଚତୁର୍ଥ ପଞ୍ଚମ ଶତାବ୍ଦୀ ଠାରୁ ଆରମ୍ଭ କରି ଯେତେ ସଂଖ୍ୟକ ଓ ଯେତେ ପ୍ରକାର ଦେବଦେବୀ ମୂର୍ତ୍ତି, ଯେତେ ସଂଖ୍ୟକ ଓ ଯେତେ ପ୍ରକାର କାରୁକାର୍ଯ୍ୟ ଖଚିତ ମନ୍ଦିର ଅଛି, ତାହା ଭାରତରେ ଅନ୍ୟତ୍ର ବିରଳ । ଗବେଷକମାନଙ୍କ ପ୍ରଦତ୍ତ ସୂଚନା ଅନୁଯାୟୀ ସମଗ୍ର ଭାରତରେ ଯେତେ ମନ୍ଦିର ଅଛି କେବଳ ଭୁବନେଶ୍ୱରରେ ସେତିକି ମନ୍ଦିର ଅଛି । ଓଡ଼ିଶାର ପ୍ରତ୍ୟେକ ଦେବସ୍ଥାନ, ଦେବଦେବୀ ପୀଠ ଓ ମନ୍ଦିର ପ୍ରଭାବଶାଳୀ ସାଂସ୍କୃତିକ ପୀଠ ରୂପେ ଅଦ୍ୟାବଧି କେବଳ ଓଡ଼ିଶାର ନୁହେଁ ସମଗ୍ର ଭାରତର ଜନଜୀବନକୁ ମଧ୍ୟ ପ୍ରଭାବିତ କରୁଛି । ଓଡ଼ିଶାରେ ପୃଥିବୀ ବିଖ୍ୟାତ କାରୁକାର୍ଯ୍ୟ ମଣ୍ଡିତ କେତୋଟି ମନ୍ଦିରକୁ କେନ୍ଦ୍ର ସରକାର ସଂରକ୍ଷଣ କରିଛନ୍ତି । ଓଡ଼ିଶାର ପ୍ରତ୍ନତତ୍ତ୍ୱ ବିଭାଗ ଓ ସଂଗ୍ରହାଳୟ ପକ୍ଷରୁ ବିଭିନ୍ନ ଧର୍ମ ଓ ସଂସ୍କୃତିର ନିଦର୍ଶନ ସ୍ୱରୂପ ବହୁ ଉପାଦେୟ ମୂର୍ତ୍ତି ସଂରକ୍ଷିତ ହୋଇଛି । ଏତଦ୍‌ବ୍ୟତୀତ ଅଦ୍ୟାବଧି ୧୫୯ଟି ପ୍ରାଚୀନ କୀର୍ତ୍ତି ସଂରକ୍ଷିତ କରାଯାଇଛି । ତନ୍ମଧ୍ୟରୁ ୬୭ଟି ପ୍ରାଚୀନ କୀର୍ତ୍ତିର ପୁନଃ ସଂସ୍କାର ଓ ସୁରକ୍ଷା କରାଯାଇପାରିଛି । ଓଡ଼ିଶାର ପ୍ରତ୍ନତାତ୍ତ୍ୱିକ ସଂପଦର ପଞ୍ଜୀକରଣ ପାଇଁ ମଧ୍ୟ ବ୍ୟବସ୍ଥା ହୋଇଛି । ଭୂଖୋଦନ ଦ୍ୱାରା କେତେକ ପ୍ରାଚୀନ ଦୁର୍ଗ ଓ ଧର୍ମପୀଠ ଲୋକଲୋଚନକୁ ଆସିଛି । ସମ୍ପ୍ରତି ସପ୍ତମ ଶତାବ୍ଦୀର ସିଦ୍ଧେଶ୍ୱର ଓ ସୋମନାଥ ମନ୍ଦିର ଖନନ ଦ୍ୱାରା ଲୋକଲୋଚନକୁ ଆସିପାରିଛି । ଭାରତ ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗ ୬୭ଟି ମନ୍ଦିରର ସଂରକ୍ଷଣ କାର୍ଯ୍ୟ କରୁଅଛନ୍ତି ।

ଓଡ଼ିଶାର ଜନସାଧାରଣ ନିଜର ତଥା ଭାରତର ଅନ୍ୟାନ୍ୟ ଅଞ୍ଚଳର ସାହିତ୍ୟ, ଶିକ୍ଷା, ସଂସ୍କୃତି ଓ ଐତିହ୍ୟ ବିଷୟରେ ଯେପରି ସହଜରେ ଜ୍ଞାନ ଆହରଣ କରିବା ସଙ୍ଗେସଙ୍ଗେ ଅନ୍ୟ ସଂସ୍କୃତି ସହିତ ସୁପରିଚିତ ହୋଇ ପାରିବେ ତାର ସୁବ୍ୟବସ୍ଥା କରାଯାଉଛି । ସେଥିପାଇଁ ରାଜ୍ୟରେ ବର୍ତ୍ତମାନ ଜିଲ୍ଲା ସ୍ତରୀୟ ଓ ସବ୍‌ଡିଭିଜନସ୍ତରୀୟ ୨୩ଟି ପାଠାଗାର ଖୋଲାଯାଇଛି । ରାଜଧାନୀ ଠାରେ ରାଜ୍ୟସ୍ତରୀୟ ହରେକୃଷ୍ଣ ମହତାବ ଗ୍ରନ୍ଥାଗାର ପ୍ରତିଷ୍ଠା କରାଯାଇଛି । ଏତଦ୍‌ବ୍ୟତୀତ ଗ୍ରାମାଞ୍ଚଳର ଲୋକମାନଙ୍କ ସୁବିଧା ନିମନ୍ତେ ଏକ ହଜାରରୁ ଉର୍ଦ୍ଧ୍ୱ ଗ୍ରାମ୍ୟ ପାଠାଗାରକୁ ପୁସ୍ତକ ସାହାଯ୍ୟ ଯୋଗାଇ ଦିଆଯାଉଛି । ରାଜ୍ୟର ବିଭିନ୍ନ ଅଞ୍ଚଳରେ ପ୍ରତିଷ୍ଠିତ ଗବେଷଣାଗାର, ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ, ପ୍ରତିଷ୍ଠାନ, ବ୍ଲକ ଓ ଯୁବ ସଂଗଠନ ଗୁଡ଼ିକ ଶିକ୍ଷାର ଉନ୍ନତି, ସମାଜସେବା, ସାଂସ୍କୃତିକ, ପୁନର୍ଜାଗରଣ, ନାଟ୍ୟ, ନୃତ୍ୟ ଓ ସଂଗୀତ କଳାର ବିକାଶ ତଥା ଲୋକକଳାର ପୁନରୁତ୍‌ଥାନ ପାଇଁ ଆର୍ଥିକ ସହାୟତା ଯୋଗାଇ ଦିଆଯାଉଛି । ଓଡ଼ିଶାର ସାହିତ୍ୟ, ସଂଗୀତ, ନାଟକ ଓ ଲଳିତକଳା ଏକାଡେମୀ ମାଧ୍ୟମରେ ଏ ସବୁ କ୍ଷେତ୍ରରେ ବହୁ ଉଲ୍ଲେଖନୀୟ କାର୍ଯ୍ୟ ହୋଇଛି । ଜନସାଧାରଣଙ୍କୁ କ୍ରମଶଃ ସଚେତନ କରାଇବାରେ ଏସବୁ କାର୍ଯ୍ୟ ସହାୟକ ହେଉଛି ।

ଓଡ଼ିଶା କଳାର ଦେଶ । ତେଣୁ ଏହାର ଅନ୍ୟ ନାମ ହେଉଛି ଉତ୍କଳ । ଲୋକକଳା ଓ ଶାସ୍ତ୍ରୀୟ କଳା କ୍ଷେତ୍ରରେ ଓଡ଼ିଶାର ସ୍ୱତନ୍ତ୍ର ବୈଶିଷ୍ଟ୍ୟ ଅଛି । ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ସୁବିଦିତ ଓଡ଼ିଶୀ ନୃତ୍ୟ ଓ ସଂଗୀତ ସମ୍ବନ୍ଧରେ ଗବେଷଣା, ଶାସ୍ତ୍ର ପ୍ରସ୍ତୁତି ଓ ବିକାଶ ସାଧନ ପାଇଁ ଓଡ଼ିଶୀ ଗବେଷଣା ପ୍ରତିଷ୍ଠାନ ନାମରେ ଏକ ସ୍ୱୟଂଶାସିତ ସଂସ୍ଥା ଗଠିତ ହୋଇଛି । ଓଡ଼ିଶାର ପ୍ରସିଦ୍ଧ ନୃତ୍ୟଗୁରୁ, ନୃତ୍ୟ ଓ ସଂଗୀତ ଶିଳ୍ପୀ ତଥା ଶିକ୍ଷାର୍ଥୀ ଓ ଶିକ୍ଷାର୍ଥିନୀଙ୍କ ସହଯୋଗରେ ଓଡ଼ିଶୀ ଗବେଷଣା ପ୍ରତିଷ୍ଠାନ ନିଜର ଲକ୍ଷ୍ୟ ହାସଲ ଦିଗରେ କାର୍ଯ୍ୟ କରୁଛି । ଗତ ଦୁଇବର୍ଷ ମଧ୍ୟରେ ଓଡ଼ିଶୀ ନୃତ୍ୟର ପ୍ରଚଳିତ ପାରମ୍ପରିକ ନୃତ୍ୟ ଶୈଳୀ ସମ୍ପର୍କରେ ୨୦୦ ଘଣ୍ଟାର ଭି.ଡି.ଓ ଟେପ୍-ପ୍ରସ୍ତୁତ କରାଯାଇଛି । ମାହାରୀ, ଗୋଟିପୁଅ, ସଖୀନାଚ ଭଳି ଓଡ଼ିଶୀ ନୃତ୍ୟର କ୍ରମ ବିକାଶଧାରା ସଂପର୍କରେ ମଧ୍ୟ ଭି.ଡି.ଓ ପ୍ରସ୍ତୁତ କରାଯାଇପାରିଛି । ଓଡ଼ିଶୀ ନୃତ୍ୟର ମୂଳ ଅଂଗଭଙ୍ଗୀ ଓ ମୁଦ୍ରା ସଂପର୍କରେ ଶିକ୍ଷା ଦେବା ଲାଗି ଏକ ନିର୍ଦ୍ଦେଶିକା ପ୍ରାଥମିକ ଶିକ୍ଷା ସଚିତ୍ର ପୁସ୍ତିକା ପ୍ରଣୟନ କରାଯାଇ ପାରିଛି । ମୃତ ପ୍ରାୟ ରାବଣଛାୟା ନୃତ୍ୟ ପୁନରୁଦ୍ଧାର କରାଯାଇଛି । ବିଭିନ୍ନ ଜିଲ୍ଲାରେ ଥିବା ଲୁକ୍କାୟିତ କୃତି କଳା ଓ କଳାକାରଙ୍କୁ ଠାବ କରିବା ଏବଂ ଜିଲ୍ଲା ଗୁଡ଼ିକର ସାଂସ୍କୃତିକ ଅନୁଷ୍ଠାନଗୁଡ଼ିକୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ପ୍ରତି ଜିଲ୍ଲାରେ ଜିଲ୍ଲା ସଂସ୍କୃତି କେନ୍ଦ୍ର ପ୍ରତିଷ୍ଠା କରାଯିବା ଉଦ୍ଦେଶ୍ୟରେ ପ୍ରତି ଜିଲ୍ଲାରେ ସଂସ୍କୃତି ଅଧିକାରୀ ନିଯୁକ୍ତ ହୋଇଛନ୍ତି । ଓଡ଼ିଶା ସଂଗୀତ ନାଟକ ଏକାଡେମୀ, ସଂଗୀତ ମହାବିଦ୍ୟାଳୟ ଓ ପଞ୍ଜୀକୃତ ସଂଗୀତାନୁଷ୍ଠାନ ଗୁଡ଼ିକ ମାଧ୍ୟମରେ ଓଡ଼ିଶାର ବିଭିନ୍ନ ଲୋକ ସଂଗୀତ, ଯାତ୍ରା, ନାଟକ ଓ ନୃତ୍ୟର ସଂରକ୍ଷଣ, ସଂସ୍କାର ଓ ତାଲିମ ସହିତ ରଙ୍ଗମଞ୍ଚର ପୁନର୍ଗଠନ ବିଷୟରେ ପଦକ୍ଷେପ ନିଆଯାଉଛି । ଭୁବନେଶ୍ୱର ଠାରେ ସରକାରୀ ପରିଚାଳିତ ସଂଗୀତ ମହାବିଦ୍ୟାଳୟରେ ସ୍ନାତକୋତ୍ତର ଶିକ୍ଷା ବ୍ୟବସ୍ଥା କରାଯାଇଛି । ପୂର୍ବାଞ୍ଚଳ ରାଜ୍ୟରେ ନିଜ ସଂସ୍କୃତିର ପ୍ରଦର୍ଶନ, ସଂରକ୍ଷଣ ଓ ବିକାଶ ନିମନ୍ତେ ପୂର୍ବାଞ୍ଚଳ ସାଂସ୍କୃତିକ କେନ୍ଦ୍ରକୁ ଅନୁଦାନ ଦିଆଯାଉଛି ।

ଓଡ଼ିଶାର ପ୍ରାଗୈତିହାସିକ ଚିତ୍ରକଳା, ପାରମ୍ପରିକ ଚିତ୍ରକଳା ଓ ଶିଳ୍ପକଳା କେବଳ ଭାରତ ନୁହେଁ ଭାରତ ବାହାରେ ମଧ୍ୟ ସୁବିଦିତ । ଭାରତୀୟ କଳା ଓ ଶିଳ୍ପ କ୍ଷେତ୍ରରେ ଓଡ଼ିଶାର ପଟ୍ଟଚିତ୍ର, ପୋଥିଚିତ୍ର, ଭିତ୍ତିଚିତ୍ର, ଲୋକଚିତ୍ର ସହିତ ମୃତଶିଳ୍ପ, ପ୍ରସ୍ତର ଶିଳ୍ପ, କାଷ୍ଠଶିଳ୍ପ, ଚର୍ମଶିଳ୍ପ, ବୟନଶିଳ୍ପ ଓ ବିଭିନ୍ନ ଧାତୁ ଶିଳ୍ପ କଳାର ସ୍ୱାତନ୍ତ୍ର୍ୟ ଓ ମହତ୍ତ୍ୱ ରହିଛି । ଓଡ଼ିଶା ଲଳିତ କଳା ଏକାଡେମୀ, କଳା ମହାବିଦ୍ୟାଳୟ, କଳା ବିଦ୍ୟାଳୟ ଓ ସ୍ୱେଚ୍ଛାକୃତ କଳା ସଂଗଠନ ଗୁଡ଼ିକ ଦ୍ୱାରା ଓଡ଼ିଶା ଲୋକକଳା ଓ ଶିଳ୍ପକଳାର ବିକାଶ ଓ ପ୍ରସାର ପାଇଁ ସକ୍ରିୟ ଉଦ୍ୟମ କରାଯାଉଛି । ଏହାଦ୍ୱାରା ଓଡ଼ିଶାର ପାରମ୍ପରିକ ଲୋକକଳା ଓ ଶିଳ୍ପକଳାର ହୃତଗୌରବ ଯେ ପୁନରୁଦ୍ଧାର ହୋଇପାରିବ ସେଥିରେ ସନ୍ଦେହ ନାହିଁ । ଭୁବନେଶ୍ୱର ଠାରେ କଳା ପାଠ୍ୟକ୍ରମରେ ସ୍ନାତକ ଶିକ୍ଷା ନିମନ୍ତେ ଗୋଟିଏ କଳା ମହାବିଦ୍ୟାଳୟ ସଂସ୍କୃତି ବିଭାଗ ଅଧୀନରେ ପ୍ରତିଷ୍ଠା କରାଯାଇଛି ଏବଂ ଏକ କଳା ପ୍ରଦର୍ଶନୀ ଗୃହ ନିର୍ମାଣ କରାଯାଉଛି ।

ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ ପାଇଁ ଓଡ଼ିଆ ସାହିତ୍ୟ ଏକାଡେମୀ ବ୍ୟତୀତ ସଂସ୍କୃତି ବିଭାଗର ବିଭିନ୍ନ ସଂସ୍ଥା ଓ ସରକାରୀ ଅନୁଦାନ ପ୍ରାପ୍ତ ସ୍ୱେଚ୍ଛାକୃତ ସାଂସ୍କୃତିକ ଅନୁଷ୍ଠାନଗୁଡ଼ିକ ବହୁ ଉଲ୍ଲେଖନୀୟ କାର୍ଯ୍ୟ କରିଆସୁଛନ୍ତି । ଉର୍ଦ୍ଦୁ ଭାଷା ଓ ସାହିତ୍ୟର ବିକାଶ ପାଇଁ ମଧ୍ୟ ଉର୍ଦ୍ଦୁ ଏକାଡେମୀ ଗଠିତ ହୋଇଛି । ସ୍ୱେଚ୍ଛାସେବୀ ଅନୁଷ୍ଠାନ ମାଧ୍ୟମରେ ଓଡ଼ିଆ ଭାଷା ଓ ସାହିତ୍ୟ ସମ୍ବନ୍ଧରେ ପୁସ୍ତକ ପ୍ରଣୟନ କରାଯାଉଛି । ଦୁଃସ୍ଥ ଲେଖକ ଲେଖିକାମାନଙ୍କୁ ପୁସ୍ତକ ପ୍ରକାଶନ ନିମିତ୍ତ ଆର୍ଥିକ ଅନୁଦାନ ଯୋଗାଇ ଦିଆଯାଉଛି । ବିଗତ ଆର୍ଥିକ ବର୍ଷରେ ୩୧ ଜଣଙ୍କୁ ଏପରି

ସାହାଯ୍ୟ ପ୍ରଦାନ କରାଯାଇଛି । ଓଡ଼ିଶାର ଗୌରବାବହ ସାମରିକ ପରମ୍ପରା ଯେପରି ପ୍ରାଚୀନ ସେହିପରି ମହତ୍ତ୍ୱପୂର୍ଣ୍ଣ । ଛଉନୃତ୍ୟ ସେହି ପରମ୍ପରାର ଏକ ଅବିସ୍ମରଣୀୟ କଳା । ଓଡ଼ିଶାର ମନ୍ଦିରଗାତ୍ରରେ ଉତ୍କୀର୍ଣ୍ଣତ ଶତ ସହସ୍ର ଚିତ୍ରାବଳୀକୁ ଲକ୍ଷ୍ୟ କଲେ ଓଡ଼ିଆ ଜାତି କିପରି ସମର ଓ ନୃତ୍ୟ ପ୍ରିୟ ଥିଲା ତାହାର ସ୍ପଷ୍ଟ ପ୍ରମାଣ ମିଳେ । ଛଉନୃତ୍ୟ ଏକ !ପାରମ୍ପରିକ ନୃତ୍ୟ ହେଲେ ମଧ୍ୟ ଏହା ଯେ ଏକ ଶାସ୍ତ୍ରୀୟ ନୃତ୍ୟ ତାହା ଅଚିରେ ପ୍ରତିପାଦିତ ହେବାକୁ ଯାଉଛି । ଓଡ଼ିଶାର ଛଉନୃତ୍ୟ ଦ୍ୱାରା ପଡୋଶୀ ରାଜ୍ୟ ପ୍ରଭାବିତ ହୋଇଛନ୍ତି ବୋଲି ଆଲୋଚକମାନେ ମତ ଦିଅନ୍ତି । ସେହି ନୃତ୍ୟକଳାର ଗବେଷଣା, ଶିକ୍ଷା, ତାଲିମ ଓ ପ୍ରସାର ପାଇଁ ବ୍ୟବସ୍ଥା ଗ୍ରହଣ କରାଯାଇଛି । ଛଉ ନୃତ୍ୟକୁ ଉତ୍ସାହିତ କରିବା, ସାମାଜିକ ସ୍ୱୀକୃତି ଦେବା ଓ ସେଥିପ୍ରତି ଗବେଷକମାନଙ୍କ ଦୃଷ୍ଟି ଆକର୍ଷଣ କରିବା ଉଦ୍ଦେଶ୍ୟରେ ରାଜ୍ୟର ୨୧ ଜଣ ବିଶିଷ୍ଟ ନୃତ୍ୟଶିଳ୍ପୀଙ୍କୁ ଅନୁଦାନ ଆକାରରେ ଆର୍ଥିକ ସାହାଯ୍ୟ ଦିଆଯାଇଛି ।

ଓଡ଼ିଶାର ମହାପୁରୁଷମାନଙ୍କ ସ୍ମୃତିକୁ ଉଜ୍ଜୀବିତ କରି ରଖିବା ପାଇଁ ରାଜ୍ୟର ବିଭିନ୍ନ ସ୍ଥାନରେ ନିର୍ମିତ ସ୍ମୃତି ସୌଧର ସୁରକ୍ଷା ସହିତ ତିନୋଟି ସ୍ମୃତିସୌଧ ନିର୍ମାଣ ପାଇଁ ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଯାଇଛି । ସଂଗ୍ରହାଳୟର କେତୋଟି ଗ୍ୟାଲେରୀକୁ ବିଭିନ୍ନ ମହାପୁରୁଷଙ୍କ ନାମରେ ନାମିତ କରାଯାଇଛି ।

ବିଗତ ଦଶନ୍ଧି ମଧ୍ୟରେ ଓଡ଼ିଆ ଚଳଚ୍ଚିତ୍ରର ଆଶାନୁରୂପ ସଂପ୍ରସାରଣ ଘଟିଥିବା ପରିଲକ୍ଷିତ ହୁଏ । ତେଣୁ ଓଡ଼ିଆ ଚଳଚ୍ଚିତ୍ରର ସଂଖ୍ୟା ଓ ଗୁଣାତ୍ମକ ମାନର ଉତ୍ତରୋତ୍ତର ଅଭିବୃଦ୍ଧି ପାଇଁ ଚଳଚ୍ଚିତ୍ର ପ୍ରଯୋଜକ, ନିର୍ଦ୍ଦେଶକ, ଚିତ୍ରନାଟ୍ୟ, ଲେଖକ, ଶିଳ୍ପୀ, ଚିତ୍ରତାରକା, ସଂଗୀତ ନିର୍ଦ୍ଦେଶକ, ଗାୟକ ଓ ଗାୟିକାମାନଙ୍କୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ବାର୍ଷିକ ଚଳଚ୍ଚିତ୍ର ଉତ୍ସବ ଅନୁଷ୍ଠିତ ହେଉଛି । ସେହି ଉତ୍ସବରେ ରାଜ୍ୟର ଶ୍ରେଷ୍ଠ ଚିତ୍ର ଓ ଶ୍ରେଷ୍ଠ କଳାକାରମାନଙ୍କୁ ପୁରସ୍କାର ଓ ସମ୍ମାନ ପ୍ରଦାନ କରାଯାଉଛି ।

ବିଗତ ଦଶନ୍ଧିରେ ରାଜ୍ୟର ଚିତ୍ରକଳା, ଭାସ୍କର୍ଯ୍ୟ, ସଂସ୍କୃତି, ସାମ୍ବାଦିକତା, ନୃତ୍ୟ, ନାଟ୍ୟ, ସଙ୍ଗୀତ, ବାଦ୍ୟ ଓ ଅଭିନୟର ସମୃଦ୍ଧି ସାଧନରେ ଉଲ୍ଲେଖନୀୟ କାର୍ଯ୍ୟ କରି ଦୁଃସ୍ଥ ଅବସ୍ଥାରେ କାଳାତିପାତ କରୁଥିବା ୪୩୧ ଜଣ କଳାକାରଙ୍କୁ ମାସିକ ୨୦୦ ଟଙ୍କା କରି ଆଜୀବନ ଭତ୍ତା ପ୍ରଦାନ କରାଯାଉଛି । ତଦ୍‌ବ୍ୟତୀତ ୧୨୯ ଜଣ କଳାକାରମାନଙ୍କୁ କେନ୍ଦ୍ରୀୟ ଅନୁଦାନ ମାଧ୍ୟମରେ ମାସିକ ବୃତ୍ତି ପ୍ରଦାନ କରିବା ସଙ୍ଗେସଙ୍ଗେ ୪୩୮ ଜଣ କଳାକାରଙ୍କୁ ବାର୍ଷିକ ଅନୁଦାନ ଦିଆଯାଉଛି । ଓଡ଼ିଶାର ଏକାଡେମୀଗୁଡ଼ିକ ମାଧ୍ୟମରେ ଯୋଗ୍ୟ ଲେଖକ, କଳାକାର ଓ ଶିଳ୍ପୀମାନଙ୍କୁ ପୁରସ୍କୃତ ଓ ଉପାୟନ ପ୍ରଦାନ ଦ୍ୱାରା ସେମାନଙ୍କୁ ଉତ୍ସାହିତ କରାଯାଉଛି । ଦୁଃସ୍ଥ କଳାକାରମାନଙ୍କ ମଧ୍ୟରୁ ୧୩୪ ଜଣଙ୍କୁ ମଧ୍ୟ ଆର୍ଥିକ ସାହାଯ୍ୟ ବାର୍ଷିକ ଅନୁଦାନ ଆକାରରେ ଦିଆଯାଇଛି । ସୋଭିଏତ୍–ଭାରତ ସଂସ୍କୃତି ବିନିମୟ କାର୍ଯ୍ୟକ୍ରମ ମାଧ୍ୟମରେ ଓଡ଼ିଶାରେ ସୋଭିଏତ୍ ଉତ୍ସବ ପାଳିତ ହୋଇଛି ଏବଂ ସୋଭିଏତ୍ ଋଷରେ ଓଡ଼ିଶାର କଳାକାରମାନେ ସେମାନଙ୍କ କୃତି ପ୍ରଦର୍ଶନ କରି ପ୍ରଶଂସିତ ହୋଇଛନ୍ତି ।

ସଂସ୍କୃତି ସମୃଦ୍ଧ ଓଡ଼ିଶାକୁ ଭାରତ ଓ ଭାରତ ବାହାରେ ପରିଚିତ କରିବା ପାଇଁ ପର୍ଯ୍ୟଟନ କ୍ଷେତ୍ରରେ ନାନାବିଧ ପଦକ୍ଷେପ ନିଆଯାଇଛି । ପୁରୀ, କୋଣାର୍କ, ଭୁବନେଶ୍ୱର ବ୍ୟତୀତ ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରେ ୧୬ଟି ପାନ୍ଥଶାଳା ଓ ପାନ୍ଥନିବାସ, ଓଡ଼ିଶା ତଥା ଓଡ଼ିଶା ବାହାରେ ୧୯ଟି ପର୍ଯ୍ୟଟନ କାର୍ଯ୍ୟାଳୟ ,୧୬ଟି ପର୍ଯ୍ୟଟନ ସୂଚନା କେନ୍ଦ୍ର ପ୍ରତିଷ୍ଠା କରାଯାଇଛି ଏବଂ ବିଭିନ୍ନ ପ୍ରଦର୍ଶନୀୟ ସ୍ଥାନ ବିଷୟରେ ୫୮ ଖଣ୍ଡ ପୁସ୍ତିକା ପ୍ରକାଶିତ ହୋଇଛି । କେନ୍ଦ୍ର ସରକାରଙ୍କ ପକ୍ଷରୁ ଓଡ଼ିଶାର ବିଭିନ୍ନ ପର୍ଯ୍ୟଟନ କ୍ଷେତ୍ରରେ ୧୨ଟି ଭିନ୍ନ ଭିନ୍ନ ପ୍ରକଳ୍ପ କାର୍ଯ୍ୟକାରୀ ହେବାକୁ ଯାଉଛି । ଆରଡି, ରାଉରକେଲା, ଚନ୍ଦନେଶ୍ୱର ଓ ଭୁବନେଶ୍ୱରଠାରେ ତିନୋଟି ପାନ୍ଥନିବାସ ନିର୍ମାଣାଧୀନ ଅଛି । ପୁରୀ–କୋଣାର୍କ ବେଳାଭୂମିରେ ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରିବା ପାଇଁ ସ୍ୱତିଶ କୋଟି ଟଙ୍କାର ଏକ ଯୋଜନା ପ୍ରସ୍ତୁତି ହେଉଛି ।

ସଂସ୍କୃତି ବିଭାଗ ଅଧୀନରେ ଥିବା ରାଜ୍ୟ ଅଭିଲେଖାଗାର, ସଂଗ୍ରହାଳୟ ଓ ପ୍ରତ୍ନତତ୍ତ୍ୱ ଉପବିଭାଗ ଦ୍ୱାରା ଶିକ୍ଷା, ସଂସ୍କୃତି, ସାହିତ୍ୟ ଓ ଇତିହାସ ସମ୍ବନ୍ଧରେ ଗବେଷଣା ଓ ପ୍ରକାଶନ କାର୍ଯ୍ୟ ଚାଲିଛି । ଦେଶ ବିଦେଶରେ ବହୁ ଗବେଷକ ଓଡ଼ିଶାର ଚିତ୍ରକଳା, ଶିଳ୍ପକଳା, ସଙ୍ଗୀତକଳା, ଭାସ୍କର୍ଯ୍ୟ, ପ୍ରତ୍ନତତ୍ତ୍ୱ, ପ୍ରାଚୀନ ଓ ଆଧୁନିକ ଇତିହାସ ସମ୍ବନ୍ଧରେ ଗବେଷଣା ଓ ଗ୍ରନ୍ଥ ରଚନା କରୁଛନ୍ତି । ଗ୍ରାମାଞ୍ଚଳରେ ଲୋକେ ଯେପରି ସହଜରେ ନିଜର ଐତିହ୍ୟ ଓ ସଂସ୍କୃତି ବିଷୟରେ ଅବହିତ ହୋଇପାରିବେ, ସେଥିପାଇଁ ଜିଲ୍ଲା ସ୍ତରରେ ନୂଆ କରି ସଂସ୍କୃତି କାର୍ଯ୍ୟାଳୟ ଏବଂ ଜିଲ୍ଲା ଓ ସବ୍‌ଡିଭିଜନ ସ୍ତରରେ ୧୦ଟି ଶାଖା ସଂଗ୍ରହାଳୟ ଖୋଲାଯାଇଛି । ଅଭିଲେଖାଗାର ପକ୍ଷରୁ ସରକାରୀ ଓ ବେସରକାରୀ ନଥି ପତ୍ର ବିଷୟରେ ଜନସାଧାରଣଙ୍କୁ ସଚେତନ କରାଇବା ପାଇଁ ବିଭିନ୍ନ ସମୟରେ ପ୍ରଚୁର ପୁସ୍ତିକା ଓ ପ୍ରଦର୍ଶନୀ ଅନୁଷ୍ଠିତ ହେଉଛି । ସଂଗ୍ରହାଳୟକୁ ଶିକ୍ଷାମୂଳକ କରିବା ପାଇଁ ବ୍ୟବସ୍ଥା କରାଯାଉଛି । କଳିଙ୍ଗ ସହିତ ଦକ୍ଷିଣ ପୂର୍ବ ଏସୀୟ ରାଜ୍ୟଗୁଡ଼ିକର ବହୁମୁଖୀ ସମ୍ପର୍କ ବିଷୟରେ ଅଧିକ ତଥ୍ୟ ସଂଗ୍ରହ ଲାଗି ବ୍ୟବସ୍ଥା ହୋଇଛି । ସରକାରୀ କର୍ମଚାରୀ ଓ ଜନସାଧାରଣଙ୍କ ସହଯୋଗ ଓ ସହିଷ୍ଣୁ, ପଣ୍ଡିତ, ଗବେଷକ ଓ ଇତିହାସକାରମାନଙ୍କ ପ୍ରଯତ୍ନରେ ଓଡ଼ିଶାର ସାଂସ୍କୃତିକ କୃତି ଓ ଅଗ୍ରଗତି ଘଟୁଥିବାର ପରିଲକ୍ଷିତ ହୁଏ ।

ଜୟତୁ ଉତ୍କଳ ଜନନୀ ।



# ସମ୍ବେଦନଶୀଳ ପ୍ରଶାସନ

**ଶ୍ରୀ ନଳିନୀକାନ୍ତ ପଣ୍ଡା**

ଜୀବନ ଏକ ସିଡ଼ିପରି ପରି । ଆରୋହଣ କଲାବେଳେ ନିଜର ହିତ ଦୃଷ୍ଟିରୁ ସବୁବେଳେ ଟିକିଏ ତଳକୁ ଚାହିଁ ଉପରକୁ ଯାଇ କେତେକଙ୍କୁ ଉଠାଇବା ପାଇଁ ତୁମେ ଯତ୍ନବାନ୍ ହେବା ଉଚିତ । ଅରେ ସିଡ଼ିଶିରକୁ ଅନାଅ ; ଏହା ସୁଖ ଦୁଃଖର ମିଳନ ପରି ପରି ।

ସମ୍ବେଦନଶୀଳ ପ୍ରଶାସନକୁ ବ୍ୟାବହାରିକ ଭାବେ ଉକ୍ତ ରୂପେ ସଜ୍ଞାୟିତ କରାଯାଇ ପାରେ । ଜନସାଧାରଣଙ୍କର ଅଭାବ ଅସୁବିଧା ଅନୁଭବ କରି ସେ ସବୁର ସମାଧାନ ନିମନ୍ତେ ମନୋନିବେଶ କରିବା ନାଗରିକମାନଙ୍କର ତୃଣମୂଳସ୍ତରୀୟ ଅଭିଯୋଗ ସଂପର୍କରେ ପ୍ରତ୍ୟକ୍ଷ ଭାବେ ବା ସମ୍ବାଦପତ୍ର ଅଥବା ସେମାନଙ୍କର ନିର୍ବାଚିତ ପ୍ରତିନିଧିମାନଙ୍କ ଜରିଆରେ ଅବହିତ ହୋଇ ସେସବୁ ପରିପୂର୍ଣ୍ଣ କରିବା ପାଇଁ ଉଦ୍ୟମରତ ହେବା ଫଳପ୍ରଦ "ଫିଡ୍‌ବ୍ୟାକ" ମାଧ୍ୟମରେ ଜନସାଧାରଣଙ୍କର ପ୍ରତିକ୍ରିୟା ଅନୁଧ୍ୟାନ କରିବା ଓ ସର୍ବସାଧାରଣଙ୍କ ଅଭିଯୋଗ ଦୂରୀକରଣ ପାଇଁ ସକ୍ରିୟ ପଦକ୍ଷେପ ନେଉଥିବା ପ୍ରଶାସନକୁ ହିଁ ସମ୍ବେଦନଶୀଳ ପ୍ରଶାସନ କୁହାଯାଇ ପାରେ । ଅବଶ୍ୟ ଏହାକୁ ଏତ ସଂକ୍ଷିପ୍ତ ନ କହି ବର୍ଣ୍ଣନା କରିବା ଅଧିକ ସମୀଚୀନ ହେବ ।

ଏହା ସୁବିଦିତ ଯେ ମନୋନୀତ ଏବଂ ନିର୍ବାଚିତ ପ୍ରତିନିଧିମାନେ ହେଉଛନ୍ତି ସରକାରଙ୍କର ଦୁଇଟି ଗୁରୁତ୍ୱପୂର୍ଣ୍ଣ ଅଙ୍ଗ । ଗଣତନ୍ତ୍ର ଶାସନରେ ଜନସାଧାରଣ ପରୋକ୍ଷ ବା ପ୍ରତ୍ୟକ୍ଷ ଭାବରେ ବିଧାନ ପ୍ରଣୟନ ଓ ନୀତି ନିର୍ଦ୍ଧାରଣ ପାଇଁ ସେମାନଙ୍କର ପ୍ରତିନିଧିମାନଙ୍କୁ ନିର୍ବାଚିତ କରନ୍ତି । ପ୍ରଶାସନିକ ଦାୟିତ୍ୱରେ ଥିବା ଏହି ମନୋନୀତ ବ୍ୟକ୍ତିମାନେ ନିର୍ବାଚିତ ପ୍ରତିନିଧିମାନଙ୍କ ଦ୍ୱାରା ଗୃହୀତ ନିଷ୍ପତ୍ତିଗୁଡ଼ିକୁ ନିର୍ଦ୍ଦିଷ୍ଟ କର୍ମସୂଚୀ ମାଧ୍ୟମରେ କାର୍ଯ୍ୟକାରୀ କରନ୍ତି । ସେମାନେ ଏହି ଦାୟିତ୍ୱ ବହନ କରିବା ସଙ୍ଗେ ସଙ୍ଗେ ଅନୁରୂପ କ୍ଷମତା ପ୍ରୟୋଗର ଅଧିକାର ଉପଭୋଗ କରନ୍ତି ଏବଂ ଅଧସ୍ତନ କର୍ମଚାରୀମାନଙ୍କୁ ପରିଚାଳିତ ଓ ନିୟନ୍ତ୍ରଣ କରନ୍ତି । ସାମୁହିକ ପ୍ରଶାସନିକ ସଙ୍ଗଠନରେ ପ୍ରତ୍ୟେକଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ଏବଂ ଏହି ଆପେକ୍ଷିକ ଭୂମିକାଗୁଡ଼ିକ ପରସ୍ପରର ପରିପୂରକ ।

ଆଜିକାଲି ରାଜନୈତିକ ହସ୍ତକ୍ଷେପ ସମ୍ପର୍କରେ ଅନେକ ଅଭିଯୋଗ ଶୁଣିବାକୁ ମିଳୁଛି । ମୁଖ୍ୟତଃ ପ୍ରଶାସନିକ କ୍ଷେତ୍ରରେ ଯେଉଁମାନେ ନିଜେ ସ୍ୱଜନର ହସ୍ତକ୍ଷେପ କରନ୍ତି ସେହି ପ୍ରଶାସକମାନେ ହିଁ ରାଜନୈତିକ ହସ୍ତକ୍ଷେପ ସମ୍ପର୍କୀୟ ଅଭିଯୋଗ ଉପସ୍ଥାପନା କରନ୍ତି । ନିଜର ସହକର୍ମୀ ତଥା ବରିଷ୍ଠ ଏବଂ କନିଷ୍ଠ ପ୍ରଶାସକମାନଙ୍କର ହସ୍ତକ୍ଷେପ ନିର୍ବିକାର ରୂପେ ସହି ନେଉଥିଲେ ମଧ୍ୟ ସରକାରୀ ସ୍ତରର ବିଭିନ୍ନ ବିଭାଗ ବା କାର୍ଯ୍ୟକ୍ରମ ଦାୟିତ୍ୱରେ ଥିବା ନିର୍ବାଚିତ ପ୍ରତିନିଧିମାନଙ୍କର ଆଦେଶ ପାଳନ କରିବାକୁ ଏହି ମନୋନୀତ ବ୍ୟକ୍ତିମାନେ କୁଣ୍ଠା ପ୍ରକାଶ କରନ୍ତି । ଏହି କ୍ଷେତ୍ରରେ ଦାୟିତ୍ୱ ଏବଂ ତତ୍‌ସମ୍ବନ୍ଧୀୟ କର୍ତ୍ତୃତ୍ୱ ବିଷୟ ହିଁ ବିସ୍ମର କରାଯାଏ । କେତେ ବର୍ଷ ପରେ ନିର୍ବାଚିତ ପ୍ରତିନିଧିମାନେ ନିର୍ବାଚନରେ ଜନସାଧାରଣଙ୍କର ସମ୍ମୁଖୀନ ହୁଅନ୍ତି । ତେଣୁ ନାଗରିକମାନଙ୍କଠାରୁ ମିଳିଥିବା ରାୟ, ନିର୍ବାଚନ ସମୟରେ ଦିଆଯାଇଥିବା ପ୍ରତିଶ୍ରୁତି ଏବଂ ଜନସାଧାରଣଙ୍କର ଆଶା ଓ ଆକାଂକ୍ଷାକୁ ନୀତିନିୟମର ପରିସର ମଧ୍ୟରେ ରୂପାୟିତ କରିବା ନିମନ୍ତେ ନିର୍ବାଚିତ ପ୍ରତିନିଧିମାନଙ୍କର ପୂର୍ଣ୍ଣ ଅଧିକାର ରହିଛି ।

ଏ ସଂପର୍କରେ ଆଉ ଗୋଟିଏ ଦିଗ ବିଷୟରେ ଆଲୋଚନା କରିବା ସମୀଚୀନ ହେବ । ଯେଉଁ ସରକାର ଯେତିକି ସୁଦୃଢ଼ ତାହାର ଅଧିକାରୀ ଏବଂ କର୍ମଚାରୀମାନେ ସେତିକି ଶକ୍ତିଶାଳୀ । ସେମାନେ ସରକାରୀ ଆଦେଶ ପାଳନ କରୁଥିବା ଦୃଷ୍ଟିରୁ ବିଭିନ୍ନ ନୀତି ଓ କାର୍ଯ୍ୟକ୍ରମର ସଫଳ ରୂପାୟନ, ଏହାର ପର୍ଯ୍ୟବେକ୍ଷଣ ଓ ନିୟନ୍ତ୍ରଣ କରିବା କ୍ଷେତ୍ରରେ ଦୃଢ଼ ନିଷ୍ପତ୍ତି ନେବା ଦିଗରେ ସରକାରଙ୍କର ଦୃଢ଼ତା ସେମାନଙ୍କୁ ଯଥେଷ୍ଟ ଶକ୍ତି ଯୋଗାଇଥାଏ ।

### ଗ୍ରାମାଞ୍ଚଳ ଉନ୍ନୟନ ପ୍ରତି ଦୃଷ୍ଟିପାତ

ଲୋକମାନଙ୍କର ଆଶା ଓ ଆକାଂକ୍ଷାର ପରିପୂରଣ ତଥା ଆବଶ୍ୟକତା ସଂପର୍କରେ ସମୁଚିତ ଅନୁଧ୍ୟାନ ପାଇଁ କ୍ଷେତ୍ର ପ୍ରଶାସନକୁ ସମ୍ବେଦନଶୀଳ କରି ଗଢ଼ି ତୋଳିବା ଦିଗରେ ବିଗତ କେତେବର୍ଷ ମଧ୍ୟରେ ଆମ ରାଜ୍ୟରେ ସକ୍ରିୟ ପଦକ୍ଷେପ ଗ୍ରହଣ କରଯାଇଛି । ଗ୍ରାମାଞ୍ଚଳର ଲୋକମାନଙ୍କର ଅଭାବ ଅସୁବିଧା ତଥା ଏହି ଅଞ୍ଚଳରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମର ଅର୍ଥନୈତିକ ତଥା ସାମାଜିକ ପ୍ରଭାବ ସଂପର୍କରେ ଉପଯୁକ୍ତ ତଥ୍ୟ ଆହରଣ ପାଇଁ ମୁଖ୍ୟମନ୍ତ୍ରୀ ନିଜେ ବିଶେଷଭାବେ ଆଗ୍ରହ ପ୍ରକାଶ କରିଛନ୍ତି । ସେଦୃଷ୍ଟିରୁ ବ୍ଲକସ୍ତରରେ ପ୍ରତ୍ୟେକ ସଂପ୍ରସାରଣ ଅଧିକାରୀ କେତେକ ପଞ୍ଚାୟତ ଏବଂ ଗ୍ରାମର ଦାୟିତ୍ୱ ଗ୍ରହଣ କରିଛନ୍ତି ଏବଂ ପ୍ରତି ସପ୍ତାହରେ ଏକ ନିର୍ଦ୍ଦିଷ୍ଟ ଦିନ ସେଠାରେ ରାତ୍ରିଯାପନ କରି ଜନସାଧାରଣଙ୍କ ବିଭିନ୍ନ ସମସ୍ୟା ସଂପର୍କରେ ଅନୁଧ୍ୟାନ କରିବାପାଇଁ ସେମାନଙ୍କୁ ନିର୍ଦ୍ଦେଶ

ଦିଆଯାଇଛି । ଆଗାମୀ ସ୍ୱାଧୀନତା ଦିବସ ପୂର୍ବରୁ ଆମେ ପ୍ରାୟ ୫୧ହଜାର ଗ୍ରାମ ବିଷୟରେ ସବିଶେଷ ତଥ୍ୟ ସଂଗ୍ରହ କରି ପାରିବାବୋଲି ଆଶା ପ୍ରକାଶ କରାଯାଉଛି ।

ଏହି କାର୍ଯ୍ୟକ୍ରମର ସହାୟକ ପଦକ୍ଷେପ ସ୍ୱରୂପ ଆଞ୍ଚଳିକ ରାଜସ୍ୱ କମିଶନର, ଜିଲ୍ଲାପାଳ, ଅତିରିକ୍ତ ଜିଲ୍ଲାପାଳ ଏବଂ ଉପଖଣ୍ଡ ଅଧିକାରୀମାନେ ଭିନ୍ନ ବିଭାଗର ଦାୟିତ୍ୱସଂପନ୍ନ ଅଧିକାରୀମାନଙ୍କ ସହ ପ୍ରତିମାସରେ ଅନ୍ତତଃ ଗୋଟିଏ ଗ୍ରାମ ପରିଦର୍ଶନ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ଗ୍ରାମ ପରିଦର୍ଶନ ଏବଂ ରାତ୍ରିଯାପନର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଯେ ଜନସାଧାରଣଙ୍କସହ ପ୍ରତ୍ୟକ୍ଷ ସଂପର୍କ ସ୍ଥାପନକରି ଯୋଜନାର କାର୍ଯ୍ୟକାରିତା ସଂପର୍କରେ ଉପଯୁକ୍ତ ସମୀକ୍ଷା କରିବା, ବିଭିନ୍ନ ବିଭାଗ ଓ କର୍ମଚାରୀମାନଙ୍କର ଭୂମିକା ଅନୁଧ୍ୟାନ କରିବା ଏବଂ ଗ୍ରାମାଞ୍ଚଳରେ ବାସକରୁଥିବା ଲୋକମାନଙ୍କର ବିଭିନ୍ନ ଅଭାବ ଅସୁବିଧା ତଥା ତାହାର ଦୂରୀକରଣ ପାଇଁ ପନ୍ଥା ନିର୍ଦ୍ଧାରଣ ସଂପର୍କରେ ସବିଶେଷ ତଥ୍ୟ ସଂଗ୍ରହ କରିବା । ଏହା ସରକାରଙ୍କୁ ନିଶ୍ଚିତରୂପେ ଆବଶ୍ୟକୀୟ "ଫିଡ୍‌ବେକ୍" ଯୋଗାଇଦେଇ ପାରିବ । ଏହି ପଦ୍ଧତି ନିଶ୍ଚିତରୂପେ ଫଳପ୍ରସୂ ହୋଇଛି । ଆମେ ପଶୁପାଳନ, ମତ୍ସ୍ୟଚାଷ, ଜଳସେଚନ, ଜିଲ୍ଲାସୂଚନା ଓ ଲୋକସଂପର୍କ ଅଧିକାରୀମାନଙ୍କର ଭୂମିକା ଏବଂ ଅଣୁସ୍ତରୀୟ ଯୋଜନା ପ୍ରଣୟନ କ୍ଷେତ୍ରରେ କେତେକ ତ୍ରୁଟିରହିଥିବା ବିଷୟ ଜାଣିପାରିଛୁ ।

## ସକ୍ରିୟ ଦକ୍ଷ ପ୍ରଶାସନ

ଲୋକମାନଙ୍କର ଆବଶ୍ୟକତା ପରିପୂରଣ ପାଇଁ ପ୍ରଶାସନକୁ ଦକ୍ଷ ଓ ସକ୍ରିୟ କରିବା ଉଦ୍ଦେଶ୍ୟରେ ଅତୀତରେ ଯେଉଁ ସମୀକ୍ଷା ପଦ୍ଧତି ପ୍ରଚଳନ କରାଯାଇଥିଲା, ତାହା ବର୍ତ୍ତମାନ ନିଷ୍କ୍ରିୟ ହୋଇଯାଇଛି । ତାହାର ପୁନରୁଦ୍ଧାର ଏବଂ ଆବଶ୍ୟକ କ୍ଷେତ୍ରରେ ଏହି ପୁରୁଣା ପଦ୍ଧତି ପରିବର୍ତ୍ତନର ଆବଶ୍ୟକତା ଆଜି ଅନୁଭୂତ ହେଉଛି । ଏହି ଉଦ୍ଦେଶ୍ୟରେ ରାଜ୍ୟରେ ଏକ ସୁସଂସଂପନ୍ନ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଛି । ମୁଖ୍ୟମନ୍ତ୍ରୀଙ୍କ ନିଷ୍ପତ୍ତିକ୍ରମେ ରାଜ୍ୟର ୫ଜଣ ବରିଷ୍ଠତମ ପଦାଧିକାରୀ ସମ୍ମିଳିତଭାବେ ପ୍ରତ୍ୟେକ ଜିଲ୍ଲାରେ କାର୍ଯ୍ୟକାରୀ ହେଉଥିବା ଯୋଜନାର ସମସ୍ତ ବିଭାଗ ସଂପର୍କରେ ସମୀକ୍ଷା କରୁଛନ୍ତି । ପରିଦର୍ଶନ ଦାୟିତ୍ୱ ନେଇଥିବା ଏହି ୫ଜଣ ଅଧିକାରୀଙ୍କ ମଧ୍ୟରେ ୪ଜଣ କେନ୍ଦ୍ରସରକାରଙ୍କର ଶାସନସଚିବ ସ୍ତରର ପଦାଧିକାରୀ । ଚଳିତବର୍ଷ ଅଗଷ୍ଟମାସର ମଧ୍ୟଭାଗ ସୁଦ୍ଧା ୧୩ଟିଯାକ ଜିଲ୍ଲା ପରିଦର୍ଶନ ପରେ ଲୋକମାନଙ୍କର ଆବଶ୍ୟକତା ତଥା କ୍ଷେତ୍ର ସ୍ତରୀୟ ପ୍ରଶାସନ ସଂପର୍କରେ ସେମାନେ ସରକାରଙ୍କୁ ଅବହିତ କରିବେ । ଅଧିକନ୍ତୁ ଶାସନ ସଚିବମାନଙ୍କ ଦ୍ୱାରା ବିଭାଗୀୟ ମୁଖ୍ୟଦପ୍ତରଗୁଡ଼ିକର ପରିଦର୍ଶନ ପୁନଃ ପ୍ରଚଳିତ ହୋଇଛି ଏବଂ ଏହାର ଆଶୁକାର୍ଯ୍ୟକାରିତା ପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଛି । ଏହାବ୍ୟତୀତ ୩ଟି ତହସିଲ ଓ ୫ଟି ବ୍ଲକ୍ ପ୍ରତିବର୍ଷ ଅଚାନକଭାବେ ପରିଦର୍ଶନ କରି ଏହାର ଫଳାଫଳ ସଂପର୍କରେ ସରକାରଙ୍କୁ ରିପୋର୍ଟ ଦେବା ପାଇଁ ସବୁ ଜିଲ୍ଲାପାଳଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ସଚିବାଳୟସ୍ତରରେ ବାକିପଡ଼ିଥିବା କାମ ଶୀଘ୍ର ଶେଷକରିବା ଏବଂ ସଚିବାଳୟ ବିଭାଗୀୟ ମୁଖ୍ୟ ତଥା କ୍ଷେତ୍ରସ୍ତରର ବିଭିନ୍ନ କାର୍ଯ୍ୟାଳୟ ମଧ୍ୟରେ କ୍ଷମତାର ବଣ୍ଟନ କରିବା ପାଇଁ ଏକ ସଂଶୋଧିତ ଯୋଜନା ପ୍ରସ୍ତୁତ କରାଯାଉଛି । ମୁଁ ନିଜେ ତହସିଲ ଓ ବ୍ଲକଗୁଡ଼ିକ ଅଚାନକଭାବେ ପରିଦର୍ଶନ କରୁଛି ଏବଂ ଏହାଫଳରେ ଏହି କାର୍ଯ୍ୟାଳୟଗୁଡ଼ିକର ଅନେକ ଦୁର୍ବଳତା ମୋର ଦୃଷ୍ଟିଗୋଚରହେବା ସଙ୍ଗେସଙ୍ଗେ ଏହି ପରିଦର୍ଶନ ବିଶେଷ ଉପାଦେୟ ହୋଇପାରିଛି । ଏହି ବିଭିନ୍ନ [illegible] ସାମୂହିକ ପ୍ରଭାବ ଓ ପ୍ରତିକ୍ରିୟା ସହଜରେ ପରିଦୃଷ୍ଟ ଏବଂ ଅନୁଭୂତ ହୋଇପାରିବ ଏବଂ ଏହାର କୌଣସି ଅତିରଞ୍ଜନର ଅବକାଶ ନାହିଁ ।

କ୍ଷେତ୍ରପ୍ରଶାସନକୁ ସୁଦକ୍ଷ ଏବଂ ସକ୍ରିୟ କରିବାପାଇଁ ନିଆଯାଉଥିବା ପଦକ୍ଷେପଗୁଡ଼ିକ ସର୍ବନିମ୍ନ କର୍ମଦକ୍ଷତାଠାରୁ ଉଚ୍ଚସ୍ତରରେ କାର୍ଯ୍ୟକାରୀ କରିବା ସମ୍ଭବପର ହେବ । ସର୍ବନିମ୍ନ କର୍ମଦକ୍ଷତା ପାଇଁ କ୍ଷେତ୍ର ପରିଦର୍ଶନ ଏବଂ ସମୀକ୍ଷାର ଆବଶ୍ୟକତା ରହିଛି । ଏହି ପରିଦର୍ଶନ ତଥା ସମୀକ୍ଷା ସମ୍ପୂର୍ଣ୍ଣରୂ ପ୍ରତୀୟମାନ ହୁଏ ଯେ ଏହି ସମସ୍ୟାଗୁଡ଼ିକ ସମାଧାନର ଊର୍ଦ୍ଧ୍ୱରେ ନୁହେଁ । ପଞ୍ଚାୟତ ଉପରେ ଦୃଷ୍ଟିପାତ ପାଇଁ ନିଆଯାଉଥିବା ପଦକ୍ଷେପ ତଥା ପ୍ରଶାସନିକ ଦକ୍ଷତା ବୃଦ୍ଧି ପ୍ରକ୍ରିୟା ନିଶ୍ଚିତରୂପେ ଜନସାଧାରଣଙ୍କର ମନୋଭାବ ଅଭାବ ଅସୁବିଧା ତଥା ବିଭିନ୍ନ କାର୍ଯ୍ୟକ୍ରମର ଦୋଷଦୁର୍ବଳତା ସଂପର୍କରେ ସରକାରଙ୍କୁ ବିଶେଷ ତଥ୍ୟ ଯୋଗାଇପାରିବ । ବର୍ତ୍ତମାନ ସାଙ୍ଗଠନିକ ଭିତ୍ତି ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଉଛି ।

## ଅର୍ଥନୈତିକ ପ୍ରଗତି ନିମନ୍ତେ ମିଶନ୍

ସମସ୍ତେ ନିଶ୍ଚିତରୂପେ ସୁବିଦିତ ଯେ ଭାରତ ସରକାର, ଡକ୍ଟର ଶାମ୍‌ପିତ୍ରୋଡ଼ାଙ୍କ ନେତୃତ୍ୱରେ ୫ଟି ଟେକ୍‌ନୋଲୋଜି ମିଶନ ପ୍ରସ୍ତୁତ କରିଛନ୍ତି । ସେଗୁଡ଼ିକ ହେଲା (କ) ପାନୀୟଜଳ (ଖ) ପ୍ରତିଷେଧକ ବ୍ୟବସ୍ଥା (ଗ) ପ୍ରୌଢ଼ଶିକ୍ଷା, (ଘ) ତୈଳବୀଜ ଉତ୍ପାଦନ ଏବଂ (ଙ) ଦୂରଯୋଗାଯୋଗ ବ୍ୟବସ୍ଥା । ଏ ଗୁଡ଼ିକର ଆଭିମୁଖ୍ୟହେଲା–

(କ) ୧୯୯୦ ମସିହା ସୁଦ୍ଧା ମୁଣ୍ଡପିଛା ଦୈନିକ ୪୦ ଲିଟର ପାନୀୟ ଜଳ ଯୋଗାଣ ।

(ଖ) ପ୍ରତିବର୍ଷ ୨୦ ନିୟୁତାଧିକ ଗର୍ଭବତୀ ମହିଳା ତଥା ସମ ସଂଖ୍ୟକ ଶିଶୁମାନଙ୍କୁ ମାରାତ୍ମକ ରୋଗଗୁଡ଼ିକରୁ ରକ୍ଷା କରିବା ପାଇଁ ପ୍ରତିଷେଧକ ବ୍ୟବସ୍ଥା ।

(ଗ) ୧୫ବର୍ଷରୁ ୩୫ ବର୍ଷ ମଧ୍ୟରେ ପ୍ରତିବର୍ଷ ୧୦ ନିୟୁତ ଲୋକଙ୍କୁ ଚଳନଉପଯୋଗୀ ଆବଶ୍ୟକୀୟ ଶିକ୍ଷା ପ୍ରଦାନ ।

(ଘ) ଆଗାମୀ ୩ବର୍ଷ ମଧ୍ୟରେ ତୈଳବୀଜ ଉତ୍ପାଦନ ବିଶେଷଭାବରେ ବୃଦ୍ଧି କରି ଖାଇବା ତେଲର କ୍ଷେତ୍ରରେ ଆତ୍ମନିର୍ଭରଶୀଳତା ହାସଲକରିବା ।

(ଙ) ଦୂର ଯୋଗାଯୋଗ ସେବାରେ ଗୁଣାତ୍ମକ ଅଭିବୃଦ୍ଧି ତଥା ଗ୍ରାମାଞ୍ଚଳ ଯୋଗାଯୋଗ ବ୍ୟବସ୍ଥାର ବିକାଶ ଓ ଆଭ୍ୟନ୍ତରୀଣ ଅଞ୍ଚଳ ସହିତ ଫଳପ୍ରଦ ସଂପର୍କ ସ୍ଥାପନ କରିବା ।

ଆମେ ଆମ ରାଜ୍ୟର ଆବଶ୍ୟକତା ସଂପର୍କରେ ସଯତ୍ନ ଅନୁଧ୍ୟାନ କରିଛୁ । ପରିଶେଷରେ ଯେଉଁ ତିନୋଟି ସୂଚନା ସମ୍ବଳିତ ପୁସ୍ତକ ଆମ ପାଇଁ ଏ ଦିଗରେ ବିଶେଷ ଭାବେ ସହାୟକ ହୋଇଛି, ସେଗୁଡ଼ିକ ହେଉଛି କେନ୍ଦ୍ର ଓ ରାଜ୍ୟ ସରକାରଙ୍କର ଅର୍ଥନୈତିକ ସର୍ବେକ୍ଷଣ ଦୁଇଟି ପୁସ୍ତକ (ପ୍ରଥମଥର ପାଇଁ ଆବଶ୍ୟକୀୟ ସର୍ଭେ ପରେ ଏ ପୁସ୍ତକ ପ୍ରକାଶିତ ହୋଇଛି । ଏବଂ ସପ୍ତମ ଯୋଜନାର ମଧ୍ୟବର୍ତ୍ତୀକାଳୀନ ବିବରଣୀ । ଆମ ମତରେ ରାଜ୍ୟର ଅର୍ଥନୈତିକ ଉନ୍ନୟନକୁ ତ୍ୱରାନ୍ୱିତ କରିବା ପାଇଁ ନିମ୍ନୋକ୍ତ ମତେ ବିଭିନ୍ନ କାର୍ଯ୍ୟକ୍ରମର ଗୁରୁତ୍ୱ ନିର୍ଦ୍ଧାରଣ କରିବା ଉଚିତ୍ ହେବ ।

**(୧) ଜନ ସଂଖ୍ୟା ଅଭିବୃଦ୍ଧି ହ୍ରାସ କରିବା**—ଯଦିଓ ଆମେ ଏ ଦିଗରେ ବିଶେଷ ସାଫଲ୍ୟ ଲାଭ କରିଛୁ ତଥାପି ଏ କ୍ଷେତ୍ରରେ ଅଧିକ ସକ୍ରିୟ ପଦକ୍ଷେପର ଆବଶ୍ୟକତା ରହିଛି ।

**(୨) କୃଷି ଉତ୍ପାଦନ ଅଭିବୃଦ୍ଧି ଏବଂ ଅଧିକ ଜମିକୁ ଜଳସେଚିତ କରିବା** । କୃଷି ଉତ୍ପାଦନ ବୃଦ୍ଧି ଉଦ୍ଦେଶ୍ୟରେ (କ) ସଂପ୍ରସାରଣ ସେବାର ପୁନର୍ବିନ୍ୟାସ (ଖ) ଜଳସେଚନ ସୁବିଧା ବୃଦ୍ଧି (ଗ) ଫସଲ ଖସଡ଼ାର ପରିବର୍ତ୍ତନ (ଅଧିକ ଅମଳକ୍ଷମ ଓ ଉପଯୁକ୍ତ କିସମ) (ଘ) ଅଧିକତର ସାର ପ୍ରୟୋଗ ଏବଂ (ଙ) ସଘନ କୃଷି ନିମନ୍ତେ ଜଳଉତ୍ସର ବ୍ୟବହାର ।

## (୩) ଶକ୍ତି ଉତ୍ପାଦନ ଅଭିବୃଦ୍ଧି

ଏହି କ୍ଷେତ୍ରରେ ଆମର ପ୍ରଚେଷ୍ଟା ନିମ୍ନୋକ୍ତମତେ ଉଲ୍ଲେଖ କରାଯାଇ ପାରେ । (କ) ସମ୍ଭବପର ହେଲେ ବ୍ୟକ୍ତିଗତ ଉଦ୍ୟୋଗ ମାଧ୍ୟମରେ ଅଧିକ ଶକ୍ତି ଉତ୍ପାଦନ (ଖ) ବିଦ୍ୟୁତ୍ ଶକ୍ତିର ବୃହତ୍ତର ବ୍ୟବହାରକାରୀମାନଙ୍କ ଦ୍ୱାରା ଶକ୍ତି ଉତ୍ପାଦନ ପାଇଁ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ (ଗ) ଓଡ଼ିଶା ବିଦ୍ୟୁତ୍ ବୋର୍ଡର ଦକ୍ଷତା ବୃଦ୍ଧି (ଘ) କେନ୍ଦ୍ର ସରକାରଙ୍କର ସହାୟତାରେ ଅନ୍ୟ ଶକ୍ତି ଉତ୍ପାଦନ ପ୍ରକଳ୍ପ ନିର୍ମାଣ । (ଙ) ସଂପ୍ରତି କାର୍ଯ୍ୟକାରୀ ହେଉଥିବା ପ୍ରକଳ୍ପ ଗୁଡ଼ିକୁ ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ ସଂପୂର୍ଣ୍ଣ କରିବା ପାଇଁ ଗୁରୁତ୍ୱ ନିର୍ଦ୍ଧାରଣ ଓ ପଦକ୍ଷେପ ।

ଦେଶରେ ଉତ୍ପାଦିତ ହେଉଥିବା ବିଦ୍ୟୁତ୍ ଶକ୍ତିର ଅପେକ୍ଷାକୃତ ଉତ୍ତମ ବଣ୍ଟନ ବ୍ୟବସ୍ଥା ଓଡ଼ିଶାକୁ ମଧ୍ୟ ଉପକୃତ କରିପାରିବ । ସପ୍ତମ ପଞ୍ଚବାର୍ଷିକ ଯୋଜନାର ମଧ୍ୟବର୍ତ୍ତୀ କାଳୀନ ସମୀକ୍ଷା ରିପୋର୍ଟ ଅନୁଯାୟୀ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ଶାଖାକୁ ତଥା ଯେଉଁ ଅଞ୍ଚଳରେ ବିଶେଷ ଭାବେ ଶକ୍ତିର ଅଭାବ ଅନୁଭୂତ ହେଉଛି ସେହି ଅଞ୍ଚଳକୁ ଅଧିକ ଶକ୍ତି ଯୋଗାଇଦେବା ବିଷୟ ବିଚାର କରାଯାଉଛି । ଏହି ଉଲ୍ଲେଖାଂଶ ନିମ୍ନରେ ଉଦ୍ଧୃତ ହେଲା ।

"1.20. Analysis of power demand indicates a requirement of 278 billion kwh in 1989-90. However the supply possibilities in sight add up to 275 billion kwh ( including import of 2 billion kwh ) which implies a marginal energy shortage. The expected shortage, though marginal is not evenly distrrbuted and could be more sieverely felt in some regions than in others, sustaining a five percent growth profile will clearly require measures to improve the generation performance beyond targetted levels, reduce T. & D. losses, move power to high deficit regions and allocate supplies on a priority basis to key sectors."

## (୪) ପ୍ରାଥମିକ ଶିକ୍ଷାର ସାର୍ବଜନୀନକରଣ

## (୫) ନିଯୁକ୍ତିପାଇଁ ସୁଯୋଗ ସୃଷ୍ଟି

ବୃକ୍ଷରୋପଣ, ତସର ଉତ୍ପାଦନ ମାଧ୍ୟମରେ ଏବଂ ଶିକ୍ଷିତ ଯୁବକମାନଙ୍କ ପାଇଁ ନିଯୋଜନ ନିମନ୍ତେ ଅଧିକ ସୁଯୋଗ ସୃଷ୍ଟିପାଇଁ ଉଦ୍ୟମ କରାଯାଉଛି । ଏହି ସବୁ କାର୍ଯ୍ୟକ୍ରମ ମାଧ୍ୟମରେ ପ୍ରାୟ ୩ ଲକ୍ଷ ଲୋକଙ୍କ ନିମନ୍ତେ ନିଯୁକ୍ତି ସୁବିଧା ସୃଷ୍ଟି କରାଯିବ ।

ରାଜ୍ୟର ସାମୁହିକ ଅର୍ଥନୈତିକ ବିକାଶ ନିମନ୍ତେ ଉପଯୁକ୍ତ ପାଞ୍ଚୋଟି କାର୍ଯ୍ୟକ୍ରମକୁ ନିଷ୍ଠାର ସହ କାର୍ଯ୍ୟକାରୀ କରାଯିବ । ଏହା କହିବା ଅନାବଶ୍ୟକ ଯେ ଅର୍ଥନୈତିକ ଦୃଷ୍ଟିକୋଣରୁ ଏକ ସୁଦୃଢ଼ ରାଜ୍ୟ ହିଁ ଜନସାଧାରଣଙ୍କର କ୍ରମବର୍ଦ୍ଧିଷ୍ଣୁ ଆଶା ଓ ଆକାଂକ୍ଷା ପରିପୂରଣ ଦିଗରେ ସକ୍ରିୟ ପଦକ୍ଷେପ ନେଇ ପାରିବ ।

ସଂପୃକ୍ତ ବିଭାଗୀୟ ସଚିବମାନେ ସପ୍ତମ ପଞ୍ଚବାର୍ଷିକ ଯୋଜନାର ବାକି ଦୁଇବର୍ଷ ଏବଂ ଅଷ୍ଟମ ଯୋଜନା କାଳ ମଧ୍ୟରେ ଏହି ୫ଟି ଆଭିମୁଖ୍ୟର ସଫଳ ରୂପାୟନ ପାଇଁ ଯୋଜନା, କାର୍ଯ୍ୟକ୍ରମ ଲକ୍ଷ୍ୟ ଏବଂ ସମୟ ସୂଚୀ ସମ୍ବଳିତ ନଥିପତ୍ର ପ୍ରସ୍ତୁତ କରିବେ । କେନ୍ଦ୍ରୀୟ ଟେକ୍‌ନୋଲୋଜି ମିଶନ୍ ନିମନ୍ତେ ଯେଉଁ କ୍ଷେତ୍ର ପରିଚାଳନା ପଦ୍ଧତି ପ୍ରବର୍ତ୍ତନ କରାଯିବ ରାଜ୍ୟ ମିଶନ୍‌ର ଅଭିମୁଖ୍ୟ କାର୍ଯ୍ୟକାରୀ କରିବା ଦିଗରେ ତାହାକୁ ମଧ୍ୟ ବ୍ୟବହାର କରାଯିବ ଏବଂ ଶାସନ ସଚିବ ସ୍ତରରେ କୌଣସି କମିଟି ଗଠିତ ନହୋଇ ଉକ୍ତ ପଦ୍ଧତି ମାଧ୍ୟମରେ ହିଁ ଏହିସବୁ କାର୍ଯ୍ୟକ୍ରମ ପରିଚାଳନା କରାଯିବ ।

## ଜନତାଙ୍କର ଦ୍ୱାରଦେଶରେ

ବ୍ଲକ୍, ତହସିଲ୍, ରେଜିଷ୍ଟ୍ରେସନ୍ ଅଫିସ୍ ଏବଂ ପୁଲିସ୍ ଥାନାର ପରିସୀମାର ସମୀକରଣ କ୍ଷେତ୍ର ପ୍ରଶାସନ ପାଇଁ ନିଶ୍ଚିତ ରୂପେ ଏକ ଆଦର୍ଶ ପନ୍ଥା । ତହସିଲ୍ ପ୍ରଶାସନରେ ମଧ୍ୟ ଏକ ସମନ୍ୱିତ ପଦ୍ଧତି ଅନୁସରଣ କରାଯିବା ଆବଶ୍ୟକ । ଏହା ଫଳରେ ରାଜସ୍ୱ ପ୍ରଶାସନର ସମସ୍ତ କାର୍ଯ୍ୟକ୍ରମ ଅଗ୍ରାଧିକାର ନିର୍ଦ୍ଧାରଣ କରି ତହସିଲଦାର ନିଜ କର୍ମଚାରୀମାନଙ୍କ ମାଧ୍ୟମରେ କାର୍ଯ୍ୟକାରୀ କରିପାରିବେ । ଲୋକମାନଙ୍କ ସହ ଅଧିକ ଘନିଷ୍ଠ ହେବା ଏବଂ ସନ୍ନିକଟ ହେବା ପାଇଁ ଆମକୁ ଅଧିକ ଜିଲା, ଅଧିକ ତହସିଲ ଏବଂ ଅଧିକ ରେଜିଷ୍ଟ୍ରେସନ ଅଫିସ୍ ପ୍ରତିଷ୍ଠା କରିବାକୁ ପଡ଼ିବ । ବିଶେଷତଃ ପ୍ରଶାସନିକ କଚେରୀ ସମେତ ବିଭିନ୍ନ ବିଚାରାଳୟମାନଙ୍କରେ ବହୁ ଭୂସଂସାର ମାମଲା ଦୀର୍ଘଦିନ ଧରି ବିଚାରଧୀନ ରହିଛି । ସଂପ୍ରତି ୧୨ ହଜାର ସିଲିଂ ବହିର୍ଭୁତ ଭୂମି ସହ ଜଡ଼ିତ ୧୮୦ଟି ମାମଲା ମାନ୍ୟବର ହାଇକୋର୍ଟଙ୍କ ନିକଟରେ ଏବଂ ୯୧୨ ଏକର ସିଲିଂ ବହିର୍ଭୁତ ଜମିର ୧୨ଟି ମାମଲା ମାନ୍ୟବର ସୁପ୍ରିମ କୋର୍ଟ ନିକଟରେ ୧୯୭୮ ମସିହା ପରଠାରୁ ବିଚାର ପାଇଁ ପଡ଼ିରହିଛି । ପ୍ରଶାସନିକ ବିଚାରାଳୟ ପରିସର ମଧ୍ୟରେ ତହସିଲଦାରଙ୍କଠାରୁ କମିଶନରଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକଙ୍କର ବିଚାରଧାରାକୁ ପ୍ରତିହତ କରୁଛନ୍ତି ଏବଂ ଏହା ଚକ ଭିତରେ ଆଉ ଏକ ଚକ ପରି ପରିସ୍ଥିତି ସୃଷ୍ଟି କରୁଛି । ଆମେ ଏହି ଯେଉଁ ପ୍ରଥା ଉତ୍ତରାଧିକାର କରିଛେ ତାହାର ଏକ ପୂର୍ଣ୍ଣାଙ୍ଗ ସମୀକ୍ଷାର ଆବଶ୍ୟକତା ଅନୁଭୂତ ହେଉଛି । ନ୍ୟାୟପୂର୍ଣ୍ଣ ବିଚାର ରୂପେ ପ୍ରତୀତ ହେଉଥିବା ବିଳମ୍ବିତ ନିଷ୍ପତ୍ତି ଅପେକ୍ଷା ଆଶୁ ନ୍ୟାୟ ପ୍ରଦାନ ଅଧିକ ସ୍ୱାଗତଯୋଗ୍ୟ ।

ଆମେ ସଂପ୍ରତି ଏପରି ଏକ ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ ଯାଉଛେ ଯାହା ଫଳରେ କି ଯେଉଁ ଜିଲ୍ଲାମାନଙ୍କୁ ଫଟୋଷ୍ଟାଟ୍ ମେସିନ୍ ଯୋଗାଯାଇ ପାରିନାହିଁ ସେଠାରେ କଂପ୍ୟୁଟର ପ୍ରତିଷ୍ଠା ପାଇଁ ପଦକ୍ଷେପ ନିଆଯାଉଛି । ହାଇକୋର୍ଟରେ ଗ୍ରହଣ କରାଯାଉଥିଲେ ମଧ୍ୟ ଓଡ଼ିଶାରେ ବର୍ତ୍ତମାନ ସୁଦ୍ଧା ଫଟୋଷ୍ଟାଟ୍ କପିକୁ ସାର୍ଟିଫାଏଡ୍ କପିରୂପେ ଗ୍ରହଣ କରାଯାଉନାହିଁ । ବର୍ତ୍ତମାନ ସୁଦ୍ଧା ରେଜିଷ୍ଟ୍ରେସନ୍ ଉଦ୍ଦେଶ୍ୟରେ ଫଟୋଷ୍ଟାଟ କପି ବ୍ୟବହୃତ ହୋଇନାହିଁ । ଏହାହେଲେ ନଥିପତ୍ର ରେଜିଷ୍ଟ୍ରେସନ୍ କରିବା ପାଇଁ ଲୋକମାନଙ୍କୁ ଅଯଥାରେ ଦୀର୍ଘକାଳ ଅପେକ୍ଷା କରିବାକୁ ପଡ଼ନ୍ତା ନାହିଁ । ବର୍ତ୍ତମାନ ଏହି ସବୁ ପ୍ରସ୍ତାବଗୁଡ଼ିକ ସକ୍ରିୟ ବିଚାରଧୀନ ଅଛି ।

ଏଣୁ ନିବନ୍ଧରୁ ସୂଚିତ ହେଉଛି ସଫଳତାର ଶିଖରରେ ଉପନୀତ ହେବାପାଇଁ ଅନେକ ରାସ୍ତା ଆମକୁ ଅତିକ୍ରମ କରିବାକୁ ପଡ଼ିବ । ମାତ୍ର ପ୍ରଗତି କ୍ଷେତ୍ରରେ ନବଦିଗନ୍ତର ସନ୍ଧାନ ମିଳିଲାଣି । ନୂତନ ଧାରା ତା'ର ସ୍ୱାକ୍ଷର ଆଙ୍କିଲାଣି । ସଂବେଦନଶୀଳ ପ୍ରଶାସନକୁ ସାର୍ଥକ କରିବା ପାଇଁ ସମ୍ବାଦପତ୍ର ସମେତ ସବୁ କ୍ଷେତ୍ରରୁ ପୂର୍ଣ୍ଣ ସହଯୋଗର ଆଜି ଆବଶ୍ୟକତା ରହିଛି ।

ମୁଖ୍ୟଶାସନ ସଚିବ



ବିଭିନ୍ନ କ୍ଷେତ୍ରରେ ନିଜକୁ ଭାରତରେ ସୁପ୍ରତିଷ୍ଠିତ କରିବା ପାଇଁ ଓଡ଼ିଶା ପକ୍ଷରୁ ନିରବଚ୍ଛିନ୍ନ ଉଦ୍ୟମ ଚାଲିଛି । କୃଷି, ଜଳସେଚନ, ବିଦ୍ୟୁତ୍ ଶକ୍ତିର ବିକାଶ, ଶିକ୍ଷା ପ୍ରସାର, ଜଙ୍ଗଲ ଉନ୍ନୟନ ଓ ବିଶେଷ କରି ଗରିବ ଲୋକଙ୍କ ଉତ୍ଥାନ ପାଇଁ ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି ।

# ସାର୍ଥକ ସ୍ୱପ୍ନ

## ଥରେ ଧାନବୁଣି ଦି'ଥର ଅମଳ

ଜଳେଶ୍ୱର ବ୍ଲକ୍ ଅନ୍ତର୍ଗତ ଲକ୍ଷ୍ମଣନାଥ ରେଲଷ୍ଟେସନ୍ ନିକଟସ୍ଥ ସାହାଡ଼ାପଡ଼ା ଗ୍ରାମର ଶ୍ରୀ ତ୍ରୈଲୋକ୍ୟନାଥ ସେଣଙ୍କୁ ୧୯୮୭ ମସିହା ନିମନ୍ତେ ବାଲେଶ୍ୱର ଜିଲ୍ଲାର ସର୍ବଶ୍ରେଷ୍ଠ ଚାଷୀ ରୂପେ ସମ୍ମାନିତ କରାଯାଇଛି । ଜେଲ୍ଲାର ମୁଖ୍ୟ ସଂପ୍ରସାରଣ କୃଷି ବିଶେଷଜ୍ଞ ଶ୍ରୀ ଆଦିତ୍ୟ ପ୍ରସାଦ କାନୁନଗୋ ପ୍ରକାଶ କରିଛନ୍ତି ୧୯୮୬ ମସିହା ଖରିଫ୍ ଋତୁରେ ସି. ଆର. ୧୦୦୯ ସାବିତ୍ରୀ ଧାନ ଚାଷ କରି ଶ୍ରୀ ସେଣ ଏକର ପିଛା ୧୫୦ ଦିନରେ ୪ ଟନ୍ ଧାନ ଅମଳ କରିଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ସେହି ଧାନ ମୁଳକୁ ସଂରକ୍ଷଣ କରି ସେଥିରେ ୪୬ କିଲୋ ୟୁରିଆ, ୭୫ କିଲୋ ସୁପର ଫସ୍‌ଫେଟ୍, ୩୦ କିଲୋ ମ୍ୟୁରେଟ୍ ଅଫ୍ ପଟାସ୍ ଓ ୫ କିଲୋ ଥିମେଟ୍ (କୀଟନାଶକ) ବ୍ୟବହାର କରି ଏବଂ ଜଳସେଚନ କରି ରବି ଋତୁରେ ମାତ୍ର ୧୨୫ ଦିନରେ ତାଠାରୁ ଯଥେଷ୍ଟ ଅଧିକ ଧାନ ଉତ୍ପାଦନ ହୋଇପାରିଛି ।

କୃଷି ବୈଜ୍ଞାନିକମାନେ ଗବେଷଣା କରି ଜାଣି ପାରିଛନ୍ତି ଯେ ଉପଯୁକ୍ତ ପରିମାଣରେ ଉପାଦେୟ ସାର ଓ କୀଟନାଶକ ପ୍ରୟୋଗ ତଥା ଜଳସେଚନ ଦ୍ୱାରା ହାରାହାରି ୭୦ ରୁ ୮୦ ଭୂରଣ୍ଡାର ଉତ୍ପାଦନ ହୋଇପାରିବ । ଏଥିପାଇଁ ଅଗ୍ରଣୀ ଉତ୍କଳ ଚାଷୀମାନେ, ଆଞ୍ଚଳିକ ଗବେଷଣା କେନ୍ଦ୍ର ସହ ଯୋଗ ରଖିଲେ ଅଧିକ ଉପକୃତ ହୋଇପାରିବେ ।

## ସପ୍ତର୍ଷି ପଲ୍ଲୀଶ୍ରୋତା ମଣ୍ଡଳୀ

ପଲ୍ଲୀ ବହୁଳ ଶସ୍ୟ ଶ୍ୟାମଳା ଭାରତବର୍ଷର ସମୃଦ୍ଧି କୃଷି ଓ କୃଷକଙ୍କ ପ୍ରଗତି ଉପରେ ଆଧାରିତ । ଶତକଡ଼ା ୭୭ ଭାଗ ଲୋକ ପଲ୍ଲୀ ଅଞ୍ଚଳରେ ବାସ କରିଛନ୍ତି । ଦେଶର ସମୁଦାୟ ଜନସଂଖ୍ୟାର ଶତକଡ଼ା ୨୫ରୁ ୩୦ ଭାଗ ହିଁ ସ୍ୱାକ୍ଷର । ଏଣୁ ବିଭିନ୍ନ ଯୋଜନା, କାର୍ଯ୍ୟକ୍ରମ ଓ ସମାଜ ଉପରେ ଧାରଣା ଦେବାକୁ ଧାରାବାହିକ ପ୍ରଚାର ପଲ୍ଲୀ ଅଞ୍ଚଳରେ ସର୍ବାଗ୍ରେ ଆବଶ୍ୟକ । ପଲ୍ଲୀ ବିକାଶ ଭଳି ଉଦ୍ଦିଷ୍ଟ ଯୋଜନାଗୁଡ଼ିକୁ ଲୋକଙ୍କ ନିକଟରେ ପହଞ୍ଚାଇବାକୁ ପଲ୍ଲୀଶ୍ରୋତା ମଣ୍ଡଳୀ କାର୍ଯ୍ୟକ୍ରମ ଜନ୍ମଲାଭ କରିଛି ।

୧୯୮୫ ମସିହାରେ ଗଞ୍ଜାମ ଜିଲ୍ଲାର ଗ୍ରାମ ପଞ୍ଚାୟତ ସଂଖ୍ୟା ୪୬୭କୁ ବୃଦ୍ଧି ପାଇବା ବେଳେ କବିସୂର୍ଯ୍ୟ ନଗର ବ୍ଲକ୍‌ର ନନ୍ଦିଆପଡ଼ା ଗ୍ରାମ ପଞ୍ଚାୟତ ରୂପେ ଆମପୁଆ ଗ୍ରାମ ପଞ୍ଚାୟତରୁ ଅଲଗା କରି ଗଠନ କରାଗଲା । ଏହି ଗ୍ରାମରେ ସେହି ବର୍ଷ ହିଁ ସୂଚନା ଓ ଲୋକ ସଂପର୍କ ବିଭାଗର ସ୍ୱୀକୃତ ପତ୍ର ସଂଖ୍ୟା ୨୨୮୪୨, ତା ୧୮ । ୬ । ୮୫ ଅନୁଯାୟୀ "ସପ୍ତର୍ଷି ପଲ୍ଲୀଶ୍ରୋତା ମଣ୍ଡଳୀ" ନନ୍ଦିଆ ପଡ଼ାକୁ ସ୍ୱୀକୃତି ଦିଆଯାଇ କାର୍ଯ୍ୟକ୍ଷମ କରାଗଲା । ଏହି ଗ୍ରାମର ଆଗୁଆ ଚାଷୀ ଶ୍ରୀ ଭିକାରୀ ପରିଡ଼ା ମଣ୍ଡଳୀର ଭୂମିକା ଉପରେ ଲୋକଙ୍କୁ ବୁଝାଇ ସଭାପତି ଭାବେ ବହୁ ଶ୍ରମ ସ୍ୱୀକାର କରି ମଣ୍ଡଳୀକୁ ଜନପ୍ରିୟ କରିପାରିଛନ୍ତି । ଆବାହକ ଶ୍ରୀ ଯୁଧିଷ୍ଠିର ବଳାଇ ଜଣେ ଉତ୍ସାହୀ ଚାଷୀ ଭାବେ ନିୟମିତ ମଣ୍ଡଳୀକୁ ସଦସ୍ୟମାନଙ୍କ ସହଯୋଗରେ ତଥା ଗ୍ରାମବାସୀଙ୍କ ଆଗ୍ରହରେ ଚଳାଇ ଆସିଛନ୍ତି ।

ନନ୍ଦିଆପଡ଼ା ଗ୍ରାମଟି କବିସୂର୍ଯ୍ୟ ନଗର ଓ ଆସିକା ଚିନି କାରଖାନା ମଧ୍ୟସ୍ଥ ପଥର ଗ୍ରାମଠାରୁ ମାତ୍ର ଅଧା କି.ମି. ଦୂର ପିଚୁ ସଡ଼କ କଡ଼େ ତଥା 'ଧନେଇ' ନଈର କୂଳରେ ଅବସ୍ଥିତ । ଗ୍ରାମ ଉପକଣ୍ଠରେ ଧନେଇ ନଈର କଳକଳ ନାଦ ସହ ମାଧ୍ୟମିକ ତଥା ନିମ୍ନ ପ୍ରାଥମିକ ବିଦ୍ୟାଳୟର ଛାତ୍ରଛାତ୍ରୀଙ୍କ ଅଧ୍ୟୟନ ଗୁଞ୍ଜନ ବେଶ୍ ଆତ୍ମ ସନ୍ତୋଷ ଆଣି ଦେଉଛି । ଏହା କଡ଼େ ଗ୍ରାମ ନାମ କୀର୍ତ୍ତନ ମଣ୍ଡଳୀ କୋଠଘର ଓ ସପ୍ତର୍ଷି ପଲ୍ଲୀଶ୍ରୋତା ମଣ୍ଡଳୀର କାର୍ଯ୍ୟାଳୟ ନୂତନ କୋଠାଟି ଗ୍ରାମ ସଂସ୍କୃତି ଉପରେ ଆଲୋକପାତ କରୁଛି । ତା' ନିକଟରେ ନୂତନ ଗ୍ରାମପଞ୍ଚାୟତ ଗୃହ ତିଆରି ହୋଇଛି । ପ୍ରଧାନ ସଡ଼କରୁ ପିଚୁ ସଡ଼କଟି ଗ୍ରାମପାର୍ଶ୍ୱ ଲମ୍ବିଛି ଓ ଧନେଇ ନଈ ଶଯ୍ୟାରେ ଶକ୍ତ, ସୁନ୍ଦର ସେତୁ ଦ୍ୱାରା ଗ୍ରାମ ସହିତ ସଂଯୁକ୍ତ କରାଯାଇଛି ।

ଗ୍ରାମରେ ୧୯୪ଟି ଘର ଓ ୧୨୬୯ ଲୋକ ବାସ କରନ୍ତି । ଏମାନଙ୍କ ମଧ୍ୟରୁ ୬୬୭ ଜଣ ପୁରୁଷ ୬୨୮ ଜଣ ମହିଳା । ଗ୍ରାମରେ ହରିଜନଙ୍କ ସଂଖ୍ୟା ୧୫୫ । ଗ୍ରାମର ୧୩୭ ଜଣ ଚାଷୀ ନିରକ୍ଷର ଓ ୬୨୮ ଜଣ ମହିଳାଙ୍କ ମଧ୍ୟରୁ ୨୩୦ ଜଣ ନିରକ୍ଷର ଅଛନ୍ତି । ୬୦୩ ଜଣ ପୁରୁଷ ଓ ମହିଳା ବିବାହିତ । ଏମାନଙ୍କ ମଧ୍ୟରୁ ୩୮ ଜଣ ମହିଳା ପରିବାର ଅସ୍ତ୍ରୋପଚାର କରାଇଥିବା ସ୍ଥଳେ ୭ ଜଣ ପୁରୁଷ ଅସ୍ତ୍ରୋପଚାର କରାଇଛନ୍ତି । ଗ୍ରାମରେ ୮ଟି କୂପ, ୨ଟି ନଳକୂପ, ୨ଟି ପୋଖରୀ ଗ୍ରାମର ଜଳାଭାବ ମେଣ୍ଟାଉଛି । ଧନେଇ ନଈର ଧାର ଗ୍ରାମର ଗୃହପାଳିତ ପଶୁଙ୍କର ସେବାରେ ବିନିଯୋଗ ହୋଇପାରିଛି । ଲୋକମାନେ

ସ୍ୱାସ୍ଥ୍ୟ ଓ ପରିଚ୍ଛନ୍ନତା ରକ୍ଷା ପାଇଁ ଏହାକୁ ବ୍ୟବହାର କରନ୍ତି । ଗ୍ରାମର ୩ ବର୍ଷରୁ ୬ ବର୍ଷର ଛୁଆ ୧୨୫ ଜଣ, ୬ ମାସରୁ ୩ ବର୍ଷର ଛୁଆ ୧୦୫ ଜଣ ଓ ବର୍ଷକ ମଧ୍ୟର ଛୁଆ ୧୮୨ ଜଣଙ୍କ ନିମନ୍ତେ ଏ ଗ୍ରାମରେ ସମନ୍ୱିତ ଶିଶୁ କଲ୍ୟାଣ କାର୍ଯ୍ୟକ୍ରମର ଅଙ୍ଗନବାଡ଼ି କେନ୍ଦ୍ର ଗୋଟିଏ ଖୋଲା-ଯାଇଛି । ଗ୍ରାମର ସେବା ସମବାୟ ସମିତି ମାଧ୍ୟମରେ ଗ୍ରାମବାସୀ କୃଷି ଋଣ, ଗୃହ ନିର୍ମାଣ ଋଣ ପାଇ ପାରୁଛନ୍ତି । ଗ୍ରାମ ଦେବତୀ ମନ୍ଦିର ଓ ଠାକୁରାଣୀ ମନ୍ଦିର ୨ଟି ଗ୍ରାମର ଧାର୍ମିକ ଅନୁଷ୍ଠାନ ମଧ୍ୟରେ ଅନ୍ୟତମ । ଗ୍ରାମରେ ନିର୍ମିତ ନୂତନ କୋଠାଘରେ ନାମ କୀର୍ତ୍ତନ ମଣ୍ଡଳୀରେ ଗ୍ରାମର ୩୦ ଜଣ ଯୁବକ ମୃଦଙ୍ଗ-ଗିନି ବାଦନ କରି ଜଣେ ଶିକ୍ଷକଙ୍କଠାରୁ ତାଲିମ୍ ପାଉଛନ୍ତି । ପ୍ରାୟ ୧୦୦ ଜଣ ଯୁବକ ଗ୍ରାମରେ ବିଭିନ୍ନ କୋଇଲାଖଣି, ଗୁଜରାଟର ସୂତାକଳରେ ଚାକିରୀ କରୁଛନ୍ତି । ଯଦ୍ୱାରା ଗ୍ରାମର ରୋଜଗାର ସୁବିଧା ଯଥେଷ୍ଟ ବୃଦ୍ଧି ପାଇଛି । ୧୯୪ଟି ଘର ମଧ୍ୟରୁ ପ୍ରାୟ ୬୦ଟି ଘରକୁ ବିଦ୍ୟୁତ୍ ନିଆଯାଇଛି । ଗ୍ରାମର ୧୦ ଜଣ ପୁରୁଷ ସରକାରୀ ଚାକିରୀରେ ଅଛନ୍ତି ।

ଗ୍ରାମାଞ୍ଚଳ ଗରିବ ପରିବାରଙ୍କ ଅର୍ଥନୈତିକ ଥଇଥାନ (ଇ. ଆର. ଆର. ପି.) ଯୋଜନାରେ ଗ୍ରାମର ୧୮ଜଣ ବ୍ୟକ୍ତିଙ୍କୁ ପ୍ରାୟ ୯୦ ହଜାର ଟଙ୍କା ପର୍ଯ୍ୟନ୍ତ ସାହାଯ୍ୟ ଦିଆଯାଇଛି । ସେହିପରି ସମନ୍ୱିତ ଗ୍ରାମ ଉନ୍ନୟନ ଯୋଜନା (ଆଇ. ଆର. ଡି. ପି.) ଦ୍ୱାରା ପ୍ରଥମ ଓ ଦ୍ୱିତୀୟ ଦଫା ଋଣ ଗ୍ରାମର ୧୦୦ ଜଣଙ୍କୁ ଦିଆଯାଇଛି । ଏବାବଦରେ ୩ଲକ୍ଷ ଟଙ୍କା ଗ୍ରାମରେ ବିନିଯୋଗ ହୋଇଛି । ଏ ଦୁଇ ଯୋଜନାର ଋଣ ଟଙ୍କାକୁ ଉପକୃତ ବ୍ୟକ୍ତିମାନେ ପରିଶୋଧ କରିପାରିଛନ୍ତି । ଗଞ୍ଜାମ ଜିଲ୍ଲା ଉନ୍ନୟନ ସଂସ୍ଥାର ଅର୍ଥଯୋଗାଣକୁ ସିଣ୍ଡିକେଟ୍ ବ୍ୟାଙ୍କର କବିସୂର୍ଯ୍ୟନଗର ଶାଖା ନନ୍ଦିଆଗଡ଼ାରେ ଋଣବଣ୍ଟନ ଓ ଋଣ ଆଦାୟବେଳେ ସପ୍ତର୍ଷି ପଲ୍ଲୀଶ୍ରୋତା ମଣ୍ଡଳୀର ସଭାପତି ଶ୍ରୀ ଭିକାରୀ ପରିଡ଼ା, ଆବାହକ ଶ୍ରୀ ଯୁଧିଷ୍ଠିର ବେହେରା, ସରପଞ୍ଚ ଶ୍ରୀ ଅରକ୍ଷିତ ପୋଲେଇ ସହଯୋଗ କରିଥାନ୍ତି । କବିସୂର୍ଯ୍ୟନଗର ବ୍ଲକର ଚେୟାରମ୍ୟାନ ଶ୍ରୀ ରଘୁନାଥ ସ୍ୱାଇଁ ଓ ବି. ଡି. ଓ. ଶ୍ରୀ ସୁରେନ୍ଦ୍ରନାଥ ନନ୍ଦ, ସିଣ୍ଡିକେଟ ବ୍ୟାଙ୍କର କ୍ଷେତ୍ର ଅଧିକାରୀ ଶ୍ରୀ ଜୟନ୍ତ କୁମାର ପଣ୍ଡା ତଥା ମ୍ୟାନେଜର ଶ୍ରୀ ସୁବାସଚନ୍ଦ୍ର ପଟ୍ଟନାୟକ ଗ୍ରାମରେ ଏହିସବୁ କାର୍ଯ୍ୟ ନିମନ୍ତେ ପୂର୍ଣ୍ଣ ସହଯୋଗ ଦେଉଥାନ୍ତି ।

ଏହି କୃଷକ ପୀଠ ନନ୍ଦିଆଗଡ଼ାରେ ସିଣ୍ଡିକେଟ ବ୍ୟାଙ୍କ ୫'୨୦ ଲକ୍ଷ ଟଙ୍କା ବିଭିନ୍ନ ଋଣ ମାଧ୍ୟମରେ ବିନିଯୋଗ କରିଛନ୍ତି । ଏଥିରୁ ଇ. ଆର. ଆର. ପି. ଓ ଆଇ. ଆର. ଡି. ପି. ନିମନ୍ତେ ୩'୯୦ ଲକ୍ଷ ଟଙ୍କା ବଣ୍ଟନ କରାଯାଇଛି । ପ୍ରାୟ ଶତକଡ଼ା ୮୭ଭାଗ ଋଣ ଉପକୃତ ବ୍ୟକ୍ତିଙ୍କଠାରୁ ବ୍ୟାଙ୍କ ଆଦାୟ କରିପାରିଛି । ଗ୍ରାମବାସୀମାନେ ବ୍ୟାଙ୍କ ଟର୍ମ ଜମା ଯୋଜନାରେ ୨୪'୯୨ ଲକ୍ଷ ଟଙ୍କା ସଞ୍ଚିତ କରିଛନ୍ତି । ସଞ୍ଚୟ ବ୍ୟାଙ୍କ ଯୋଜନାରେ ୧'୦୮ ଲକ୍ଷ ଟଙ୍କା ଏହି ଗ୍ରାମବାସୀମାନେ ଜମା କରିପାରିଛନ୍ତି । ଡାକଘର ଜାତୀୟ ସଞ୍ଚୟ ସାର୍ଟିଫିକେଟର ଷଷ୍ଠ ସଂସ୍କରଣରେ ୧'୮୨ ଲକ୍ଷ ଟଙ୍କା ଗ୍ରାମବାସୀମାନେ ସଞ୍ଚୟ କରିପାରିଛନ୍ତି । ଏହି ଗ୍ରାମର ୨୩୧ଟି ସଞ୍ଚୟ ବ୍ୟାଙ୍କ ଖାତା ସିଣ୍ଡିକେଟ ବ୍ୟାଙ୍କରେ ଥିବା ପ୍ରକାଶ । ସିଣ୍ଡିକେଟ୍ ବ୍ୟାଙ୍କ ଦ୍ୱାରା ଗ୍ରାମରେ ଗୋବର ଗ୍ୟାସ ପ୍ଲାଣ୍ଟ ନିମନ୍ତେ ୪୨୦୦ ଟଙ୍କା ଋଣ ସହାୟତା ମଧ୍ୟରୁ ୨୮୬୦ ଟଙ୍କା ରିହାତି ପ୍ରତ୍ୟେକ ବ୍ୟକ୍ତିଙ୍କୁ ଦିଆଯାଇ ପ୍ରାୟ ୮ଜଣ ବର୍ତ୍ତମାନ ଗୋବର ଗ୍ୟାସ ପ୍ଲାଣ୍ଟକରି ଜାଳେଣି ଅଭାବ କଷ୍ଟରୁ ଉଦ୍ଧାର ପାଉଛନ୍ତି । ବ୍ୟାଙ୍କ ଆଉ ୩୦ଜଣଙ୍କର ଦରଖାସ୍ତକୁ ମଞ୍ଜୁର ଦେଇଛି । ବଳକା ଋଣ ଟଙ୍କାକୁ ୫ବର୍ଷ ମଧ୍ୟରେ ପରିଶୋଧ କରିବାକୁ ପଦକ୍ଷେପ ନିଆଯାଇଛି ।

ଗ୍ରାମ ପରିମଳ ଯୋଜନା କାର୍ଯ୍ୟକ୍ରମରେ ୧୪ ଜଣ ଗୃହ ସ୍ୱାମୀଙ୍କୁ ବଗିଚାପାଇଁ ପାଇଖାନା ଯୋଗାଇ ଦିଆଯାଇଛି । ମହୁଡ଼ି କୃଷି ଅଞ୍ଚଳ ଭର୍ମି କୁଇଲୟନ ନିମନ୍ତେ ମାଗଣା ଋଣ ୬୦୦ଟଙ୍କା ଲେଖାଏଁ ଗ୍ରାମର କେତେଜଣଙ୍କୁ ମିଳିଛି । ପଲ୍ଲୀଶ୍ରୋତା ମଣ୍ଡଳୀର ସଦସ୍ୟ ଶ୍ରୀ ପଠାଣ ପରିଡ଼ା ପ୍ରଥମ ବ୍ୟକ୍ତି ଏପ୍ରକାର ଋଣ ପ୍ରଥମେ ଗତ ନଭେମ୍ବର ମାସରେ ପାଇଛନ୍ତି । ୧୯୮୪ରେ ଗ୍ରାମ ପଞ୍ଚାୟତ ନୂତନ ଭାବେ ଗଠନ ହେବା ପରେ ବିନା ପ୍ରତିଯୋଗିତାରେ ସରପଞ୍ଚ ନିର୍ବାଚିତ ହୋଇଥିବାରୁ ଗ୍ରାମ ପଞ୍ଚାୟତକୁ ୨୦ହଜାର ଟଙ୍କା ପୁରସ୍କାର ମିଳିଛି । ଗ୍ରାମବାସୀମାନଙ୍କୁ ଏକତ୍ରିତ କରି ସାମୂହିକ ନିଷ୍ପତ୍ତି ଆଲୋଚନା କରିବାର ସୁଯୋଗ "ସପ୍ତର୍ଷି" ପଲ୍ଲୀ-ଶ୍ରୋତା ମଣ୍ଡଳୀ ଦେଇ ପାରୁଛି । ଏହା ଗ୍ରାମବାସୀଙ୍କ ଏକତାର ପ୍ରତୀକ ।

ଗ୍ରାମ୍ୟ ଜମିହୀନ ବ୍ୟକ୍ତିଙ୍କୁ କର୍ମଯୋଗାଣ ଯୋଜନା (ଆର୍. ଏଲ୍. ଇ. ଜି. ପି.) ଦ୍ୱାରା ଗ୍ରାମର ୨୦୦ମିଟର ଗ୍ରାମ୍ୟ ରାସ୍ତାକୁ ୧୦ ହଜାର ଟଙ୍କାରେ ଓ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଗୃହକୁ ୧୫ହଜାର ଟଙ୍କାରେ ନିର୍ମାଣ କରାଯାଇଛି । ମହୁଡ଼ି ପ୍ରତିଷ୍ଠିତ ଅଞ୍ଚଳର ସରକାରୀ କ୍ଷେତ୍ର ବ୍ୟାଙ୍କର ୫୦୦ଟଙ୍କା ଲେଖାଏଁ ଋଣ ସହାୟତା ୨୦ଜଣ ପାଇଛନ୍ତି ।

ପ୍ରତିବର୍ଷ ନନ୍ଦିଆଗଡ଼ା ଗ୍ରାମର ଚାଷୀମାନେ ପ୍ରାୟ ୪ହଜାର ବସ୍ତା ଧାନ, ଗ୍ରାମର ୨୦୦ ଏକର ଜମିରୁ ଆଦାୟ କରିଥାନ୍ତି । ବିରି ଓ ମୁଗ ପ୍ରାୟ ୨୦୦ ବସ୍ତା ମିଳେ । ପନିପରିବା ଦୁଇ ମାସପାଇଁ ମିଳେ । ଗ୍ରାମରୁ ଦୈନିକ ୧୦୦ ଲିଟରଯାଏଁ କ୍ଷୀର ବାହାର ବଜାରକୁ ବିକ୍ରୀପାଇଁ ପଠାଯାଇଥାଏ । ରାଶି, ମାଣ୍ଡିଆ, ମକା, ଚିନାବାଦାମ ମଧ୍ୟ ଆଦାୟ ହେଉଛି । ଏସବୁର ଉତ୍ପାଦନର ବୃଦ୍ଧି ପଛରେ ଗ୍ରାମରେ କାର୍ଯ୍ୟକାରୀ ହେଉଥିବା "ସପ୍ତର୍ଷି ପଲ୍ଲୀଶ୍ରୋତା ମଣ୍ଡଳୀ"ର ସହଜ ଆଶୀର୍ବାଦ ରହିଛି । ସେଠିରେ ଆଲୋଚନାପୂର୍ଣ୍ଣ ପରସ୍ପର ମଧ୍ୟରେ ଆଲୋଚନା-ପରାମର୍ଶ କରିପାରୁଛନ୍ତି । ଗ୍ରାମର ସମସ୍ୟା ମିଳିତ ଭାବେ ଆଲୋଚନା ହୋଇପାରୁଛି ।

ଶୁକ୍ରବାର ତା୨୭-୨-୧୯୮୬ ସନ୍ଧ୍ୟା ୭-୩୦ ଘଣ୍ଟାରୁ ରାତି ୮ ଘଣ୍ଟାର "ପଲ୍ଲୀଶ୍ରୋତା ମଣ୍ଡଳୀ କାର୍ଯ୍ୟକ୍ରମରେ ଚାଷୀ ସମବାୟ ସମିତିର ସଭ୍ୟ ହେବେ କିପରି ?" ପ୍ରଶ୍ନଟି ଆବାହକ ଶ୍ରୀ ଯୁଧିଷ୍ଠିର ବେହେରା ଆକାଶବାଣୀକୁ ପଚାରିଲେ । ଏହାର ଉତ୍ତରରେ ନିୟମ ଜାଣିବା ପରେ ଗ୍ରାମର ୧୭ଜଣ ମଣ୍ଡଳୀ ସଦସ୍ୟ ପ୍ରତ୍ୟେକେ ୬ଟଙ୍କା ଲେଖାଏଁ ଶୁଦା ଦେଇ ସଂପାଦକଙ୍କଠାରୁ ରସିଦ ଗ୍ରହଣକରି ସଭ୍ୟ ହେଲେ । ପ୍ରଥମବର୍ଷ ଏହି ୧୭ ଜଣ କୃଷି ଋଣ ପାଇପାରିଲେ । ନିତାନ୍ତ ଆବଶ୍ୟକ ସମୟରେ ଟଙ୍କା ଓ ସାର ଚାଷୀମାନେ ପାଇପାରିଲେ । ଋଣ ନିମନ୍ତେ ଅନ୍ୟମାନଙ୍କ ଆଗରେ ଯୋଡ଼-ହସ୍ତ ଠିଆହେବାକୁ ଏବେ ପଡୁନାହିଁ ।

ସଭାପତି ଶ୍ରୀ ଭିକାରୀ ପରିଡ଼ା ତା ୨୮-୧୧-୧୯୮୬ ଶୁକ୍ରବାରର ଆଲୋଚନା ସମୟରେ "ଦାରିଦ୍ର୍ୟ ଦୂରୀକରଣପାଇଁ ପଶୁପାଳନ" ଶୁଣିବାପରେ ବୈଜ୍ଞାନିକ ପ୍ରକାରରେ ଗାଈ, ମଇଁଷି, ଛେଳି ଓ ବଳଦ ଆଣିବାପାଇଁ ୩୧ଜଣ ସଭ୍ୟ ମନୋନୀତ ହୋଇପାରିଲେ । ଯଦ୍ୱାରା କ୍ଷୀର ବିକ୍ରୀସହ ବର୍ତ୍ତମାନ ଏହାର ସଂଖ୍ୟା ବଢ଼ିବାରୁ ବିକ୍ରୀକରି ଲାଭବାନ୍ ହୋଇଛନ୍ତି । ବର୍ତ୍ତମାନ ଗ୍ରାମର ୨୧୨ଜଣ ପରିବାରଙ୍କ ମଧ୍ୟରୁ ୧୮୩ଜଣ ଦାରିଦ୍ର୍ୟ ଦୂରୀକରଣ ଯୋଜନାରେ ଗାଈ, ମଇଁଷି, ଛେଳି ପାଇଲେଣି । ଦ୍ୱିତୀୟ କିସ୍ତିରେ ୩୭ ଜଣ ଋଣ ପାଇଛନ୍ତି । ଅତଏବ ପଲ୍ଲୀଶ୍ରୋତା ମଣ୍ଡଳୀ କାର୍ଯ୍ୟକ୍ରମରେ ସାମୂହିକ ଉନ୍ନତି ପ୍ରତିଫଳିତ ହୋଇଛି ।

ମଣ୍ଡଳୀର ସଦସ୍ୟ ଶ୍ରୀ ପଠାଣ ପରିଡ଼ା କହନ୍ତି, ମଙ୍ଗଳବାରର ପଲ୍ଲୀଶ୍ରୋତା ମଣ୍ଡଳୀ କାର୍ଯ୍ୟକ୍ରମରେ ଗୋ-ବସନ୍ତ ରୋଗର ପ୍ରତିଷେଧକ ଓ ପ୍ରତିକାର ଆଲୋଚନା ଶୁଣି କବିସୂର୍ଯ୍ୟନଗରର ପଶୁଚିକିତ୍ସକଙ୍କୁ "ଗୋ ମଡ଼କ"ରୁ ଗ୍ରାମର ଗାଈ, ବାଛୁରୀ, ଗୋରୁ-ମଇଁଷିଙ୍କୁ ରକ୍ଷା କରିବାକୁ କହିଥିଲେ । ପଶୁଚିକିତ୍ସକ ପ୍ରତିଷେଧକ ଇଞ୍ଜେକ୍ସନ ଦେବାସହ ଗ୍ରାମର ମାଟି, ଗୋବର ପରୀକ୍ଷା କରିନେଲେ । ଗତବର୍ଷ ଯେତେ ସଂଖ୍ୟାରେ ପଶୁ ମରିଥିଲେ ଓ ରୋଗାକ୍ରାନ୍ତ ହୋଇଥିଲେ ଏବର୍ଷ ପ୍ରତିରୋଧ କରିହେଲା ।

ମଣ୍ଡଳୀର ସଭ୍ୟ ଶ୍ରୀ ଧର୍ମାନନ୍ଦ ସାହୁ କହନ୍ତି ମଙ୍ଗଳବାର ୬-୧-୮୭ରେ ପଲ୍ଲୀଶ୍ରୋତା ମଣ୍ଡଳୀ କାର୍ଯ୍ୟକ୍ରମରେ "ଖରଟିଆ" ଚିନାବାଦାମ ଚାଷରେ ଉନ୍ନତ ପ୍ରଣାଳୀ" ଆଲୋଚନା ଶୁଣିଲେ । ବିହନ ଲଗାଇବା ପୂର୍ବରୁ ବିଶୋଧନ କରିଲେ, ସମ ପରିମାଣର ରାସାୟନିକ ସାର ପ୍ରୟୋଗ କରିଲେ । ଯଦ୍ୱାରା ଗତବର୍ଷ ଅପେକ୍ଷା ଏବର୍ଷ ପ୍ରାୟ ଦୁଇଗୁଣ ଖରଟିଆ ଚିନାବାଦାମ ଆଦାୟକରି ପାରିଛନ୍ତି ।

ପଲ୍ଲୀଶ୍ରୋତା ମଣ୍ଡଳୀ କାର୍ଯ୍ୟକ୍ରମର ଶୁକ୍ରବାର ୧୩-୨-୮୭ ସନ୍ଧ୍ୟାରେ କୃଷିବିଭାଗ ତରଫରୁ ରାସାୟନିକ ସାର ଇଣ୍ଡୋ-ବ୍ରିଟିଶ୍ ସହାୟତାରେ ଶତକଡ଼ା ୫୦ଭାଗ ରିହାତିରେ କୃଷକମାନଙ୍କୁ ସରକାର ଯୋଗାଉଥିବା ଜାଣି ସଦସ୍ୟ ଶ୍ରୀ ଗଙ୍ଗାଧର ଗୁରୁ ଗ୍ରାମ୍ୟକୃଷି କର୍ମଚାରୀଙ୍କ ମାଧ୍ୟମରେ କୃଷି ଅଧିକାରୀଙ୍କଠାରୁ ମିନିକିଟ୍ ବିହନ ପ୍ୟାକେଟ୍ ଓ ସାର ମାଗଣାରେ ପାଇଥିଲେ



↑ ଶିଶୁ କଲ୍ୟାଣ ପାଇଁ ଜାତୀୟ ପୁରସ୍କାର ଉତ୍ସବରେ ରାଷ୍ଟ୍ରପତି....

ବିଶ୍ୱ ପୁସ୍ତକ ମେଳା ଉଦ୍‌ଘାଟନ ଉତ୍ସବରେ ଉପ-ରାଷ୍ଟ୍ରପତି.... ↓



ଅତଏବ ପଲ୍ଲୀଶ୍ରୋତା ମଣ୍ଡଳୀ କାର୍ଯ୍ୟକ୍ରମର ଆରମ୍ଭରେ ଓ ଶେଷରେ ବିଭିନ୍ନ ବିଷୟ ପ୍ରଚାର କରାଯାଇଥାଏ । ଯଥାକ୍ରମେ ବିଭିନ୍ନ ପର୍ବ-ପର୍ବାଣୀ ଉପରେ ରେଖାପାତ, ଜାତୀୟ ଦିବସ ଉପରେ ଆଲୋକପାତ, ରାଷ୍ଟ୍ରୀୟ ଐକ୍ୟ, ବିଶ୍ୱମୈତ୍ରୀ, ବଜାର ଦର ଉପରେ ଗ୍ରାମାଞ୍ଚଳ ଚାଷୀମାନଙ୍କୁ ସମ୍ୟକ ଜ୍ଞାନ ପ୍ରଦାନ ସହ ପାଣିପାଗ ଉପରେ ସତର୍କ ନଜର ରଖିପାରୁଛନ୍ତି । ଏଣୁ ଉକ୍ତ ପଲ୍ଲୀଶ୍ରୋତା ମଣ୍ଡଳୀ, ନନ୍ଦିଆଗଡ଼ାର ସଭାପତି ଶ୍ରୀ ଭିକାରୀ ପରିଡ଼ା ଓ ଆବାହକ ଶ୍ରୀ ଯୁଧିଷ୍ଠିର ବଡ଼ାଇ ନିୟମିତ ପ୍ରତି ମଙ୍ଗଳ ଓ ଶୁକ୍ରବାରରେ ଗ୍ରାମ କୋଠାଘରେ ପଲ୍ଲୀଶ୍ରୋତା ମଣ୍ଡଳୀ କାର୍ଯ୍ୟାଳୟ ସଦସ୍ୟଙ୍କ ଗହଣରେ ଶୁଣିଥାନ୍ତି ।

ମଧ୍ୟ କରୁଛନ୍ତି । ସରକାରଙ୍କ ଏହି କିଂଶସୂତ୍ରୀ କାର୍ଯ୍ୟକ୍ରମର ଇ. ଆର. ଆର. ପି. ଯୋଜନାରେ ସତ୍ୟବାଦୀ ଗୋସାଇଁ ବାସ୍ତବରେ ଉପକୃତ ହୋଇ ପାରିଛନ୍ତି । ଏଣୁ ସରକାରଙ୍କ ନିକଟରେ ନିଜର କୃତଜ୍ଞତା ପ୍ରକାଶ କରିବା ସଙ୍ଗେସଙ୍ଗେ ନିଜର ଅବସ୍ଥାରେ ପରିବର୍ତ୍ତନ ବିଷୟ ବର୍ଣ୍ଣନା କରିଛନ୍ତି । ଏତଦ୍ ବ୍ୟତୀତ ଗ୍ରାମର ଜୟ ଜୀବନଶେଣ୍ଡ଼ୁ ପଲ୍ଲୀଶ୍ରୋତା ମଣ୍ଡଳୀରେ ସଭ୍ୟ ଭାବରେ ରହି ସମୟର ସଦୁପଯୋଗକରିବା ସଙ୍ଗେସଙ୍ଗେ ବିଭିନ୍ନ କଥା ଶିକ୍ଷା କରିପାରୁଛନ୍ତି ।

ଶ୍ରୀ ଦାମୋଦର ପାଣ୍ଡୀ
ମଣ୍ଡଳ ସଙ୍ଗଠକ, ପଲ୍ଲୀଶ୍ରୋତା ମଣ୍ଡଳୀ
ଛତ୍ରପୁର, ଗଞ୍ଜାମ ।

## ହସିଲା ସଂସାର

ନିଃସ୍ୱ, ଦରିଦ୍ର ୫୫ ବର୍ଷ ବୟସ ବୃଦ୍ଧ ବ୍ରାହ୍ମଣ ଶ୍ରୀ ସତ୍ୟବାଦୀ ପାଣିଗ୍ରାହୀ ତିନିପୁଅ ଓ ଦୁଇ ଝିଅଙ୍କୁ ନେଇ ବୀରସିଂହ ଲକ୍ଷ୍ମୀନାରାୟଣପୁର ଗ୍ରାମରେ ଥିବାରୁ ୧୦ ବର୍ଷ ହେଲା ବାସକରନ୍ତି । ତାଙ୍କର ନିବାସ ପାତ୍ରପୁର ବ୍ଲକ୍ ଅନ୍ତର୍ଗତ ଗାଲୁଡ଼ା ଗ୍ରାମରେ । ପିତା ସ୍ୱର୍ଗତଃ ଜୟ ପାଣିଗ୍ରାହୀଙ୍କର ସମ୍ବଳ ଅଭାବରୁ ସତ୍ୟବାଦୀ ଶିକ୍ଷା ପାଇ ପାରିଲେ ନାହିଁ ଓ ରୋଜଗାରକ୍ଷମ ହୋଇ ପାରିଲେ ନାହିଁ । ଅନ୍ୟ ବିଚ ନପାଇ ୧୦ ବର୍ଷ ହେଲା ଚିକିଟି ବ୍ଲକ ଅନ୍ତର୍ଗତ ବୀରସିଂହ ଲକ୍ଷ୍ମୀନାରାୟଣପୁର ଗ୍ରାମକୁ ପେଟ ପୋଷିବା ଆଶାରେ ଚାଲି ଆସିଲେ । ୭୦୦ ଲୋକ ସଂଖ୍ୟା ବିଶିଷ୍ଟ ଏହିଗ୍ରାମରେ ସତ୍ୟବାଦୀ ଗୋସାଇଁ ଛଣ ଘରଟିଏ ଭଡ଼ାନେଇ ପରିବାର ସହ ରହିଲେ । ବ୍ରାହ୍ମଣ ବୃତ୍ତି ସହ ଛୋଟିଆ ଦୋକାନଟିଏ ଖୋଲିଲେ କିନ୍ତୁ ଦୈନିକ ୧୦ ଟଙ୍କା ଲାଭ ମଧ୍ୟ ମିଳିଲା ନାହିଁ । ସମ୍ବଳ ଅଭାବରୁ ସାମଗ୍ରୀ ମଧ୍ୟ ଅଧିକ ନଥାଏ । ବାର୍ଷିକ ଆଦାୟ ମାତ୍ର ୧,୨୦୦ ଟଙ୍କାରୁ କମ୍ । ଏଣୁ ଦୁଃଖ, କଷ୍ଟେ ଦିନ କଟାଇ ପୁଅ ଝିଅଙ୍କର ଯତ୍ନ; ଭରଣ ପୋଷଣ କରୁଥିଲେ । ପୁଅମାନଙ୍କୁ ମଧ୍ୟ ଯଥେଷ୍ଟ ଶିକ୍ଷା ଦେବା ସମ୍ଭବ ହେଉନଥିଲା ।

କିଂଶସୂତ୍ରୀ କାର୍ଯ୍ୟକ୍ରମର ଗ୍ରାମାଞ୍ଚଳ ଦରିଦ୍ର ପରିବାରକୁ ଅର୍ଥନୈତିକ ଥଇଥାନ (ଇ. ଆର. ଆର. ପି.) ଯୋଜନାରେ ସତ୍ୟବାଦୀଙ୍କ ନାମକୁ ଚିକିଟି ବି. ଡି. ଓ. ସୁପାରିଶ କରିଲେ ଓ ଗଞ୍ଜାମ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥାର ଅର୍ଥ ପ୍ରଦାଣରୁ ସେବା ସମବାୟ ସମିତି, ଲାଲମେଣ୍ଟା ଜରିଆରେ ୧-୮-୧୯୮୬ରେ ୩,୧୫୦ ଟଙ୍କାର ଋଣ ସହାୟତା ମଞ୍ଜୁର କରାଗଲା । ଏଥିରୁ ବ୍ରାହ୍ମଣ ଗୋସାଇଁଙ୍କୁ ୧,୫୦୦ ଟଙ୍କା ଛାଡ଼ ମିଳିଲା । ବଳକା ଟଙ୍କାକୁ ଦୀର୍ଘ ମିଆଦୀ ସୁଧ ହାରରେ ଋଣ ପରିଶୋଧ କରିବାକୁ କୁହାଗଲା । ଏହି ୩,୧୫୦ ଟଙ୍କା ମଧ୍ୟରୁ ଦେବରାତି ଦୋକାନ ନିମନ୍ତେ ନିକିତି, ବଟକରା ଆଦି ଉପକରଣ ତଥା ସଉଦା ପତ୍ର ସେବା ସମବାୟ ସମିତି ଖର୍ଚ୍ଚ କରିଦେଲେ । କ୍ରମଶଃ ଦୋକାନରେ ବ୍ୟବସାୟ ବଢ଼ିଲା । ବର୍ତ୍ତମାନ ୧୫୦ରୁ ୨୦୦ ଟଙ୍କା ଯାଏଁ ଦୈନିକ ବିକ୍ରି ହେଉଛି ଓ ଏଥିରୁ ଲାଭାଂଶ ୩୦ରୁ ୪୦ ଟଙ୍କା ଯାଏଁ ଦୈନିକ ପାଉଛନ୍ତି । ଦୋକାନରେ ବଡ଼ପୁଅ, ସ୍ତ୍ରୀ ଓ ଛୋଟପୁଅ ବସୁଛନ୍ତି ଓ ବିକ୍ରିରେ ସହାୟତା କରିବା ସହ ନିକଟ ସହର ଚିକିଟିରୁ ଜିନିଷ କିଣି ଆଣିବାକୁ ପୁଅ ଯାଉଛି ।

ସତ୍ୟବାଦୀ ପାଣିଗ୍ରାହୀଙ୍କ ସଞ୍ଚୟ ମନୋବୃତ୍ତି ଯୋଗୁଁ ସେ ଗାଁରେ ଖଣ୍ଡିଏ ଛପର ଘର ବର୍ତ୍ତମାନ କିଣିପାରିଛନ୍ତି । ଦୋକାନ ପାଇଁ ଉଦାଘର ନେଉଛନ୍ତି । ୧୯୮୭ ମସିହାରେ ଦୁଇଝିଅ ମଧ୍ୟରୁ ବଡ଼ଝିଅକୁ ବାହା ଦେଇ ସାରିଲେଣି । ଦ୍ୱିତୀୟ ଝିଅକୁ ମଧ୍ୟ ବାହା ଦେବା ପାଇଁ ବର ଠିକ୍ ହୋଇସାରିଛି । ଆଜି ସେ ନିଜକୁ ନିଃସ୍ୱ, ଅସହାୟ ମନେ କରୁନାହାନ୍ତି । ମାସିକ ଅଳ୍ପ ଅଳ୍ପ କରି ଇତି ମଧ୍ୟରେ ଋଣାଂଶ ଅର୍ଥରୁ ୧,୨୦୦ ଟଙ୍କା ପରିଶୋଧ କରି ପାରିଛନ୍ତି । ବଡ଼ପୁଅକୁ ବେକାରରେ ବସିବାକୁ ନଦେଇ ବ୍ୟବସାୟରେ ନିଯୁକ୍ତ କରି ଆତ୍ମସନ୍ତୋଷ ଲାଭ କରୁଛନ୍ତି । ନିଜର ସ୍ତ୍ରୀ, ପୁଅ, ଝିଅଙ୍କୁ ନେଇ ଆଜି ତାଙ୍କର ସଂସାର ହସୁଛି ।

ସେବା ସମବାୟ ସମିତିର ସଭ୍ୟହୋଇ ବିଭିନ୍ନ ସମୟରେ ପାଣିଗ୍ରାହୀ ଋଣ ସହାୟତା ଆଣି ଯଥା ସମୟରେ ତାହା ପରିଶୋଧକରି କିଛି ରୋଜଗାର

## କଷ୍ଟାପର ଓ ପରିଶ୍ରମୀ ଚଳକର ମୁଖ ଉଜ୍ଜ୍ୱଳ

ବାଙ୍କୀ ଦୁଇ ନମ୍ବର ବ୍ଲକ୍ କୃଷ୍ଣାପର୍ଙ୍ଗି ଗ୍ରାମର ଜଣେ ପ୍ରକୃତ ଚାଷୀ ଶ୍ରୀ ଇନ୍ଦ୍ରମଣୀ ବେହେରା । କଟକରୁ ବାଙ୍କୀ ଗଲାବେଳେ ରାସ୍ତାର ବାମ-ଦିଗରେ ପଡ଼େ କୃଷ୍ଣପର୍ଙ୍ଗି ଗାଁ । ସଡ଼କ ଓ ଗାଁ ମଝିରେ ଥିବା ବିରାଟ ଅଞ୍ଚଳରେ ଉତ୍ପନ୍ନ ହେଉଛି ଫସଲ । ସେଇ ଗାଆଁର ଚାଷୀ ଇନ୍ଦ୍ରମଣୀ ବେହେରା ତାଙ୍କର ଛଅଟି ପୁଅ । ଗୋଟିଏ ଡାକ୍ତରଖାନାରେ ଚାକିରୀ କରେ । ହେଲେ ସେ ମଧ୍ୟ ଛୁଟି ଦିନରେ ବିଲ ମୁଣ୍ଡରେ ଥାଏ । ବାପ ଓ ସାନ ପୁଅମାନେ ତଥା ଅନ୍ୟାନ୍ୟ ବଡ଼ମଣିଷ ସେଇ ଚାଷକାମରେ ଲାଗିଛନ୍ତି । ସେଇ ଧୂଳି, ମାଟି, କାଦୁଅ ଭିତରେ କାମ କରିବାରେ ସେମାନେ ପାଉଛନ୍ତି ଅଫୁରନ୍ତ ଆନନ୍ଦ ।

ସରକାରଙ୍କ ପକ୍ଷରୁ ମହାନଦୀ କୂଳ ୧ ନମ୍ବର ଉଠାଜଳସେଚନ ପଏଣ୍ଟରୁ ୨୪ ଘଣ୍ଟା ପାଣି ଯୋଗାଇ ଦିଆଯାଉଛି । ଏହି ପାଣି ପୁଣି କେନାଲ ଦ୍ୱାରା ଜମି ମଧ୍ୟକୁ ନିଆଯାଉଛି : . ି ଉଠୁଛି ସେ ଅଞ୍ଚଳ । ଡାହାଣ ପଟେ ବହିଯାଉଛି ମହାନଦୀ ଆଉ ବାମପଟରେ ବିରାଟ ସବୁଜ ଶସ୍ୟ କ୍ଷେତ୍ର । ଧାନ, ରାଶି, ଆଳୁ, କଖାରୁ, କୋବି, ବାଇଗଣ ଉତ୍ପାଦନ ହୋଇପାରୁଛି । କୌଣସି ଫସଲ ବାଦ୍ ଦିଆଯାଉନାହିଁ । ସାର ଓ ପୋକମରା ଔଷଧ ବାଙ୍କୀରେ ମିଳୁଛି । ପନିପରିବା ଗୁଡ଼ିକ ବାଙ୍କୀ ଭୁବନେଶ୍ୱର ଯାଉଛି ବିକ୍ରୟ ପାଇଁ । ହଜାର ହଜାର ଲୋକମାନଙ୍କ ପାଇଁ ଦିନରାତି ଖଟି ଖଟି ଉତ୍ପାଦନ ବୃଦ୍ଧି କରୁଥିବା ଏହି ଚାଷୀ ନିଜର ଆୟ ସଂପର୍କରେ ପ୍ରକାଶ କରିବାକୁ ସ୍ୱାଭାବିକ ସଙ୍କୋଚ ପ୍ରକାଶ କଲା । ନମ୍ରତାର ସହିତ ସେ କହିଲା, "ଆମେ ଚଳିଯାଉଛୁ" "ପିଲାମାନେ ସମସ୍ତେ ଲାଗିଛନ୍ତି" ବାସ୍ତବିକ ଉଠା ଜଳସେଚନ ଯୋଜନାର ଏ ସାଫଲ୍ୟ ନ ଦେଖିଲେ ବିଶ୍ୱାସ କରିହେବ ନାହିଁ ।

## ଶାରୀରିକ ଅକ୍ଷମତା ପ୍ରତିବନ୍ଧକ ନୁହେଁ

ବାଙ୍କୀ ସବ୍‌ଡିଭିଜନର ଚୟଳବାଙ୍କ ଗ୍ରାମର ଏକ ଶାରୀରିକ ଅକ୍ଷମ ଯୁବକ ଶ୍ରୀ କୃଷ୍ଣଚନ୍ଦ୍ର ବାରିକ । ତାଙ୍କର ବାପା ଗନ୍ଧର୍ବ ବାରିକ । କ୍ଷୌର କର୍ମ ତାର କୌଳିକ ବ୍ୟବସାୟ । ଗାଁ ଗହଳିରେ କ୍ଷୌରକର୍ମ କରି ସେଥିରୁ ଯାହାମିଳେ ତାହାହିଁ ତା ଜୀବିକାର ଅବଲମ୍ବନ ।

ତାଙ୍କର ୨୦ ବର୍ଷର ପୁଅ କୃଷ୍ଣ କିନ୍ତୁ ଶାରୀରିକ ଭାବେ ଅକ୍ଷମ । ହାତଗୋଡ କ୍ଷୀଣ, ନିଜେ ଚଳପ୍ରଚଳ କରିପାରେ ନାହିଁ । ଜୀବନର ଦୈନନ୍ଦିନ କାର୍ଯ୍ୟ ପାଇଁ ତାର ଆବଶ୍ୟକ ହେଉଥିଲା ଜଣେ ସାହାଯ୍ୟକାରୀ । ଜୀବନଟା ତା'ପାଇଁ ଥିଲା ଏକ କଷ୍ଟଦାୟକ ବୋଝ । ମାତ୍ର ରାଜ୍ୟ ସରକାରଙ୍କ ସହାନୁଭୂତିଶୀଳ ଯୋଜନା ଅନୁସାରେ ଗତ ଏକ ବର୍ଷ ହେଲା ତାକୁ ଦିଆଯାଇଛି ଗୋଟିଏ ତିନି ଚକ ବିଶିଷ୍ଟ ଗାଡ଼ି । କାହାରି ସାହାଯ୍ୟ ନନେଇ ସେ ଏକୁଟିଆ ଗାଡ଼ିରେ ବସି ସ୍ୱଚ୍ଛନ୍ଦରେ ରାଜପଥରେ ଯିବା ଆସିବା କରୁଛି ।

ଗତ ୭ ଦିନ ତଳେ ମୁଁ ଏବଂ ମୋର ସହକର୍ମୀମାନେ ବାଙ୍କୀ ଯାଉଥିବା ବେଳେ ରାସ୍ତାରେ କୃଷ୍ଣ ଗାଡ଼ି ଚଳାଇ ଯାଉଥିବା ଦେଖି ଆମେ ଅଟକିଲୁ । ତାର ସମସ୍ତ ବୃତ୍ତାନ୍ତ କୃଷ୍ଣ କହିଲା । ସେହିଦିନ ସେ ପୁଣି ୮୭୫୦ଙ୍କା ବ୍ୟାଙ୍କରୁ ସାହାଯ୍ୟ ପାଇଛି ବୋଲି କହିଲା । ସେ ଅର୍ଥକୁ କିପରି ସଦ୍ ଉପଯୋଗ

କରି ନିଜେ ସ୍ୱାବଲମ୍ବୀ ହୋଇ ଚେଷ୍ଟା କରିବ ତାହା ଚିନ୍ତା କରୁଛି । ଜୀବନର ନିଷ୍ଠୁର ସଂଗ୍ରାମ ମଧ୍ୟରେ ସେ ବଞ୍ଚିବାର ଏକ ଆଶାର ସନ୍ଧାନ ପାଇଛି । ଏହା ତା ମନରେ ସୃଷ୍ଟି କରିଛି ଉତ୍ସାହ ଓ ସାହସ ।

ଶ୍ରୀ ଭଗ୍ନେଶ୍ୱର ଦେ
ସୂଚନା ଓ ଲୋକସଂପର୍କ ଅଧିକାରୀ, କଟକ

## ଗୌରୀ-ଶଙ୍କର ସାଓଙ୍କ ଭାଗ୍ୟୋଦୟ

ଆଲମଣ୍ଡା ଗ୍ରାମଟି ଓଡ଼ିଶା-ଆନ୍ଧ୍ର ସୀମାରେଖା ଉପରେ ଅବସ୍ଥିତ । ଏହା ଓଡ଼ିଶାର ପ୍ରତୀକ ଭାବେ ବିଦ୍ୟମାନ । କୋରାପୁଟ ଜିଲ୍ଲା, କୋରାପୁଟ ତହସିଲ, ବନ୍ଧୁଗାଁ ପଞ୍ଚାୟତ ସମିତିରେ ଏହି ଗ୍ରାମଟି ଅବସ୍ଥିତ ।

ଏହି ଗ୍ରାମର ଦରିଦ୍ର ପରିବାରମାନଙ୍କ ମଧ୍ୟରୁ ଶ୍ରୀ ଓ୍ୟାରାନାସୀ ଗୌରୀଶଙ୍କର ସାଓ ନିତ୍ୟାନ୍ତ ଦରିଦ୍ର ଶ୍ରେଣୀର ଲୋକ । ସେ ସେଠିକୀ ଶ୍ରୀ ଓ୍ୟାରାନାସୀ ଭେଙ୍କେଟାରାମଣାଙ୍କ ପୁତ୍ର । ବାପା, ଭାଇ, ଭଉଣୀଙ୍କୁ ନେଇ ତାଙ୍କର ଚାରିପ୍ରାଣୀ କୁଟୁମ୍ବ । ଚଳାଚଳରେ ବିଶେଷ ଅସୁବିଧା । କ'ଣ କରିବେ, କିପରି ବଞ୍ଚିବେ ? ସର୍ବଦା ତାଙ୍କ ମୁଣ୍ଡରେ ଏହି ଚିନ୍ତା । କେନ୍ଦ୍ରର ଲୋକପ୍ରିୟ ସରକାରଙ୍କ ବିଂଶସୂତ୍ରୀ କାର୍ଯ୍ୟକ୍ରମରେ ପ୍ରଣୀତ ଗ୍ରାମ୍ୟ ଦରିଦ୍ର ଆର୍ଥିକ ପୁନଃବସତି ଯୋଜନା ରାଜ୍ୟର ଚତୁର୍ଦ୍ଦିଗରେ କ୍ଷିପ୍ର ଗତିରେ ଚାଲୁହେଲା । ତଦନୁସାରେ ବନ୍ଧୁଗାଁ ପଞ୍ଚାୟତ ସମିତି ସ୍ତରର ମନୋନୟନ କମିଟି ଗଠନ ହେଲା । ସେମାନଙ୍କ ଦ୍ୱାରା "ଶ୍ରୀ ଗୌରୀଶଙ୍କର" ହିତାଧିକାରୀ ରୂପେ ନିର୍ବାଚିତ ହୋଇ ତାଙ୍କର ଇଚ୍ଛାନୁଯାୟୀ ବେପାର ତଥା ଗୋଟିଏ ଆଧୁନିକ ଧରଣର ପାନ ଦୋକାନ କରିବା ପାଇଁ ରିହାତି ଦିଆଯାଉଥିବା ଋଣ ପାଇବା ପାଇଁ ସୁପାରିଶ ପାଇଲେ । ତଦନୁଯାୟୀ ୧୯୮୭ ମସିହା ଅପ୍ରେଲ ମାସରେ ଆଲମଣ୍ଡା ଗ୍ରାମର କୋରାପୁଟ ଗ୍ରାମ୍ୟ ପଲ୍ଲୀବାସୀ ବ୍ୟାଙ୍କ ଦ୍ୱାରା ଶତକଡା ପଚାଶ ଭାଗ ରିହାତି ସୂତ୍ରରେ ନଗଦ ୩,୭୦୦ ଟଙ୍କା ଋଣ ପାଇଲେ । ଅନ୍ଧ ବସ୍ତୁ ଦାନ ପାଇଲା ପରି ସେଦିନ ତାଙ୍କର ଆନନ୍ଦ କହିଲେ ନସରେ । ସରକାରଙ୍କଠାରେ କୃତଜ୍ଞତା ଜ୍ଞାପନ କରି ଦୁଇ ହଜାର ଟଙ୍କା ବ୍ୟୟ କରି ଗୋଟିଏ ଆଧୁନିକ ଧରଣର ସୌଖିନ ଓ ସୁସଜ୍ଜିତ କାଠର କୁଟୀରଟିଏ ନିର୍ମାଣ କରି, ଆଲମଣ୍ଡା ଗ୍ରାମରୁ ଆହୁରି ପାର୍ବତୀପୁର ଯିବା ପ୍ରଧାନ ରାସ୍ତା ଉପରେ ଅବଶିଷ୍ଟ ଟଙ୍କାରେ ଗୋଟିଏ ସୌଖିନ ପାନ ଦୋକାନ କରି, ସେଥିରେ ସେଠିକା ଗ୍ରାହକମାନଙ୍କ ରୁଚି ମୁତାବକ ପାନ, ସମସ୍ତପ୍ରକାର ପାନ ମସଲା, ବିଡ଼ି, ପିକା, ସିଗାରେଟ, ଦିଆସିଲିଠାରୁ ଆରମ୍ଭ କରି ପାଉଁରୁଟି, **ବିସ୍କୁଟ, ବିଭିନ୍ନ ଚକୋଲେଟ୍ ଓ ତେଲ, ସାବୁନ ଓଗେର ସୁନ୍ଦର ଭାବେ ସଜାଇ ରଖିଲେ ଏବଂ ବେପାର ଆରମ୍ଭ କଲେ । ଦୋକାନଟି ଦିନକୁ ଦିନ ଚିତ୍ତାକର୍ଷକ ହୋଇ ଉଠିଲା ଏବଂ ଆଶାନୁରୂପ ଦୁଇ ପଇସା ରୋଜଗାର କରି ପୂର୍ବ ଅପେକ୍ଷା ଟିକିଏ ଉନ୍ନତ ଧରଣରେ ନିଜର କୁଟୁମ୍ବ ପ୍ରତିପୋଷଣ କରିବା ସଙ୍ଗେସଙ୍ଗେ ଉକ୍ତ ଋଣ ବାବଦକୁ ଚୁକ୍ତି ମୁତାବକ ମାସିକ ୫୦ ଟଙ୍କା ପରିଶୋଧ କରି ପାରିଲେ । ସରକାରଙ୍କ ରାଜସ୍ୱ ବିଭାଗ ତରଫରୁ ତାଙ୍କୁ ଯେଉଁ ଦୁଇ ଏକର ଡିପ ଜମି ଦାନ ମିଳିଥିଲା, ସେତକ ଏହିବର୍ଷ ଆବାଦ କରି ନିଜେ ହାତଗଣ୍ଠି କରିବା ପାଇଁ ଆୟୋଜନ କରୁଛନ୍ତି । ବର୍ତ୍ତମାନ ସେ ସରକାରଙ୍କ ହିତାଧିକାରୀ ରୂପେ ଉପକୃତ ହୋଇ ଉକ୍ତ ସୀମାନ୍ତ ଅଞ୍ଚଳରେ ନିଜକୁ ଜଣେ ଆଦର୍ଶ ନାଗରିକ ଭାବେ ପ୍ରତିଷ୍ଠା କରି ପାରିଛନ୍ତି ।**



# ସମ୍ବାଦ ପରିକ୍ରମା

## ଖାଉଟିଙ୍କ ସୁରକ୍ଷା ଲାଗି ବିଭିନ୍ନ ପଦକ୍ଷେପ

ଓଡ଼ିଶା ପରି ଏକ ଗ୍ରାମ ବହୁଳ ଏବଂ ଆଦିବାସୀ ଅଧ୍ୟୁଷିତ ରାଜ୍ୟରେ ଖାଉଟିମାନଙ୍କୁ ଅସାଧୁ ବ୍ୟବସାୟୀଙ୍କ କବଳରୁ ରକ୍ଷା କରିବା ଏବଂ ଏ ସଂପର୍କରେ ଜନ ଜାଗରଣ ସୃଷ୍ଟି କରିବା ଲାଗି ରାଜ୍ୟ ସରକାର କେତେକ ପଦକ୍ଷେପ ନେଇଛନ୍ତି ବୋଲି ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ହରିହର କରଣ ପ୍ରକାଶ କରିଛନ୍ତି ।

ଦିଲ୍ଲୀଠାରେ କେନ୍ଦ୍ର ଖାଦ୍ୟ ଓ ଯୋଗାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୁଖ ରାମଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ କେନ୍ଦ୍ରୀୟ ଖାଉଟି ସୁରକ୍ଷା ପରିଷଦ ବୈଠକରେ ଉଦ୍‌ବୋଧନ ଦେଇ ଶ୍ରୀ କରଣ କହିଲେ ଯେ ୧୯୮୬ର କେନ୍ଦ୍ରୀୟ ଖାଉଟି ସୁରକ୍ଷା ଆଇନ ଅନୁସାରେ ଓଡ଼ିଶାରେ ୧୯୮୮ ଖାଉଟି ସୁରକ୍ଷା ନିୟମାବଳୀ ପ୍ରକାଶିତ ହୋଇ ତାହା ଗତ ମାର୍ଚ୍ଚ ୧୫ ତାରିଖରୁ କାର୍ଯ୍ୟକାରୀ କରାଯାଉଛି । ସରକାର ରାଜ୍ୟ ସ୍ତରରେ ଗଠନ କରିଥିବା ଖାଉଟି ସୁରକ୍ଷା ପରାମର୍ଶଦାତା ପରିଷଦର ପ୍ରଥମ ବୈଠକ ଯଥାଶୀଘ୍ର ଅନୁଷ୍ଠିତ ହେବ ବୋଲି ସେ ସୂଚନା ଦେଇଥିଲେ । ରାଜ୍ୟ ସରକାରଙ୍କ ପ୍ରଣୀତ ନିୟମାବଳୀକୁ କାର୍ଯ୍ୟକାରୀ କରିବା ଲାଗି ରାଜ୍ୟ ଓ ଜିଲ୍ଲା ସ୍ତରରେ ଯଥାକ୍ରମେ କମିଶନ୍ ଓ ଫୋରମ ଗଠିତ ହେବ ବୋଲି ସୂଚନା ଦେଇ ଶ୍ରୀ କରଣ କହିଲେ ଯେ ମାନ୍ୟବର ହାଇକୋର୍ଟର ଜଣେ ବିଚାରପତିଙ୍କ ଅଧ୍ୟକ୍ଷତାରେ ରାଜ୍ୟସ୍ତରୀୟ କମିଶନ୍ ଏବଂ ଜିଲ୍ଲା ବିଚାରପତିଙ୍କ ଅଧ୍ୟକ୍ଷତାରେ ଜିଲ୍ଲାସ୍ତରୀୟ ଫୋରମ ଗଠନ କରାଯିବ । ଏହି ବିଚାରପତିମାନେ ସାମୟିକ ଭାବେ କାର୍ଯ୍ୟ କରିବେ ବୋଲି ପ୍ରସ୍ତାବ କରାଯାଇଛି । ଏଥିପାଇଁ ଆବଶ୍ୟକୀୟ ଅର୍ଥ ଯୋଜନା କମିଶନ୍ ଅନୁମୋଦନ କ୍ରମେ ଚଳିତ ବର୍ଷ ବଜେଟ୍‌ରେ ବ୍ୟୟ ବରାଦ କରାଯାଇଛି ବୋଲି ଶ୍ରୀ କରଣ ପ୍ରକାଶ କରିଥିଲେ ।

ଖାଉଟିଙ୍କୁ ସୁରକ୍ଷା ପ୍ରଦାନ କ୍ଷେତ୍ରରେ ନିଆଯାଇଥିବା ବିଭିନ୍ନ ପଦକ୍ଷେପ ସଂପର୍କରେ ଶ୍ରୀ କରଣ କହିଲେ ଯେ ଖାଉଟି ସୁରକ୍ଷା ସଂପର୍କରେ ଏକ ସେମିନାର ଗୋପବନ୍ଧୁ ପ୍ରଶାସନିକ ଓ ତାଲିମ ଏକାଡେମୀଙ୍କ ସହାୟତାରେ ନିକଟରେ ଭୁବନେଶ୍ୱରଠାରେ ଆୟୋଜିତ କରାଯାଇ ସ୍ୱେଚ୍ଛାସେବୀ ଅନୁଷ୍ଠାନ କର୍ମକର୍ତ୍ତାଙ୍କ ସମେତ ଯୋଗାଣ ଓ ମାପ ଓଜନ କର୍ମଚାରୀମାନଙ୍କୁ ତାଲିମ ଦିଆଯାଇଥିଲା । ରାଜ୍ୟରେ ଖାଉଟି ସୁରକ୍ଷା ଦିଗରେ କାର୍ଯ୍ୟ କରୁଥିବା କେତେକ ଅଗ୍ରଣୀ ସ୍ୱେଚ୍ଛାସେବୀ ଅନୁଷ୍ଠାନକୁ ୫୦ ହଜାର ଟଙ୍କା ସରକାରୀ ଅନୁଦାନ ଦିଆଯାଇଛି । ଶ୍ରୀ କରଣ କହିଲେ ଯେ ଅସାଧୁ ବ୍ୟବସାୟୀଙ୍କ ଦ୍ୱାରା ହାଟ ବଜାରରେ ବ୍ୟବହୃତ ହେଉଥିବା ବେଆଇନ ମାପ ଓଜନକୁ ପରୀକ୍ଷା କରିବା ଲାଗି ରାଜ୍ୟର ପୌରାଞ୍ଚଳ ଓ ସବ୍‌ଡିଭିଜନ ସଦର ମହକୁମା ଗୁଡ଼ିକରେ ପରୀକ୍ଷାଗାରମାନ ପ୍ରତିଷ୍ଠିତ ହୋଇଛି । ଏହି ସଂସ୍ଥାର କ୍ଷେତ୍ର କର୍ମଚାରୀମାନେ ହାଟ ବଜାରରେ ନିୟମିତ ଭାବେ ମାପ ଓଜନ ଯାଞ୍ଚ କରୁଛନ୍ତି । ଏହା ବ୍ୟତୀତ ଖାଦ୍ୟଶସ୍ୟର ମାନ ପରୀକ୍ଷା କରିବା ଲାଗି ଖାଦ୍ୟ ଓ ଯୋଗାଣ ବିଭାଗରେ ଏକ ମାନ ନିୟନ୍ତ୍ରଣ ପରୀକ୍ଷାଗାର ଏବଂ ସ୍ୱାସ୍ଥ୍ୟ ବିଭାଗରେ ବିଭିନ୍ନ ଖାଦ୍ୟ ଦ୍ରବ୍ୟ ପରୀକ୍ଷା କରିବା ଲାଗି ମଧ୍ୟ ଅନ୍ୟ ଏକ ପରୀକ୍ଷାଗାର ପ୍ରତିଷ୍ଠିତ ହୋଇଛି । ଅସାଧୁ ବ୍ୟବସାୟୀଙ୍କ କାର୍ଯ୍ୟକଳାପ ଉପରେ ତୀକ୍ଷ୍ଣ ଦୃଷ୍ଟି ଦେଇ କାର୍ଯ୍ୟାନୁଷ୍ଠାନ ପାଇଁ ଏହି ବିଭାଗ ତରଫରୁ ଏକ ଏନ୍‌ଫୋର୍ସମେଣ୍ଟ ଦଳ ଗଠନ କରାଯାଇଛି । ଓଡ଼ିଶାରେ ପ୍ୟାକେଟ୍‌ରେ ବିକ୍ରୟ କରାଯାଉଥିବା ବିଭିନ୍ନ ଦ୍ରବ୍ୟର ଓଜନ ଓ ନିର୍ଦ୍ଧାରିତ ଦର ସଂପର୍କରେ ଥିବା ନିୟମାବଳୀକୁ ମଧ୍ୟ କଡ଼ାକଡ଼ି ଭାବେ କାର୍ଯ୍ୟକାରୀ କରାଯାଉଛି ବୋଲି ଶ୍ରୀ କରଣ ଦର୍ଶାଇଥିଲେ । ସେ କହିଲେ ଯେ ଏହି ନିୟମାବଳୀ ଓ ଅତ୍ୟାବଶ୍ୟକୀୟ ଦ୍ରବ୍ୟ ଆଇନ ଖିଲାପ କରୁଥିବା ବ୍ୟବସାୟୀଙ୍କ ବିରୁଦ୍ଧରେ ମକଦ୍ଦମାମାନ ରୁଜୁ କରାଯାଉଛି ।

ରାଜ୍ୟର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର ଅଶିକ୍ଷିତ ଓ ଆଇନ ସଂପର୍କରେ ଅଜ୍ଞ ଖାଉଟିମାନଙ୍କୁ ସୁରକ୍ଷା ଦେବା ଉପରେ ଗୁରୁତ୍ୱ ଆରୋପ କରି ଶ୍ରୀ କରଣ କହିଲେ ଯେ ଏଥିପାଇଁ ଏକ ସ୍ୱତନ୍ତ୍ର ଅଭିଯାନ କରାଯିବା ଆବଶ୍ୟକ । ଏ ବାବଦରେ ରାଜ୍ୟ ସରକାରଙ୍କ ସମ୍ବଳ ସୀମିତ ବୋଲି ଦର୍ଶାଇ ସେ ପର୍ଯ୍ୟାପ୍ତ କେନ୍ଦ୍ରୀୟ ସାହାଯ୍ୟ ଯୋଗାଇ ଦେବାକୁ ଦାବୀ କରିଥିଲେ ।

ରାଜ୍ୟର ଆଦିବାସୀ ଅଞ୍ଚଳ ହାଟମାନଙ୍କରେ ୩୯ଟି ଗାଡ଼ି ଜରିଆରେ ଅତ୍ୟାବଶ୍ୟକୀୟ ଦ୍ରବ୍ୟ ବିକ୍ରୀ କରାଯାଉଛି ବୋଲି ଦର୍ଶାଇ କେନ୍ଦ୍ର ସରକାର ଓଡ଼ିଶାକୁ ଅତ୍ୟାବଶ୍ୟକୀୟ ସାମଗ୍ରୀ, ବିଶେଷତଃ ଅଧିକ ପରିମାଣ ଚାଉଳ ଯୋଗାଇ ଦେବାକୁ ଶ୍ରୀ କରଣ ଦାବୀ କରିଥିଲେ ।

## ଓଡ଼ିଶାରେ ସଘନ ଗୋ-ଉନ୍ନୟନ କାର୍ଯ୍ୟକ୍ରମ

କଟକ, ବ୍ରହ୍ମପୁର ଓ ସମ୍ବଲପୁର ଅଞ୍ଚଳରେ ସଘନ ଗୋ-ଉନ୍ନୟନ କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହେଉଛି । ଗତ ନଭେମ୍ବର ଓ ଡିସେମ୍ବର, ଦୁଇମାସରେ ପଶୁ ପାଳନ ଓ ପଶୁ ଚିକିତ୍ସା ବିଭାଗ ତରଫରୁ ସେଠାରେ ମୋଟ୍ ୩ ଲକ୍ଷ ୫୮ ହଜାର ୫୯ଟି ଗାଈ ଗୋରୁଙ୍କୁ ସାଧାରଣ ଚିକିତ୍ସା ପ୍ରଦାନ କରାଯିବା ସଙ୍ଗେସଙ୍ଗେ ୧ ଲକ୍ଷ ୫୪ ହଜାର ୬୯୩ଟି ଗାଈଗୋରୁଙ୍କୁ ରୋଗ ପ୍ରତିଷେଧକ ଟିକା ଦିଆଯାଇଛି । ଉକ୍ତ ସମୟ ମଧ୍ୟରେ ସେହି ଅଞ୍ଚଳର ୧୫,୧୫୧ଟି ଗାଈଙ୍କୁ କୃତ୍ରିମ ପ୍ରଜନନ ଦ୍ୱାରା ଗର୍ଭାଧାନ କରାଯାଇଥିଲା । ପୂର୍ବରୁ ପ୍ରଜନନ କରାଯାଇଥିବା ଗାଈଙ୍କଠାରୁ ୩୧୫୬ଟି ଅଣ୍ଡିରା ଓ ୨୮୬୯ଟି ମାଈ ସଙ୍କର ଜାତୀୟ ବାଛୁରୀ ଜନ୍ମିଥିଲେ ।

ବ୍ୟକ୍ତିଗତ କ୍ଷେତ୍ରରେ ଘାସଚାଷ ପାଇଁ ଗୋ-ପାଳନ କରୁଥିବା ଚାଷୀମାନଙ୍କୁ ରାଜ୍ୟ ପଶୁପାଳନ ବିଭାଗ ତରଫରୁ ୪୫ କ୍ୱିଣ୍ଟାଲ ଘାସମଞ୍ଜି ଯୋଗାଇ ଦିଆଯାଇ ଉକ୍ତ ଅଞ୍ଚଳର ଚାଷୀମାନଙ୍କର ପ୍ରାୟ ୨୯୬ ଏକର ଜମିରେ ଘାସଚାଷ କରାଯାଇଥିଲା ।

ଉପରୋକ୍ତ ଯୋଜନା ଅଞ୍ଚଳରୁ ଉକ୍ତ ସମୟ ମଧ୍ୟରେ ମୋଟ୍ ୧ ଲକ୍ଷ ୮ ହଜାର ଲିଟର କ୍ଷୀର ସଂଗୃହୀତ ହୋଇ ବିକ୍ରୟ କରାଯାଇଛି ବୋଲି ପଶୁ ପାଳନ ଓ ପଶୁ ଚିକିତ୍ସା ନିର୍ଦ୍ଦେଶାଳୟ ସୂତ୍ରରୁ ପ୍ରକାଶ ।

## ପାନୀୟ ଜଳ ଯୋଗାଣ ପାଇଁ ନଳକୂପ

ପାନୀୟ ଜଳ ଯୋଗାଣ କାର୍ଯ୍ୟକ୍ରମ ଅନୁଯାୟୀ ଗଞ୍ଜାମ ଜିଲ୍ଲା ବ୍ରହ୍ମପୁର ସବ୍‌ଡିଭିଜନ୍‌ରେ ଗତ ଆର୍ଥିକ ବର୍ଷରେ ମୋଟ୍ ୮୧୮ଟି ନଳକୂପ ଖନନ କରାଯାଇଛି । ତନ୍ମଧ୍ୟରେ ପୂର୍ବ ମଞ୍ଜୁରୀପ୍ରାପ୍ତ ୫୧୪ଟି ନଳକୂପ ମଧ୍ୟରୁ ୪୧୧ଟି ସାଧାରଣ ସ୍ଥାପନା ଯୋଜନାରେ ୩୧୦ଟି, ମରୁଡ଼ି ପ୍ରତିକାର ଜନିତ ପାଣ୍ଠିରୁ ଖନନ କରାଯାଇଥିବା ୭୪ଟି ଓ ଅନ୍ୟାନ୍ୟ ସଂସ୍ଥା ତରଫରୁ ୨୩ଟି ନଳକୂପ ଅନ୍ତର୍ଭୁକ୍ତ ।

ସେହିପରି ଉକ୍ତ ନଗର ସବ୍‌ଡିଭିଜନ୍‌ରେ ଗତ ଆର୍ଥିକ ବର୍ଷରେ ୬୩୫ଟି ନଳକୂପ ଖନନ କରାଯାଇଛି । ସେଥିମଧ୍ୟରେ ପୂର୍ବରୁ ବାକୀ ଥିବା ୧୩୫ଟି ସାଧାରଣ ନଳକୂପ ଖନନ ଯୋଜନାରେ ୪୧୬ଟି, ମରୁଡ଼ି ପାଣ୍ଠିରୁ ବ୍ୟୟ କରାଯାଇ ୮୪ଟି ନଳକୂପ ଗତ ଆର୍ଥିକ ବର୍ଷରେ ଖନନ କରାଯାଇଛି ।

## ସାମ୍ପ୍ରଦାୟିକ ସଦ୍‌ଭାବ ବ୍ୟାହତ କରୁଥିବା ଲୋକଙ୍କ ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ କରାଯିବ

ମୁଖ୍ୟମନ୍ତ୍ରୀ

ରାଜ୍ୟରେ ସାମ୍ପ୍ରଦାୟିକ ସମ୍ପ୍ରୀତି ଓ ସାମ୍ପ୍ରଦାୟିକ ସଦ୍‌ଭାବକୁ ବ୍ୟାହତ କରୁଥିବା ଷଡ଼ଯନ୍ତ୍ରକାରୀମାନଙ୍କୁ କଠୋର ହସ୍ତରେ ଦମନ କରାଯିବ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଘୋଷଣା କରିଛନ୍ତି ।

ରାଜ୍ୟ ସଚିବାଳୟଠାରେ ଅନୁଷ୍ଠିତ ସମ୍ବଲପୁର ଶାନ୍ତି କମିଟିର ସଭ୍ୟମାନଙ୍କର ଏକ ବୈଠକରେ ଅଧ୍ୟକ୍ଷତା କରି ମୁଖ୍ୟମନ୍ତ୍ରୀ ଏହି ଘୋଷଣା କରିବା ସଙ୍ଗେସଙ୍ଗେ ସମ୍ବଲପୁରର ଶାନ୍ତିପ୍ରିୟ ନାଗରିକ ମାନଙ୍କୁ ଏ କ୍ଷେତ୍ରରେ ସ୍ଥାନୀୟ ପ୍ରଶାସନ ଓ ପୋଲିସ ସହିତ ସହଯୋଗ କରିବାକୁ ନିବେଦନ କରିଥିଲେ । ମୁଖ୍ୟମନ୍ତ୍ରୀ କହିଲେ ଯେ, ସମ୍ବଲପୁରର ଜନସାଧାରଣ ଏକଜୁଟ ହେଲେ ସାମ୍ପ୍ରଦାୟିକ ସଦ୍‌ଭାବ ପ୍ରତି ଦେଖାଦେଇଥିବା ଆଶଙ୍କା ସମ୍ପୂର୍ଣ୍ଣ ଭାବରେ ଦୂର ହୋଇପାରିବ । ଅସାମାଜିକ ଲୋକ ମାନଙ୍କୁ ସମାଜର ଶତ୍ରୁ ବୋଲି ଅଭିହିତ କରି ମୁଖ୍ୟମନ୍ତ୍ରୀ କହିଲେ ଯେ ସେଭଳି ଲୋକମାନଙ୍କ ବିରୁଦ୍ଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ପାଇଁ ସରକାର ବଦ୍ଧପରିକର ।

ସାମ୍ପ୍ରଦାୟିକ ଉତ୍ତେଜନା ସୃଷ୍ଟି କରୁଥିବା କୌଣସି ଗୁଜବକୁ ପ୍ରଶ୍ରୟ ନ ଦେବା ପାଇଁ ମୁଖ୍ୟମନ୍ତ୍ରୀ ନିବେଦନ କରିଥିଲେ । ଦଳମତ ନିର୍ବିଶେଷରେ ବିଭିନ୍ନ ଶ୍ରେଣୀର ଲୋକଙ୍କୁ ନେଇ ସମ୍ବଲପୁର ସହରର ଶାନ୍ତି କମିଟିକୁ ଅଧିକ ସୁଦୃଢ଼ କରିବା ସଙ୍ଗେସଙ୍ଗେ ଅତିଶୀଘ୍ର ସବୁ ସମ୍ପ୍ରଦାୟର ଜନସାଧାରଣଙ୍କୁ ନେଇ ସମ୍ବଲପୁର ସହରରେ ଏକ ଶାନ୍ତି ଯାତ୍ରାର ଆୟୋଜନ କରିବାକୁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ । ସେ କହିଲେ ସାମ୍ପ୍ରଦାୟିକ ସଦ୍‌ଭାବ ରକ୍ଷା କ୍ଷେତ୍ରରେ ଜନସାଧାରଣଙ୍କ ସହିତ ସମସ୍ତ ସହଯୋଗ କରିବା ପାଇଁ ରାଜ୍ୟ ସରକାର ପ୍ରସ୍ତୁତ ଅଛନ୍ତି । ସମ୍ବଲପୁର ତଥା ରାଜ୍ୟର ସ୍ୱାର୍ଥ ଓ ସମ୍ମାନ ବିରୁଦ୍ଧରେ କୌଣସି ପ୍ରକାର ସାମ୍ପ୍ରଦାୟିକ ଉତ୍ତେଜନାକୁ ପ୍ରଶ୍ରୟ ଦିଆଯିବ ନାହିଁ ବୋଲି ମୁଖ୍ୟମନ୍ତ୍ରୀ ପ୍ରକାଶ କରିଥିଲେ ।

ଏହି ବୈଠକରେ ସର୍ବଶ୍ରୀ ରଘୁନନ୍ଦନ ସାଏଦେଓ, ସୁରେଶ୍ୱର ମିଶ୍ର, ମହମ୍ମଦ ଫଇଜୀ, ବ୍ରଜ ବିହାରୀ ସାହୁ, ମହମ୍ମଦ ମମତାଜ, ବଳବାହୁ ଶତପଥୀ, ନୂର ମହମ୍ମଦ ଖାଁ, ବ୍ରଜ ବିହାରୀ ବେହିରା, ଗୋବିନ୍ଦ ମିଶ୍ର, ଅଶୋକ ଡିଙ୍ଗି, ବନଓ୍ୱାରୀଲାଲ ଅଗ୍ରଓ୍ୱାଲ, ମହମ୍ମଦ ଗାଉସ, ସଂଗ୍ରାମ କେଶରୀ ସାହାଣୀ, ଏଚ. ଏସ. ବେଦୀ, ନୀଳମଣି ପ୍ରଧାନ, ବେନିଭୂଷଣ ସାହୁ ଓ ଡକ୍ଟର ଶୁଭାକର ସୂପକାର ପ୍ରମୁଖ ସମ୍ବଲପୁର ସହରର ମାନ୍ୟଗଣ୍ୟ ବ୍ୟକ୍ତି ତଥା ଶାନ୍ତି କମିଟିର ସଦସ୍ୟମାନେ ଯୋଗ ଦେଇ ସମ୍ବଲପୁର ସହରର ସାମ୍ପ୍ରଦାୟିକ ପରିସ୍ଥିତି ସମ୍ପର୍କରେ ଆଲୋଚନା କରିଥିଲେ ଓ ସେ ସମ୍ପର୍କରେ ସେମାନଙ୍କର ପରାମର୍ଶ ଦେଇଥିଲେ । ରାଜ୍ୟ ମୁଖ୍ୟ ଶାସନ ସଚିବ ଶ୍ରୀ ନଳିନୀକାନ୍ତ ପଣ୍ଡା, ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ରମାକାନ୍ତ ରଥ, ସ୍ୱରାଷ୍ଟ୍ର ବିଭାଗ ସଚିବ ଶ୍ରୀ ବିନୋଦ ଝା ଓ ରାଜ୍ୟ ସରକାରଙ୍କର ଅନ୍ୟାନ୍ୟ ପଦସ୍ଥ କର୍ମଚାରୀମାନେ ଏହି ଆଲୋଚନା ବେଳେ ଉପସ୍ଥିତ ଥିଲେ ।

## ବାସଚ୍ୟୁତ ପରିବାରଙ୍କ ଥଇଥାନ

ଇନ୍ଦ୍ରାବତୀ ନଦୀବନ୍ଧ ଯୋଜନାରେ ବାସଚ୍ୟୁତ ହେଉଥିବା ପରିବାରଙ୍କୁ ବାସଗୃହ ଓ ଚାଷୋପଯୋଗୀ ଜମି ଯୋଗାଇ ସେମାନଙ୍କର ଉପଯୁକ୍ତ ଥଇଥାନ ପ୍ରତି ଗୁରୁତ୍ୱ ଦେବାପାଇଁ କୃଷିମନ୍ତ୍ରୀ ଶ୍ରୀ ରାସବିହାରୀ ବେହେରା ପରାମର୍ଶ ଦେଇଛନ୍ତି ।

କୋରାପୁଟଠାରେ ପୁନର୍ବସତି ଓ ଥଇଥାନ ସଂକ୍ରାନ୍ତରେ ଅନୁଷ୍ଠିତ ଆଲୋଚନା ବୈଠକରେ କୃଷିମନ୍ତ୍ରୀ ଯୋଗ ଦେଇ ବୁଡ଼ି ଅଞ୍ଚଳ ଲୋକମାନଙ୍କର ଥଇଥାନ ଉଦ୍ଦେଶ୍ୟରେ ବିଭିନ୍ନ କାର୍ଯ୍ୟକ୍ରମର ଅଗ୍ରଗତି ସମ୍ପର୍କରେ ଅନୁଧ୍ୟାନ କରିଥିଲେ । ବାସଚ୍ୟୁତ ହେଉଥିବା ଲୋକମାନଙ୍କୁ ଥଇଥାନ ବାବଦରେ ନଗଦ ଅର୍ଥ ନ ଦେଇ ସେମାନଙ୍କର ପ୍ରକୃତ ଥଇଥାନ ବ୍ୟବସ୍ଥା କରାଗଲେ, ସେମାନେ ଉପକୃତ ହେବେ ବୋଲି କୃଷିମନ୍ତ୍ରୀ ପ୍ରକାଶ କରିଥିଲେ । ଦକ୍ଷିଣାଞ୍ଚଳ ରାଜସ୍ୱ କମିଶନରଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ବୈଠକରେ ଅନ୍ୟମାନଙ୍କ ସହିତ କଳାହାଣ୍ଡି ଓ କୋରାପୁଟର ଜିଲ୍ଲାପାଳ, ଏମ. ପି. ଶ୍ରୀ ଖଗପତି ପ୍ରଧାନୀ ଓ ଜୁନାଗଡ଼ ବିଧାୟକ ଶ୍ରୀ ବିକ୍ରମ କେଶରୀ ଦେଓ ପ୍ରମୁଖ ଯୋଗ ଦେଇଥିଲେ ।

କଳାହାଣ୍ଡି ଓ କୋରାପୁଟ ଜିଲ୍ଲାର ଯଥାକ୍ରମେ ୫୧ ଓ ୪୪ଟି, ମୋଟ ୯୫ଟି ଗ୍ରାମର ୨୮୩୩ଟି ପରିବାର ଏହି ନଦୀବନ୍ଧ ଯୋଜନା ଦ୍ୱାରା ବାସଚ୍ୟୁତ ହେବେ ବୋଲି ହିସାବ କରାଯାଉଛି । ଆସନ୍ତା ୧୯୯୦ ମସିହା ସୁଦ୍ଧା ସେମାନଙ୍କର ପୁନର୍ବସତି ଓ ଥଇଥାନ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯିବ ।

## ଅଣ-ପାରମ୍ପରିକ ଶକ୍ତି ଉତ୍ସର ବିକାଶ

ରାଜ୍ୟରେ ଅଣ-ପାରମ୍ପରିକ ଶକ୍ତି ଉତ୍ସର ବିକାଶ କାର୍ଯ୍ୟକ୍ରମ ଅନୁଯାୟୀ ଗତମାସ ଦୈନିକ ୩୦୦ ଲିଟର ଗରମ କରିପାରିବା ଭଳି ୬ଟି ସୌର ଜଳ ଗରମ ଯନ୍ତ୍ର ବସିଛି । ଏହାକୁ ମିଶାଇ ଗତ ଆର୍ଥିକ ବର୍ଷରେ ୨୧୮ଟି ସୌର ଜଳ ଗରମ ଯନ୍ତ୍ରର ବ୍ୟବସ୍ଥା କରାଯାଇଛି । ଏହା ଫଳରେ ସୌର ତାପ ଦ୍ୱାରା ଦୈନିକ ୧୦ ହଜାର ୧୦୦ ଲିଟର ପାଣି ଗରମ ହୋଇ ପାରିବ । ଗୋବର ଗ୍ୟାସ୍ ପ୍ଲାଣ୍ଟ ନିର୍ମାଣ କ୍ଷେତ୍ରରେ ଗତ ଆର୍ଥିକ ବର୍ଷରେ ଉଲ୍ଲେଖନୀୟ ସଫଳତା ହାସଲ କରାଯାଇ ଧାର୍ଯ୍ୟ ଲକ୍ଷ୍ୟ ୩ ହଜାରକୁ ଅତିକ୍ରମ କରି ୬୦୦୫ଟି ଏପରି ପ୍ଲାଣ୍ଟ ନିର୍ମାଣ କରାଯାଇଛି । ତନ୍ମଧ୍ୟରୁ ମାର୍ଚ୍ଚ ମାସରେ ବସାଯାଇଥିବା ୨୪୦୦ଟି ପ୍ଲାଣ୍ଟ ଅନ୍ତର୍ଭୁକ୍ତ । ସେହିପରି ଗତ ଆର୍ଥିକ ବର୍ଷରେ ୭୧ଟି ପବନ କଳ ବସାଯାଇଛି । ଗତମାସରେ ୨୬୮୭ଟି ସ୍ଥିର ଚୁଲ୍ଲୀ ବସାଯାଇଥିବା ବେଳେ ମୋଟ୍ ୧୧,୧୪୫ଟି ସହଜରେ ସ୍ଥାନାନ୍ତର କରାଯାଉଥିବା ଉନ୍ନତ ଧୂମହୀନ ଚୁଲ୍ଲୀ ବିକ୍ରୀ ହୋଇଛି । ଏସମସ୍ତକୁ ମିଶାଇ ଗତ ଆର୍ଥିକ ବର୍ଷରେ ମୋଟ୍ ୩୭,୦୨୩ଟି ଉନ୍ନତ ଧୂମହୀନ ଚୁଲ୍ଲୀ ତିଆରି କରାଯାଇଛି । ସ୍ଥିର ଚୁଲ୍ଲୀ ଗୁଡ଼ିକର ନିର୍ମାଣ ଓ ରକ୍ଷଣାବେକ୍ଷଣ ଦିଗରେ ଜନଚେତନା ସୃଷ୍ଟି ଲାଗି ୧୮ଟି ତାଲିମ ଶିବିରର ମଧ୍ୟ ଆୟୋଜନ କରାଯାଇଥିଲା ।

## ଗଞ୍ଜାମ ଜିଲ୍ଲାରେ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମର ଅଗ୍ରଗତି

୧୯୮୭-୮୮ ଆର୍ଥିକ ବର୍ଷ ମଧ୍ୟରେ ଜାତୀୟ ଗ୍ରାମ୍ୟ କର୍ମ ନିଯୁକ୍ତି କାର୍ଯ୍ୟକ୍ରମ ଦ୍ୱାରା ଗଞ୍ଜାମ ଜିଲ୍ଲାରେ ୩ କୋଟି ୨୪ ଲକ୍ଷ ୬୯ ହଜାର ଟଙ୍କା ବ୍ୟୟରେ ଧାର୍ଯ୍ୟ ଲକ୍ଷ୍ୟ ୧୫ ଲକ୍ଷ ୩୯ ହଜାର ଶ୍ରମ ଦିବସ ଅତିକ୍ରାନ୍ତ କରି ମୋଟ୍ ୧୯ ଲକ୍ଷ ୩୭ ହଜାର ଶ୍ରମ ଦିବସ ସୃଷ୍ଟି କରାଯାଇ ପାରିଛି । ସେହିପରି ଗ୍ରାମାଞ୍ଚଳ ଭୂମିହୀନ ଶ୍ରମିକଙ୍କ ନିଯୁକ୍ତି ନିର୍ଭରତା କାର୍ଯ୍ୟକ୍ରମ ଅନୁଯାୟୀ ୧୪ ଲକ୍ଷ ୮୯ ହଜାର ଶ୍ରମିକଙ୍କୁ କାମ ଯୋଗାଇ ଦିଆଯାଇ ପାରିଥିଲା । ଏହା ଧାର୍ଯ୍ୟ ଲକ୍ଷ୍ୟ ୧୪ ଲକ୍ଷ ୩୧ ହଜାରଠାରୁ ଅଧିକ । ଏଥିପାଇଁ ୨ କୋଟି ୮୭ ଲକ୍ଷ ୭୪ ହଜାର ଟଙ୍କା ଖର୍ଚ୍ଚ କରାଯାଇଛି ।

ଏହି ସମୟ ମଧ୍ୟରେ ଜିଲ୍ଲାରେ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ ଦ୍ୱାରା ୧୮,୧୧୬ଟି ପରିବାରଙ୍କୁ ସହାୟତା କରାଯାଇ ପାରିଛି । ଏଥିମଧ୍ୟରୁ ନୂତନ ଭାବେ ୧୧,୫୦୦ ଜଣ ଉପକୃତ ହୋଇଛନ୍ତି । ସେହିଭଳି ଇ. ଆର୍. ଆର୍. ପି. କାର୍ଯ୍ୟକ୍ରମ ମାଧ୍ୟମରେ ୧୨ ହଜାର ପରିବାରଙ୍କୁ ଥଇଥାନର ଲକ୍ଷ୍ୟ ରଖାଯାଇଥିବା ବେଳେ ୧୬,୪୧୨ଜଣ ପରିବାରଙ୍କୁ ଥଇଥାନ କରାଯାଇ ପାରିଛି । ଏହି ସମୟ ମଧ୍ୟରେ ମୋଟ୍ ୬,୯୬୯ ଜଣ ଅକର୍ମଣ୍ୟ ବ୍ୟକ୍ତିଙ୍କୁ ମଧ୍ୟ ବିଭିନ୍ନ ସୁବିଧା ସୁଯୋଗ ଯୋଗାଇ ଦଆଯାଇ ପାରିଥିଲା ।

## ନୂତନ ବସ୍ ବ୍ୟବସ୍ଥା

ଚଳିତ ବର୍ଷ ରାଜ୍ୟ ସଡ଼କ ପରିବହନ ନିଗମ ଓ ରାଜସ୍ୱ ସଡ଼କ ପରିବହନ କଂପାନୀ ପକ୍ଷରୁ ଯଥାକ୍ରମେ ୫୪ଟି ଓ ୫୦ଟି ନୂତନ ବସ୍ କିଣାଯିବା ଓ ଏଗୁଡ଼ିକ ପୁରୁଣା ବସ୍ ସ୍ଥାନରେ ଚଳାଚଳ କରିବ ବୋଲି ଜଣାଯାଇଛି । ବର୍ତ୍ତମାନ ରାଜ୍ୟରେ ୧୬ଟି ମାର୍ଗରେ ଉଭୟ ସଂସ୍ଥାର ବସ୍ ଚଳାଚଳ କରୁଛି ।

ସପ୍ତମ ଯୋଜନା କାଳରେ ରାଜ୍ୟ ସରକାର ଏହି ଦୁଇ ସଂସ୍ଥା, ପରିବହନ ନିଗମ ଓ ପରିବହନ କଂପାନୀକୁ ଯଥାକ୍ରମେ ୧୫ କୋଟି ଟଙ୍କା ଓ ୧୦ କୋଟି ଟଙ୍କା ଅଂଶଧନ ବାବଦରେ ସାହାଯ୍ୟ କରିବାକୁ ସ୍ଥିର କରିଛନ୍ତି । ୧୯୮୭-୮୮ ବର୍ଷ ଶେଷ ସୁଦ୍ଧା ଏହି ଉଭୟ ସଂସ୍ଥାକୁ ଏ ବାବଦରେ ମୋଟ୍ ୧୪ କୋଟି ୨୧ ଲକ୍ଷ ଟଙ୍କା ଯୋଗାଇ ଦଆଯାଇଛି ।

## ଅସହାୟାଙ୍କ ଲାଗି ସ୍ୱଳ୍ପକାଳୀନ ଆଶ୍ରୟସ୍ଥଳୀ

ସମାଜ ଚ୍ୟୁତା, ସ୍ୱାମୀ ପରିତ୍ୟକ୍ତା, ନିରାଶ୍ରିତା, ମାନସିକ ବିକାରଗ୍ରସ୍ତ ତଥା ବାସଚ୍ୟୁତାଙ୍କ ଭଳି ଅସହାୟା ନାରୀମାନଙ୍କର ରକ୍ଷଣାବେକ୍ଷଣ ପାଇଁ ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ୍ୟ ପୁନର୍ଗଠନ ବିଭାଗ ଦ୍ୱାରା ଦୁଇଟି ସ୍ୱଳ୍ପକାଳୀନ ଆଶ୍ରୟସ୍ଥଳୀ ଖୋଲଯାଇଛି । ବାଲେଶ୍ୱର ଓ ପୁରୀଠାରେ ଖୋଲଯାଇଥିବା ଏହି ଦୁଇଟି ଆଶ୍ରୟସ୍ଥଳୀ ପାଇଁ କେନ୍ଦ୍ର ସରକାର ୩ ଲକ୍ଷ ୩୨ ହଜାର ଟଙ୍କା ସାହାଯ୍ୟ ଦେଇଛନ୍ତି । ଏହା ଖୋଲଗଲେ ରାଜ୍ୟରେ ଏପରି ଆଶ୍ରୟସ୍ଥଳୀ ସଂଖ୍ୟା ୩ ହେବ । କଳାହାଣ୍ଡି ଜିଲ୍ଲାର ଧରମଗଡ଼ଠାରେ ଥିବା ଆଶ୍ରୟ ସ୍ଥଳୀରେ ବର୍ତ୍ତମାନ ୩୦ ଜଣ ଅସହାୟାଙ୍କର ରକ୍ଷଣାବେକ୍ଷଣ କରାଯାଉଛି । ଏଥିପାଇଁ ଏକ ଲକ୍ଷ ୯ ହଜାର ୬୦୦ ଟଙ୍କା କେନ୍ଦ୍ରୀୟ ସାହାଯ୍ୟ ମିଳିଛି ।

ମାରଧର ପରେ ଅସହ୍ୟ ହୋଇ ଘରଛାଡ଼ି ନିରାଶ୍ରିତା ଭାବେ ରହିଥିବା ମହିଳା, ସବୁ ରାଗି ପଳାଇ ଆସିଥିବା ଯୁବତୀ, ବଳାତ୍କାର ଭଳି ନାରକୀୟ ଅତ୍ୟାଚାରର ଶିକାର ହେବା ପରେ ସମାଜରେ ନିଜକୁ ଖାପ ଖୁଆଇ ନ ପାରି ଅସହାୟା ହୋଇପଡ଼ିଥିବା ନାରୀ ଏବଂ ବେଶ୍ୟାବୃତ୍ତିରୁ ଉଦ୍ଧାର କରାଯାଇଥିବା ଯୁବତୀଙ୍କୁ ଏହି ଆଶ୍ରୟସ୍ଥଳୀଗୁଡ଼ିକରେ ରଖାଯିବ । ଏଠାରେ ୧୫ରୁ ୩୫ ବର୍ଷ ବୟସ୍କମାନେ ରହିପାରିବେ । ମା'ସହିତ ଘୁରି ଆସିଥିବା ଶିଶୁ ଏବଂ ଗର୍ଭବତୀ ମହିଳା ଅନୁଷ୍ଠାନରେ ଆଶ୍ରୟ ନେବାପରେ ଜନ୍ମ କରିଥିବା ଶିଶୁକୁ ମଧ୍ୟ ଆଶ୍ରୟସ୍ଥଳୀରେ ରହିବାକୁ ଅନୁମତି ଦିଆଯିବ ।

ଆଶ୍ରୟସ୍ଥଳୀମାନଙ୍କରେ ଏହି ନାରୀମାନେ ୬ ମାସଠାରୁ ୩ ବର୍ଷ ପର୍ଯ୍ୟନ୍ତ ରହିପାରିବେ । ଆଶ୍ରିତା ମହିଳାମାନଙ୍କୁ ଆତ୍ମନିଯୁକ୍ତି ଲାଗି କେତେକ ଧନ୍ଦାମୂଳକ ତାଲିମ ଦେବାର ମଧ୍ୟ ଅନୁଷ୍ଠାନଗୁଡ଼ିକରେ ବ୍ୟବସ୍ଥା କରାଯାଇଛି । ଏଠାରେ ରହଣି କାଳ ମଧ୍ୟରେ ପ୍ରତ୍ୟେକ ଅନ୍ତେବାସିନୀଙ୍କ ଲାଗି ମାସିକ ୧୫୦ ଟଙ୍କା ବ୍ୟୟ ବରାଦ ରହିଛି ।

## ବାଲେଶ୍ୱର ଜିଲ୍ଲାରେ କ୍ଷୁଦ୍ର ଓ କୁଟୀରଶିଳ୍ପ

ଗତ ଆର୍ଥିକ ବର୍ଷର ୧୧ ମାସ ମଧ୍ୟରେ ଅର୍ଥାତ୍ ୧୯୮୮ ମସିହା ଫେବୃଆରୀ ସୁଦ୍ଧା ବାଲେଶ୍ୱର ଜିଲ୍ଲାରେ ୧ କୋଟି ୭୪ ଲକ୍ଷ ୨୪ ହଜାର ଟଙ୍କା ବିନିଯୋଗରେ ୯,୫୯୩ଟି ପାରଂପରିକ କୁଟୀର ଶିଳ୍ପ ପ୍ରତିଷ୍ଠା କରାଯାଇ ସେଥି ମାଧ୍ୟମରେ ୧୩,୬୭୬ ଜଣଙ୍କୁ କାମ ଯୋଗାଇ ଦିଆଯାଇ ପାରିଛି । ଉକ୍ତ ବର୍ଷ ଜିଲ୍ଲାରେ ୬,୯୦୦ଟି କୁଟୀର ଶିଳ୍ପ ପ୍ରତିଷ୍ଠା କରାଯିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା ।

ସେହିପରି ଜିଲ୍ଲାରେ ଗତ ଆର୍ଥିକ ବର୍ଷ ମଧ୍ୟରେ ୧୫୫ଟି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା କରାଯିବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଥିବା ବେଳେ ୧୯୮୮ ଫେବୃଆରୀ ସୁଦ୍ଧା ୪ କୋଟି ୧୫ ଲକ୍ଷ ୨୧ ହଜାର ଟଙ୍କା ବିନିଯୋଗରେ ୧୭୧ଟି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠିତ ହୋଇପାରିଛି ଏବଂ ଏଥିମାଧ୍ୟମରେ ୮୧୭ ଜଣଙ୍କୁ କାମ ମିଳିଛି ।

## ଧାର୍ଯ୍ୟ ଲକ୍ଷ୍ୟଠାରୁ ଅଧିକ

ଗତ ଆର୍ଥିକ ବର୍ଷ (୧୯୮୭-୮୮) ଶେଷ ହେବାର ମାସକ ପୂର୍ବରୁ ଓଡ଼ିଶାରେ ବର୍ଷକ ମଧ୍ୟରେ ଯେତିକି ସଂଖ୍ୟକ କୁଟୀରଶିଳ୍ପ ଓ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କରାଯିବାର ଲକ୍ଷ୍ୟଧାର୍ଯ୍ୟ କରଯାଇଥିଲା, ତାହାଠାରୁ ଅଧିକ ପ୍ରତିଷ୍ଠିତ ହୋଇପାରିଛି । କ୍ଷୁଦ୍ରଶିଳ୍ପ କ୍ଷେତ୍ରରେ ଅତିକ୍ରାନ୍ତ ହୋଇଥିବା ବ୍ୟବଧାନ ଅତ୍ୟଧିକ ହୋଇ ନ ଥିଲେ ମଧ୍ୟ କୁଟୀରଶିଳ୍ପ କ୍ଷେତ୍ରରେ ଧାର୍ଯ୍ୟ-ଲକ୍ଷ୍ୟ ଅପେକ୍ଷା ବହୁ ଅଧିକ ବ୍ୟବଧାନ ପରିଲକ୍ଷିତ ହୋଇଛି ।

ଉପରୋକ୍ତ ବର୍ଷ ମଧ୍ୟରେ ୭୫ହଜାର କୁଟୀର ଶିଳ୍ପ ପ୍ରତିଷ୍ଠା କରିବାକୁ ଲକ୍ଷ୍ୟଧାର୍ଯ୍ୟ କରଯାଇଥିବା ବେଳେ ବର୍ଷ ଶେଷ ହେବାର ମାସକ ପୂର୍ବରୁ, ଅର୍ଥାତ୍ ୧୯୮୮ ଫେବୃଆରୀ ସୁଦ୍ଧା ଏକଲକ୍ଷ ୧୭ ହଜାର ୮୭ଟି ପ୍ରତିଷ୍ଠିତ ହୋଇପାରିଛି ଏବଂ ଏଥିମଧ୍ୟରେ ଏକଲକ୍ଷ ୯୮ ହଜାର ୯୯୩ ଜଣଂକୁ କାମ ମିଳିପାରିଛି । ସେହିପରି ଉକ୍ତ ସମୟ ମଧ୍ୟରେ ଦଇହଜାର କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କରଯିବାର ଲକ୍ଷ୍ୟଧାର୍ଯ୍ୟ କରଯାଇଥିବା ବେଳେ ୧୯୮୮ ଫେବୃଆରୀ ସୁଦ୍ଧା ୨୦୦୭ଟି ପ୍ରତିଷ୍ଠା କରଯାଇ ସେଥିମଧ୍ୟରେ ୧୨,୬୬୯ ଜଣଂକୁ କାମ ଯୋଗାଇ ଦିଆଯାଇପାରିଛି । କୁଟୀର ଶିଳ୍ପ ପାଇଁ ୨୩ କୋଟି ୪୬ଲକ୍ଷ ୯୭ ହଜାର ଟଂକା ଏବଂ କ୍ଷୁଦ୍ର ଶିଳ୍ପପାଇଁ ୩୭ କୋଟି ୩୧ଲକ୍ଷ ୯୯ ହଜାର ଟଂକା ବିନିଯୋଗ କରଯାଇଛି ।

## ଯୌତୁକ ପ୍ରଥାର ନିରାକରଣ ପାଇଁ

ଯୌତୁକ ପ୍ରଥାଜନିତ ସମାଜରେ ଘଟୁଥିବା ଘୃଣ୍ୟ ଅପରାଧଗୁଡ଼ିକୁ ଦୃଢ଼ହସ୍ତରେ ଦମନ କରିବା ଲାଗି ସରକାର ବିହିତ ପଦକ୍ଷେପ ଗ୍ରହଣ କରିଛନ୍ତି । ଏଥିପାଇଁ ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ୍ୟ ପୁନର୍ଗଠନ ବିଭାଗର ସମାଜ ମଂଗଳ ନିର୍ଦ୍ଦେଶକଂକ ଅଧୀନରେ ଏକ ସଂସ୍ଥା ଗଠନ କରଯାଇଛି । ଏହାକୁ ଆହୁରି ବ୍ୟାପକ କରିବା ଲାଗି ପ୍ରତି ଜିଲ୍ଲାରେ ସ୍ୱତନ୍ତ୍ର ସଂସ୍ଥାମାନ ମଧ୍ୟ ଗଠନ କରଯାଇଛି । ଯୌତୁକଜନିତ ଅପରାଧଗୁଡ଼ିକର ଆଶୁ ତଦନ୍ତ ଲାଗି ଜଣେ ଡି. ଆଇ. ଜି. ଙ୍କୁ ମଧ୍ୟ ସ୍ୱତନ୍ତ୍ର ଭାବେ ନିଯୁକ୍ତି ଦିଆଯାଇଛି । ଏ ସଂପର୍କିତ ବିଭିନ୍ନ ସମସ୍ୟାକୁ ଏଡ଼ାଇବା ପାଇଁ ୧୯୬୧ ମସିହାରେ ପ୍ରଣୀତ ଯୌତୁକ ପ୍ରତିଷେଧକ ଅଧିନିୟମ ଓ ଦଣ୍ଡବିଧି ଆଇନକୁ ୧୯୮୬ ମସିହାରେ ସଂଶୋଧନ କରଯାଇଛି ।

ଆଇନର ବ୍ୟବସ୍ଥା ସ୍ୱରୂପ ଯଥେଷ୍ଟ ଯୌତୁକ ନ ଆଣିଥିବା ଆଳରେ ନବ ବଧୂଂକୁ ପ୍ରତ୍ୟକ୍ଷ ବା ପରୋକ୍ଷଭାବେ ନିର୍ଯାତନା ଦେବା, ନବବଧୂଂକର

ଅପମୃତ୍ୟୁ ଘଟିବା, ଯୌତୁକ କାରଣରୁ ସ୍ୱାମୀ ସ୍ତ୍ରୀଙ୍କୁ ଦୂରେଇ ରଖି ତାଙ୍କ ସହିତ ଦୈହିକ ସଂପର୍କ ବିଚ୍ଛିନ୍ନ ରଖିବା, ବିବାହ ପୂର୍ବରୁ ବା ପରେ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷଭାବେ ଯୌତୁକଦାବୀ କରିବା ଇତ୍ୟାଦି ଧର୍ତବ୍ୟ ଅପରାଧ ହେବ ଏବଂ ଏଥିପାଇଁ ଦୋଷୀ ସାବ୍ୟସ୍ତ ବର ବା ତାଙ୍କର ପରିବାର ବର୍ଗ କିମ୍ବା ସେମାନଙ୍କର ବନ୍ଧୁବାନ୍ଧବମାନଙ୍କ ପ୍ରତି ମଧ୍ୟ କଠୋରଦଣ୍ଡ ବିଧାନ କରାଯିବ ।

ଯୌତୁକ ଅଭାବରେ ନିର୍ଯାତିତା ଯେ କୌଣସି ମହିଳା ନ୍ୟାୟାଳୟରେ ଦ୍ୱାରସ୍ଥ ହେଲେ ତାଙ୍କୁ ସହାୟତା ଦିଆଯିବାର ବ୍ୟବସ୍ଥା ଅଛି । ଯେ କୌଣସି ବ୍ୟକ୍ତି ଯୌତୁକଜନିତ ଅପରାଧ ସଂପର୍କରେ ରାଜ୍ୟ ସରକାରଙ୍କ ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ୍ୟ ପୁନର୍ଗଠନ ବିଭାଗର ସମାଜ ମଙ୍ଗଳ ସଂସ୍ଥାକୁ ଜଣାଇ ପାରିବେ । ଏପରି ସମ୍ବାଦଦାତାଙ୍କର ନାମ ସର୍ବଦା ଗୋପନ ରଖାଯିବ । ଏ ପ୍ରକାର ସମ୍ବାଦ ହସ୍ତଗତ ହେବା ମାତ୍ରେ ତାହାର ବିହିତ ପ୍ରତିକାରପାଇଁ ସରକାରଙ୍କ ପକ୍ଷରୁ ତୁରନ୍ତ ପଦକ୍ଷେପ ଗ୍ରହଣ କରାଯିବ ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଏହି ସଂସ୍ଥା ଦ୍ୱାରା ଗତବର୍ଷ ୬୨ଟି ଅଭିଯୋଗର ତନଖି କରାଯାଇ ୨୮ଟିରେ ଚାର୍ଜସିଟ୍ ଦାଖଲ କରାଯାଇଛି ।

## କର୍ମଜୀବୀ ମହିଳା ହଷ୍ଟେଲ ପାଇଁ କେନ୍ଦ୍ରୀୟ ସାହାଯ୍ୟ

ଓଡ଼ିଶାରେ ଆହୁରି ଚାରିଟି କର୍ମଜୀବୀ ମହିଳା ହଷ୍ଟେଲ ନିର୍ମାଣ ପାଇଁ ୪୧ଲକ୍ଷ ୭୩ ହଜାର ୫୩୨ ଟଙ୍କା କେନ୍ଦ୍ରୀୟ ସାହାଯ୍ୟ ମିଳିଛି । ଏହି ମହିଳା ହଷ୍ଟେଲଗୁଡ଼ିକ କଟକ, ବାଲେଶ୍ୱର, ମଂଚେଶ୍ୱର ଓ ଭବାନୀପାଟଣାଠାରେ ନିର୍ମାଣ କରାଯିବ । ସେଗୁଡ଼ିକରେ ୨୪ ଜଣ ମହିଳା ରହିପାରିବେ । ମଂଚେଶ୍ୱରଠାରେ ନିର୍ମାଣ ହେବାକୁ ଥିବା ହଷ୍ଟେଲରେ ୧୬ଜଣ ମହିଳା ରହିବାର ବ୍ୟବସ୍ଥା ଥିବା ବେଳେ ଅନ୍ୟ ତିନୋଟି ହଷ୍ଟେଲରେ ୫୦ଜଣ ଲେଖାଏଁ ରହିପାରିବେ । ମଂଚେଶ୍ୱର କର୍ମଜୀବୀ ମହିଳା ହଷ୍ଟେଲ ପାଇଁ ୧୮ ଲକ୍ଷ ୮୫ ହଜାର ଟଙ୍କା କେନ୍ଦ୍ରୀୟ ସାହାଯ୍ୟ ମିଳିଥିବା ବେଳେ ବାଲେଶ୍ୱରପାଇଁ ୧୩ ଲକ୍ଷ ୨୨ ହଜାର ୫୯୩ ଟଙ୍କା, ଭବାନୀପାଟଣା ପାଇଁ ୧୧ ଲକ୍ଷ ୨୨ ହଜାର ୬୧୯ ଟଙ୍କା ଓ ବାଲେଶ୍ୱରଠାରେ ହଷ୍ଟେଲ ନିର୍ମାଣ ପାଇଁ ୬ ଲକ୍ଷ ୫୩ ହଜାର ୨୫୦ ଟଙ୍କା ମିଳିଛି ।

ଏହି ନୂତନ ଚାରିଟି କର୍ମଜୀବୀ ମହିଳା ହଷ୍ଟେଲ ନିର୍ମିତ ହେଲେ ରାଜ୍ୟରେ ଥିବା ଏପରି ହଷ୍ଟେଲର ସଂଖ୍ୟା ୧୬କୁ ବୃଦ୍ଧି ପାଇବ । ବର୍ତ୍ତମାନ ୬ଟି କର୍ମଜୀବୀ ମହିଳା ହଷ୍ଟେଲରେ ୨୮୦ ଜଣ ମହିଳାଙ୍କର ରହିବା ସୁବିଧା କରାଯାଇଛି । ସେଗୁଡ଼ିକ ମଧ୍ୟରେ ଭୁବନେଶ୍ୱରଠାରେ ଥିବା ହଷ୍ଟେଲରେ ୫୦ ଜଣ, କଟକ ସହରରେ ନିର୍ମାଣ କରାଯାଇଥିବା ୨ଟି ହଷ୍ଟେଲରେ ୯୦ ଜଣ ଓ କଟକ ଜିଲ୍ଲାର ଜଗତପୁରଠାରେଥିବା ଗୋଟିଏ ହଷ୍ଟେଲରେ ୫୦ ଜଣ, ରାଉରକେଲାଠାରେଥିବା ହଷ୍ଟେଲରେ ୫୦ ଜଣ ଏବଂ ବାରିପଦାଠାରେଥିବା ମହିଳା ହଷ୍ଟେଲରେ ୪୦ ଜଣ ମହିଳା ରହିପାରିବାର ସୁବିଧା ରହିଛି । ଅନ୍ୟ ୬ଟି କର୍ମଜୀବୀ ମହିଳା ହଷ୍ଟେଲ ନିର୍ମାଣାଧୀନ ରହିଛି ।

ଢେଙ୍କାନାଳ, ବ୍ରହ୍ମପୁର, ବଲାଙ୍ଗୀର, ଜୟପୁର, ବୁର୍ଲା ଓ ସମ୍ବଲପୁରଠାରେ ହେବାକୁଥିବା ମହିଳା ହଷ୍ଟେଲଗୁଡ଼ିକ ନିର୍ମାଣାଧୀନ ରହିଛି । ଏଗୁଡ଼ିକରେ ୧୯୮ ଜଣ କର୍ମଜୀବୀ ମହିଳା ରହିପାରିବେ । ନିର୍ମାଣାଧୀନ ଥିବା ଏହି ହଷ୍ଟେଲଗୁଡ଼ିକ ମଧ୍ୟରୁ କେବଳ ବଲାଙ୍ଗୀରଠାରେ ହେଉଥିବା ହଷ୍ଟେଲରେ ୪୮ଜଣ ମହିଳାଙ୍କ ରହିବାର ସୁବିଧା ଥିବା ବ୍ୟତୀତ ଅନ୍ୟଗୁଡ଼ିକରେ ୫୦ଜଣ ଲେଖାଏଁ ମହିଳା ରହିପାରିବେ ।

ନିର୍ମାଣାଧୀନ ଥିବା ହଷ୍ଟେଲ କାର୍ଯ୍ୟ ସଂପୂର୍ଣ୍ଣ ହେବାପାଇଁ ୭୧ ଲକ୍ଷ ୨୬ ହଜାର ୪୩୮ ଟଙ୍କାର ବ୍ୟୟ ଅଟକଳ କରାଯାଇଛି । ସେଥିରୁ ବ୍ରହ୍ମପୁର ପାଇଁ ୧୩ ଲକ୍ଷ ୫ ହଜାର ଟଙ୍କା, ସମ୍ବଲପୁରପାଇଁ ୧୨ ଲକ୍ଷ ୩୭ ହଜାର ୩୧୨ ଟଙ୍କା, ଜୟପୁରପାଇଁ ୧୧ ଲକ୍ଷ ୮୬ ହଜାର ୭୨୨ ଟଙ୍କା, ବୁର୍ଲା ପାଇଁ ୧୧ ଲକ୍ଷ ୬୮ ହଜାର ୪୨୪ ଟଙ୍କା, ବଲାଙ୍ଗୀରପାଇଁ ୧୧ ଲକ୍ଷ ୪୯ ହଜାର ୬୦୦ ଟଙ୍କା ଓ ଢେଙ୍କାନାଳଠାରେ ନିର୍ମାଣାଧୀନ ଥିବା କର୍ମଜୀବୀ ମହିଳା ହଷ୍ଟେଲ ପାଇଁ ୧୦ ଲକ୍ଷ ୬୯ ହଜାର ୨୦୦ ଟଙ୍କା ବ୍ୟୟ ଅଟକଳ କରାଯାଇଛି ।

କେନ୍ଦ୍ର ସରକାରଙ୍କ ମାନବ ସମ୍ବଳ ଓ ବିକାଶ ମନ୍ତ୍ରଣାଳୟର ମହିଳା ଓ ଶିଶୁ ବିକାଶ ବିଭାଗ ଦ୍ୱାରା ଏହି ମହିଳା ହଷ୍ଟେଲଗୁଡ଼ିକର ନିର୍ମାଣ ପାଇଁ ଅର୍ଥ ସାହାଯ୍ୟ କରାଯାଉଛି । ପ୍ରତ୍ୟେକ ପ୍ରକଳ୍ପର ନିର୍ମାଣ ବାବଦ ବ୍ୟୟ ଅଟକଳର ଶତକଡ଼ା ୭୫ଭାଗ ଏହି କେନ୍ଦ୍ରୀୟ ସାହାଯ୍ୟ ମିଳୁଥିବା ବେଳେ ବାକୀ ଟଙ୍କା ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ବହନ କରିଥାନ୍ତି । ଆବଶ୍ୟକ ସ୍ଥଳେ ଗୋଷ୍ଠୀ ଉନ୍ନୟନ ଓ ଗ୍ରାମ୍ୟ ପୁନର୍ଗଠନ ବିଭାଗ ଦ୍ୱାରା ଆର୍ଥିକ ସାହାଯ୍ୟ ପ୍ରଦାନ କରାଯାଇଥାଏ ।

## ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥା

ମତ୍ସ୍ୟଚାଷୀମାନଙ୍କୁ ବୈଜ୍ଞାନିକ ମତ୍ସ୍ୟଚାଷ ପ୍ରଣାଳୀ ଅନୁସରଣ କରିବାରେ ସାହାଯ୍ୟ କରିବା ପାଇଁ ରାଜ୍ୟର ୧୩ଟି ଜିଲ୍ଲା ମଧ୍ୟରୁ କେନ୍ଦୁଝର ଜିଲ୍ଲା ବ୍ୟତୀତ ଅନ୍ୟାନ୍ୟ ୧୨ଟି ଜିଲ୍ଲାରେ ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥା କାର୍ଯ୍ୟ କରୁଛି । ଗତ ଆର୍ଥିକ ବର୍ଷର ଡିସେମ୍ବର ମାସ ଶେଷସୁଦ୍ଧା ଉକ୍ତ ସଂସ୍ଥା ତରଫରୁ ୨୩୬୭ ହେକ୍ଟର ଆୟତନ ବିଶିଷ୍ଟ ଜଳାଧାରର ଉନ୍ନୟନ କରାଯିବା ସଙ୍ଗେସଙ୍ଗେ ୧୬୦୧ ଜଣ ମତ୍ସ୍ୟଚାଷୀଙ୍କୁ ଉନ୍ନତ ମାଛଚାଷ ସଂପର୍କରେ ତାଲିମ ଦିଆଯାଇଛି । ବିଭିନ୍ନ ବ୍ୟାଙ୍କ ଜରିଆରେ ମତ୍ସ୍ୟଚାଷୀମାନଙ୍କୁ ୧କୋଟି ୯୯ ଲକ୍ଷ ଟଙ୍କା ଋଣ ମଞ୍ଜୁର କରାଯାଇଛି । ଉକ୍ତ ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥାମାନଙ୍କ ଜରିଆରେ ୧୪ ଲକ୍ଷ ଟଙ୍କା ରିହାତି ଆକାରରେ ମତ୍ସ୍ୟଚାଷୀଙ୍କୁ ଦିଆଯାଇଛି । ଏହି କାର୍ଯ୍ୟକ୍ରମରେ ଅଦ୍ୟାବଧି ୫୦ ହଜାରରୁ ଊର୍ଦ୍ଧ୍ୱ ବ୍ୟକ୍ତି ଉପକୃତ ହୋଇଛନ୍ତି ।

ଚଳିତ ଆର୍ଥିକ ବର୍ଷରେ ୨୪୦୦ ହେକ୍ଟର ଆୟତନ ବିଶିଷ୍ଟ ଜଳାଧାରର ଉନ୍ନୟନ କରାଯିବା ସଙ୍ଗେସଙ୍ଗେ ୨୪୦୦ ଜଣ ମତ୍ସ୍ୟଚାଷୀଙ୍କୁ ତାଲିମ ଦେବା ଉଦ୍ଦେଶ୍ୟରେ ୧କୋଟି ୯୬ଲକ୍ଷ ଟଙ୍କା ବ୍ୟୟ କରାଯିବା ପାଇଁ ବ୍ୟବସ୍ଥା କରାଯାଇଛି । ଚଳିତ ବର୍ଷରେ କେନ୍ଦୁଝର ଜିଲ୍ଲାରେ ରାଜ୍ୟର ତ୍ରୟୋଦଶ ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥା ସ୍ଥାପନ ପାଇଁ ପ୍ରସ୍ତାବ ରହିଛି ।

ଏଠାରେ ଉଲ୍ଲେଖନୀୟ ଯେ ଉକ୍ତ ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥାର ବ୍ୟୟ ଓ ରିହାତି ଭାରତ ସରକାର ତଥା ଆନ୍ତର୍ଜାତିକ ଉନ୍ନୟନ ସଂସ୍ଥା ବହନ କରୁଛନ୍ତି । ଗ୍ରାମାଞ୍ଚଳରେ ପତିତ ପୋଖରୀଗୁଡ଼ିକର ଉନ୍ନୟନ ଏବଂ ସରୋଇ ମତ୍ସ୍ୟଚାଷୀଙ୍କୁ ଉନ୍ନତ ମାଛଚାଷ ସଂପର୍କରେ ତାଲିମ ପ୍ରଦାନ ଏହି ସଂସ୍ଥାଗୁଡ଼ିକର ମୁଖ୍ୟ ଉଦ୍ଦେଶ୍ୟ ।

## ଉନ୍ନୟନ କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ମୁଖ୍ୟ ସଚିବଙ୍କର ବ୍ଲକ୍ ପରିଦର୍ଶନ

ଉନ୍ନୟନ ଏବଂ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମଗୁଡ଼ିକ ତ୍ୱରାନ୍ୱିତ କରିବା ଓ ଏ ଦିଗରେ ବ୍ୟୟ ହେଉଥିବା ଅର୍ଥର ସଦୁପଯୋଗ କରିବା ଉପରେ ମୁଖ୍ୟ ଶାସନ ସଚିବ ଶ୍ରୀ ନଳିନୀକାନ୍ତ ପଣ୍ଡା ଗୁରୁତ୍ୱ ଆରୋପ କରିଛନ୍ତି । ବ୍ଲକ୍ ଉନ୍ନୟନ ଅଧିକାରୀ ଓ ସଂପ୍ରସାରଣ ଅଧିକାରୀମାନେ ଜନସାଧାରଣଙ୍କର ସମସ୍ୟା ସହ ନିବିଡ଼ ଭାବରେ ସଂଶ୍ଳିଷ୍ଟ ହୋଇ ତାହାର ସମାଧାନର ପନ୍ଥା ନିର୍ଦ୍ଧାରଣ କରିବା ଏବଂ ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ଦରିଦ୍ର ଲୋକମାନଙ୍କର ଆର୍ଥନୈତିକ ମାନର ପରିବର୍ତ୍ତନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବାକୁ ସେ ପରାମର୍ଶ ଦେଇଛନ୍ତି । ଏ ଦିଗରେ ନିର୍ଦ୍ଧାରିତ ସରକାରୀ ନୀତି ଓ ନିର୍ଦ୍ଦେଶନାମାର ପରିପାଳନ ସଂକ୍ରାନ୍ତରେ ଅନୁଧ୍ୟାନ କରିବା ପାଇଁ ପ୍ରତି ସପ୍ତାହରେ ଗୋଟିଏ ଲେଖାଏଁ ବ୍ଲକ୍ ପରିଦର୍ଶନ କରିବାକୁ ମୁଖ୍ୟ ଶାସନ ସଚିବ ନିଷ୍ପତ୍ତି ନେଇଛନ୍ତି । ତଦନୁଯାୟୀ ସେ ଅପ୍ରେଲ ୨୬ ତାରିଖ ଦିନ କଟକ ଜିଲ୍ଲାର ନିଆଳି ବ୍ଲକ୍ ଏବଂ ୨୭ ତାରିଖ ଦିନ ପୁରୀ ଜିଲ୍ଲାର ସତ୍ୟବାଦୀ ବ୍ଲକ୍ ପରିଦର୍ଶନ କରିଛନ୍ତି ।

ସତ୍ୟବାଦୀ ବ୍ଲକ୍ ପରିଦର୍ଶନ ସମୟରେ ଗୋଷ୍ଠୀ ଉନ୍ନୟନ ତଥା ଗ୍ରାମ୍ୟ ପୁନର୍ଗଠନ ବିଭାଗର ନିର୍ଦ୍ଦେଶକ ତଥା ଅତିରିକ୍ତ ସଚିବ ଶ୍ରୀ ଅଜିତ

କୁମାର ତ୍ରିପାଠୀ, ଜିଲ୍ଲାପାଳ ଶ୍ରୀ ସୁଦାମ ଚରଣ ପଟ୍ଟନାୟକ, ଜିଲ୍ଲା ପଲ୍ଲୀ ଉନ୍ନୟନ ସଂସ୍ଥାର ପ୍ରକଳ୍ପ ଅଧିକାରୀ, ପୁରୀ ସଦର ଏସ୍.ଡି.ଓ. ଏବଂ ବ୍ଲକର କର୍ମଚାରୀମାନେ ଉପସ୍ଥିତ ଥିଲେ । ଉନ୍ନୟନ ତଥା ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବା ଦିଗରେ କର୍ତ୍ତବ୍ୟନିଷ୍ଠା ପ୍ରଦର୍ଶନ କ୍ଷେତ୍ରରେ କୌଣସି ଅବହେଳାକୁ ସରକାର ବରଦାସ୍ତ କରିବେ ନାହିଁ ବୋଲି ଆଲୋଚନା ସମୟରେ ମୁଖ୍ୟ ଶାସନ ସଚିବ ଚେତାବନୀ ଦେଇଛନ୍ତି ।

## ବ୍ୟାପକ ଅବକାରୀ ଧରପଗଡ

ସଂପ୍ରତି ସୁନ୍ଦରଗଡ଼ ଜିଲ୍ଲା ଅବକାରୀ ଅଧୀକ୍ଷକଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଜିଲ୍ଲାର ବୀରମିତ୍ରପୁର, ବିଶ୍ରା, ଲହୁଣୀପଡ଼ା ଓ ବଣାଇ ଇତ୍ୟାଦି ସ୍ଥାନମାନଙ୍କରେ ଅବକାରୀ ଭ୍ରାମ୍ୟମାଣ ନିରୀକ୍ଷକ ଦଳବଳ ଖାନତଲାସ କରି ସର୍ବମୋଟ୍ ୧୧୧ଟି ଅବକାରୀ ମକଦ୍ଦମା ରୁଜୁ କରିଛନ୍ତି । ଏହି ପରିପ୍ରେକ୍ଷୀରେ ବାଜ୍ୟାପ୍ତ ହୋଇଥିବା ବେଆଇନ ମଦ, ମଦରନ୍ଧା ସାମଗ୍ରୀ ଓ ସରଞ୍ଜାମଗୁଡ଼ିକର ଆନୁମାନିକ ମୂଲ୍ୟ ପ୍ରାୟ ୫୦ ହଜାର ଟଙ୍କା ହେବ ।

ଏହା ବ୍ୟତୀତ ଜିଲ୍ଲାର ସଦର ମହକୁମାସ୍ଥିତ ଅବକାରୀ ଅଫିସରମାନେ ବିଭିନ୍ନ ସ୍ଥାନମାନ ଚଢ଼ାଉ କରି ୨୯ଟି ଅବକାରୀ ମକଦ୍ଦମା ରୁଜୁ କରିଥିବାର ଜଣାଯାଏ । ଉପରୋକ୍ତ ୨୯ଟି ମକଦ୍ଦମା ମଧ୍ୟରେ ଦୁଇଟି ମହୁଲ ଗେରା ସ୍ଥଳ ଏବଂ ଦୁଇଗୋଟି ବିଦେଶୀ ମଦର ଗେରା କାରବାର ଅନ୍ତର୍ଭୁକ୍ତ । ବାଜ୍ୟାପ୍ତ ଜିନିଷର ଆନୁମାନିକ ମୂଲ୍ୟ ପ୍ରାୟ ୫୦ ହଜାର ଟଙ୍କା ହେବ ବୋଲି ଜଣାପଡ଼ିଛି ।

## ମରୁଡ଼ିଗ୍ରସ୍ତ ମଦନପୁର-ରାମପୁର ବ୍ଲକ୍‌ରେ ସୂଚନା ରାଷ୍ଟ୍ରମନ୍ତ୍ରୀ

ସୂଚନା ଓ ଲୋକସଂପର୍କ ଏବଂ ଜଳସେଚନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୁପିନ୍ଦର ସିଂହ କଳାହାଣ୍ଡିରୁ ସଂପ୍ରତି ୪ ଦିନିଆ ଗସ୍ତରେ ଯାଇ ମରୁଡ଼ି ବିପନ୍ନ ମଦନପୁର ରାମପୁର ବ୍ଲକର ଆମ୍‌ଗାଁ, ଘୋଡ଼ାପୋଖରୀ, ଗୁରଡ଼ି, ଡାଙ୍ଗେଲ୍ ସମେତ ୧୯ଟି ଗ୍ରାମ ପରିଦର୍ଶନ କରିଥିଲେ । ସେସବୁ ଗ୍ରାମରେ ସେ ସ୍ଥାନୀୟ ସମସ୍ୟା ଏବଂ ଗ୍ରାମବାସୀଙ୍କର ଅଭାବ ଅସୁବିଧା ସଂପର୍କରେ ଆଲୋଚନା କରିଥିଲେ । ଏହି ଅବସରରେ ଶ୍ରୀ ସିଂହ ଜାତୀୟ ଗ୍ରାମାଞ୍ଚଳ ନିଯୁକ୍ତି କାର୍ଯ୍ୟକ୍ରମ (ଏନ୍ ଆର. ଇ. ପି) ଅନୁଯାୟୀ ଘୋଡ଼ାପୋଖରୀ ଗ୍ରାମରେ ୪୦ ହଜାର ଟଙ୍କା ବ୍ୟୟରେ ନିର୍ମିତ ଉଚ୍ଚ ମଧ୍ୟଇଂରାଜୀ ବିଦ୍ୟାଳୟ ଏବଂ ଗୁରଡ଼ି ଗ୍ରାମରେ ୩୦ ହଜାର ଟଙ୍କା ବ୍ୟୟରେ ନିର୍ମିତ ମଧ୍ୟଇଂରାଜୀ ବିଦ୍ୟାଳୟର ଉଦ୍‌ଘାଟନ କରିଥିଲେ । ଏହି ଉପଲକ୍ଷେ ଆୟୋଜିତ ଉତ୍ସବରେ ଉଦ୍‌ବୋଧନ ଦେଇ ଶ୍ରୀ ସିଂହ କହିଲେ ଯେ ଅନଗ୍ରସର କଳାହାଣ୍ଡି ଜିଲାରେ ଶିକ୍ଷାର ପ୍ରସାର ନିମନ୍ତେ ବିଗତ ୭ ବର୍ଷ ମଧ୍ୟରେ ପ୍ରାଥମିକ ସ୍ତରରୁ ମହାବିଦ୍ୟାଳୟ ସ୍ତରପାଏ ବହୁ ଶିକ୍ଷା ଅନୁଷ୍ଠାନ କରାଯାଇଛି । ଏହାଛଡ଼ା ବିଦ୍ୟୁତିକରଣ, ପାନୀୟ ଜଳଯୋଗାଣ, ଜଳସେଚନ, କୃଷି, ସ୍ୱାସ୍ଥ୍ୟ, ଗମନାଗମନ କ୍ଷେତ୍ରରେ ବିଭିନ୍ନ ପଦକ୍ଷେପ ନିଆଯାଇ ଗ୍ରାମାଞ୍ଚଳର ଦ୍ରୁତ ବିକାଶ ଦିଗରେ ଉଦ୍ୟମ କରାଯାଉଛି । ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯାଇ ଦରିଦ୍ରତମ ପରିବାରଙ୍କର ଅର୍ଥନୈତିକ ଉତ୍ଥାନ ଦିଗରେ ଉଦ୍ୟମ ଅବ୍ୟାହତ ରହିଛି । ଜନସାଧାରଣ ଏହିସବୁ କାର୍ଯ୍ୟକ୍ରମର ସୁଯୋଗ ନେଇ ନିଜ ପରିବାରର ଆର୍ଥିକ ଉନ୍ନତି କରିବା ଦିଗରେ ଅଧିକ ଯତ୍ନବାନ ହେବାପାଇଁ ଶ୍ରୀ ସିଂହ ପରାମର୍ଶ ଦେଇଥିଲେ । ଏହି ଗସ୍ତ କାଳରେ ରାଷ୍ଟ୍ରମନ୍ତ୍ରୀ ଗ୍ରାମାଞ୍ଚଳରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଉନ୍ନୟନ କାର୍ଯ୍ୟକ୍ରମର ଅଗ୍ରଗତି ବିଶେଷତଃ ନଳକୂପ ଖନନ ଓ ଉଠା ଜଳସେଚନ ପଏଣ୍ଟ ଇତ୍ୟାଦି ପରିଦର୍ଶନ କରିବା ସଙ୍ଗେସଙ୍ଗେ ଅତ୍ୟାବଶ୍ୟକୀୟ ସାମଗ୍ରୀ ଯୋଗାଣ ଓ ସର୍ବନିମ୍ନ ମଜୁରି ପାଇବା ଦିଗରେ କୌଣସି ଅସୁବିଧା ହେଉଛି କି ନାହିଁ, ତାହା ଗ୍ରାମବାସୀମାନଙ୍କୁ ପଚାରି ବୁଝିଥିଲେ ।

## ଯୋଗାଣ ମନ୍ତ୍ରୀଙ୍କ ବାତ୍ୟାବିଧ୍ୱସ୍ତ ସିମର ଗ୍ରାମ ପରିଦର୍ଶନ

ପୁରୀ ଜିଲା ବେଗୁନିଆ ବ୍ଲକ ଅନ୍ତର୍ଗତ ବାତ୍ୟା ବିଧ୍ୱସ୍ତ ସିମର ଗ୍ରାମ ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ହରିହର କରଣ ପରିଦର୍ଶନ କରିଥିଲେ । ବାତ୍ୟାବିପନ୍ନ ଲୋକଙ୍କ ସହିତ ସାକ୍ଷାତ କରି ଶ୍ରୀ କରଣ ସେମାନଙ୍କର କ୍ଷୟକ୍ଷତି ଏବଂ ଅଭାବ ଅସୁବିଧା ପଚାରି ବୁଝିଥିଲେ । ବାତ୍ୟାରେ ପ୍ରାଣ ହରାଇଥିବା ବାଳକ ନୃପଙ୍କ ପରିବାର ବର୍ଗଙ୍କୁ ଏକ୍‌ସଗ୍ରାସିଆ ଦେବା, ଆହତ ଲୋକମାନଙ୍କ ଚିକିତ୍ସା ନିମନ୍ତେ ଔଷଧ, ଏଥିପାଇଁ ରେଡ୍‌କ୍ରସ ତରଫରୁ ଉପଯୁକ୍ତ ସାହାଯ୍ୟ ଦେବା ଏବଂ ସଂପୂର୍ଣ୍ଣ ରୂପେ ଭାଙ୍ଗିଯାଇଥିବା ହାଇସ୍କୁଲ, ମାଇନର ସ୍କୁଲ ଓ ଡାକ୍ତରଖାନା ଗୁଡ଼ିକର ମରାମତି ପାଇଁ ଉପସ୍ଥିତ ପଦସ୍ଥ ସରକାରୀ କର୍ମକର୍ତ୍ତା— ପୁରୀ ଜିଲାପାଳ, ଖୋର୍ଦ୍ଧା ଏସ୍. ଡି. ଓ. ପ୍ରୋଜେକ୍ଟ ଅଫିସର ଓ ଡାକ୍ତରଙ୍କୁ ନିର୍ଦ୍ଦେଶ ଦେଇଥିଲେ । ମନ୍ତ୍ରୀଙ୍କ ସହିତ ଖୋର୍ଦ୍ଧାର ଏନ୍. ଏ. ସି. ଚେୟାରମ୍ୟାନ୍ ମଧ୍ୟ ବାତ୍ୟା ବିଧ୍ୱସ୍ତ ଗ୍ରାମଗୁଡ଼ିକ ବୁଲି ଦେଖିଥିଲେ ।

## ଅମ୍ବାଭୋନା ବ୍ଲକ୍‌ରେ ଶ୍ରମଭିତ୍ତିକ କାର୍ଯ୍ୟ

ସମ୍ବଲପୁର ଜିଲା ଅମ୍ବାଭୋନା ବ୍ଲକର ୪୩ଟି ମରୁଡ଼ିଗ୍ରସ୍ତ ଗ୍ରାମରେ ୧୦ ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ସମୁଦାୟ ୫୪ଟି ବିଭିନ୍ନ ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ତ୍ୱରାନ୍ୱିତ କରାଯାଇଛି ବୋଲି ଏକ ସମୀକ୍ଷାରୁ ପ୍ରକାଶ ।

ସଂପ୍ରତି ଖଣି ଓ ଭୂତତ୍ତ୍ୱ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ମୋହନ ନାଗଙ୍କ ଅଧ୍ୟକ୍ଷତାରେ ଏକ ବୈଠକ ଅନୁଷ୍ଠିତ ହୋଇ ବିଭିନ୍ନ ମରୁଡ଼ି ସାହାଯ୍ୟ କାର୍ଯ୍ୟକ୍ରମର ଅଗ୍ରଗତି ସଂପର୍କରେ ସମୀକ୍ଷା କରାଯାଇଛି । ଏହି ବ୍ୟୟ ଅଟକଳ ମଧ୍ୟରେ ଟେଷ୍ଟ ରିଲିଫ୍ ପାଣ୍ଠିର ୪ଲକ୍ଷ ୬୫ ହଜାର ଟଙ୍କା ଏବଂ ଏନ୍. ଆର. ଇ. ପି. ର ୫ ଲକ୍ଷ ୩୫ ହଜାର ଟଙ୍କା ଅନ୍ତର୍ଭୁକ୍ତ ବୋଲି ବୈଠକରେ ପ୍ରକାଶ ପାଇଛି । ନିର୍ମାଣ ଓ ଉନ୍ନୟନ କରାଯାଉଥିବା ସେହିସବୁ ପ୍ରକଳ୍ପ ମଧ୍ୟରେ ୩୪ଟି କଟା ଓ ୨୦ଟି ରାସ୍ତା ଅନ୍ତର୍ଭୁକ୍ତ । ଏବେସୁଦ୍ଧା ସେହିସବୁ କାର୍ଯ୍ୟ ବାବଦରେ ସମୁଦାୟ ୯ଲକ୍ଷ ୫୮ ହଜାର ୯୨୭ ଟଙ୍କା ବ୍ୟୟ କରାଯାଇ ୯୫ ହଜାର ୯୦୦ ଶ୍ରମ ଦିବସ ସୃଷ୍ଟି କରାଯାଇଛି ।

## କଳାହାଣ୍ଡି ଜିଲ୍ଲାରେ କୃଷି କାର୍ଯ୍ୟକ୍ରମ ସୁଦୃଢ଼

ଚଳିତ ବର୍ଷ ଖରିଫ୍ ଋତୁରେ କଳାହାଣ୍ଡି ଜିଲ୍ଲାରେ ୫ ଲକ୍ଷ ୧୫ ହଜାର ହେକ୍ଟର ଜମିରେ ଧାନ ଓ ଅନ୍ୟାନ୍ୟ ଫସଲ କରାଯିବାକୁ ସଂପ୍ରତି ଜିଲ୍ଲା ଉନ୍ନୟନ କମିଟି ବୈଠକରେ ନିଷ୍ପତ୍ତି କରାଯାଇଛି । ଏଥିମଧ୍ୟରୁ ୧୮,୩୦୦ ହେକ୍ଟର ଜମିରେ ମିଶ୍ରିତ ଫସଲ ଏବଂ ୧୦ ହଜାର ହେକ୍ଟର ଜମିରେ ପାରଂପରିକ ଧାନଚାଷ ବଦଳରେ ଡାଲି ଓ ତୈଳବୀଜ ଜାତୀୟ ଫସଲ କରାଯିବାକୁ ଲକ୍ଷ୍ୟ ଧାର୍ଯ୍ୟ ହୋଇଛି ।

କପା ଓ ସୋୟାବିନ୍ ଚାଷ ପ୍ରତି ଚାଷୀମାନଙ୍କର ଆଗ୍ରହ ବୃଦ୍ଧି ପରିଲକ୍ଷିତ ହେଉଥିବାରୁ ୧୫୦୦ ହେକ୍ଟର ଜମିରେ କପା ଚାଷ ଓ ୨ ହଜାର ହେକ୍ଟର ଜମିରେ ସୋୟାବିନ୍ ଚାଷ କରାଯିବାକୁ ସ୍ଥିର ହୋଇଛି । ଚାଷୀମାନଙ୍କ ଚାହିଦା ପୂରଣ ପାଇଁ ୨୫୨୫ ମେଟ୍ରିକ୍ ଟନ୍ ସାର ଯୋଗାଣର ବ୍ୟବସ୍ଥା କରାଯିବ ବୋଲି ଜଣାଯାଇଛି । ଚଳିତ ବର୍ଷ ଖରିଫ୍ ଓ ପରବର୍ତ୍ତୀ ରବି ଫସଲ ପାଇଁ ବ୍ୟବସାୟିକ ବ୍ୟାଙ୍କଗୁଡ଼ିକ ଜରିଆରେ ୩୦ ହଜାର ଚାଷୀଙ୍କୁ ୪ କୋଟି ୫୦ ଲକ୍ଷ ଟଙ୍କା ଓ ସମବାୟ ବ୍ୟାଙ୍କ ଜରିଆରେ ୧୧,୪୦୦ ଚାଷୀଙ୍କୁ ୧ କୋଟି ୭ଲକ୍ଷ ୭୦ ହଜାର ଟଙ୍କା କୃଷିଋଣ ପ୍ରଦାନ କରାଯିବାକୁ ଲକ୍ଷ୍ୟ ଧାର୍ଯ୍ୟ ହୋଇଛି । ଗତବର୍ଷ ଏ ବାବଦରେ ମୋଟ୍ ୨୮,୯୬୯ ଜଣ ଚାଷୀଙ୍କୁ ୩ କୋଟି ୧୩ ଲକ୍ଷ ୭୧ ହଜାର ଟଙ୍କା ଋଣ ପ୍ରଦାନ କରାଯାଇଥିଲା ବୋଲି ବୈଠକରେ ପ୍ରକାଶ ପାଇଥିଲା ।

ଜିଲ୍ଲାପାଳ ଶ୍ରୀ ଅରବିନ୍ଦ ବେହେରାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଏହି ଉନ୍ନୟନ କମିଟି ବୈଠକରେ ଜିଲ୍ଲାସ୍ତରୀୟ ଅଫିସରମାନେ ଯୋଗ ଦେଇଥିଲେ । ଗତ ଆର୍ଥିକ ବର୍ଷ ମଧ୍ୟରେ ବିଭିନ୍ନ ଉନ୍ନୟନ କାର୍ଯ୍ୟ, ଗ୍ରାମାଞ୍ଚଳରେ କର୍ମ ସଂସ୍ଥାନ, ପାନୀୟ ଜଳ ଯୋଗାଣ, ଭୂମିହୀନଙ୍କୁ ଜମି ବଣ୍ଟନର ସଫଳତା ବିଷୟରେ ମଧ୍ୟ ଆଲୋଚନା କରାଯାଇଥିଲା ।

ପାନୀୟ ଜଳ ଯୋଗାଣ କ୍ଷେତ୍ରରେ ଗତ ଆର୍ଥିକ ବର୍ଷରେ ୯୦୪ ଟି ନଳକୂପ ବସାଯାଇଥିଲା ଏବଂ ଗତ ମାର୍ଚ୍ଚ ମାସ ଶେଷ ସୁଦ୍ଧା ଜିଲ୍ଲାରେ ମୋଟ୍ ୪,୯୬୧ ଟି ନଳକୂପ ସହର ତଥା ଗ୍ରାମାଞ୍ଚଳରେ ବସାଯାଇ ବିଶୁଦ୍ଧ ପାନୀୟ ଜଳ ଯୋଗାଣ ବ୍ୟବସ୍ଥା ହୋଇପାରିଛି । ଗତବର୍ଷ ଜାତୀୟ ଗ୍ରାମାଞ୍ଚଳ କର୍ମ ସଂସ୍ଥାନ କାର୍ଯ୍ୟକ୍ରମ ଓ ଗ୍ରାମାଞ୍ଚଳ ଭୂମିହୀନ ଶ୍ରମିକଙ୍କ କର୍ମ ସଂସ୍ଥାନ

କାର୍ଯ୍ୟକ୍ରମରେ ମୋଟ୍ ୩୧ ଲକ୍ଷ ୭୦ ହଜାର ଶ୍ରମ ଦିବସ ସୃଷ୍ଟି କରାଯାଇ ଲୋକଙ୍କୁ କାମଧନ୍ଦା ଯୋଗାଇ ଦିଆଯାଇଥିଲା ।

ଗତ ଆର୍ଥିକ ବର୍ଷ ମଧ୍ୟରେ ଘରଡ଼ିହ ନଥିବା ୪,୯୦୫ ଟି ପରିବାରଙ୍କୁ ଘରଡ଼ିହ, ୫୨୮ ଟି ବାସହୀନ ପରିବାରଙ୍କୁ ଇନ୍ଦିରା ଆବାସ ଯୋଜନାରେ ବାସଗୃହ ଯୋଗାଇ ଦିଆଯାଇଥିଲା ଓ ୨୧୭ ଏକର ସିଲିଂ ବହିର୍ଭୂତ ଜମି ଭୂମିହୀନଙ୍କ ମଧ୍ୟରେ ବଣ୍ଟନ କରାଯାଇଥିଲା ।

## ଭଟ୍ଲି ବ୍ଲକ୍‌ରେ ମରୁଡ଼ି ସାହାଯ୍ୟର ସମୀକ୍ଷା

ସମ୍ବଲପୁର ଜିଲ୍ଲାର ମରୁଡ଼ିଗ୍ରସ୍ତ ଭଟ୍ଲି ବ୍ଲକ୍‌ରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ମରୁଡ଼ି ସାହାଯ୍ୟ କାର୍ଯ୍ୟକ୍ରମର ଅଗ୍ରଗତି ସଂପର୍କରେ ସମୀକ୍ଷା କରିବା ପାଇଁ ସଂପ୍ରତି ଖଣି ଓ ଭୂତତ୍ତ୍ୱ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ମୋହନ ନାଗ୍‌ଙ୍କ ଅଧ୍ୟକ୍ଷତାରେ ମରୁଡ଼ି କମିଟିର ବୈଠକ ଅନୁଷ୍ଠିତ ହୋଇଯାଇଛି ।

ସମୀକ୍ଷାରୁ ପ୍ରକାଶ ଯେ ବ୍ଲକ୍‌ର ୮୩ ଟି ଗ୍ରାମ ମଧ୍ୟରୁ ୭୫ ଟି ଗ୍ରାମ ମରୁଡ଼ିଗ୍ରସ୍ତ ବୋଲି ଘୋଷଣା କରାଯାଇଛି । ଅବଶିଷ୍ଟ ୮ ଟି ଗ୍ରାମକୁ ମରୁଡ଼ିଗ୍ରସ୍ତ ଗ୍ରାମରୂପେ ତାଲିକାଭୁକ୍ତ କରିବାକୁ ବୈଠକରେ ସଦସ୍ୟମାନେ ଦାବୀ କରିଥିଲେ ।

ମରୁଡ଼ି ସାହାଯ୍ୟ ସଂପର୍କୀୟ ଆଲୋଚନାରୁ ପ୍ରକାଶ ଯେ ଗତ ଆର୍ଥିକ ବର୍ଷରେ ଏହି ବ୍ଲକ୍‌ର ୧୦ ଟି ଗ୍ରାମ ପଞ୍ଚାୟତରେ ୧୦ ଟି ଭୋଜନ କେନ୍ଦ୍ର ଖୋଲାଯାଇ ୫୧୦ ଜଣ ଶିଶୁ ଓ ନିରାଶ୍ରୟଙ୍କୁ ଜରୁରୀ ଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମ ଅନୁଯାୟୀ ଖାଦ୍ୟ ଯୋଗାଇ ଦିଆଯାଉଛି । ଏହା ବ୍ୟତୀତ ମହିଳା ସମିତିଗୁଡ଼ିକ ସାହାଯ୍ୟରେ ଏମ୍. ଏନ୍. ପି. ଅନୁଯାୟୀ ପ୍ରାୟ ୯ହଜାର ଜଣ ଆସନ୍ନପ୍ରସବା, ପ୍ରସୂତି ଓ ଶିଶୁଙ୍କୁ ପୁଷ୍ଟିକର ଖାଦ୍ୟ ଏବଂ ୧୨୦୦ ଜଣ ଛାତ୍ରଛାତ୍ରୀଙ୍କୁ ମଧ୍ୟାହ୍ନ ଭୋଜନ ଯୋଗାଇ ଦିଆଯାଉଛି । ଏହା ବ୍ୟତୀତ ବ୍ଲକ୍‌ର ୧୧ ଟି ଗ୍ରାମ ପଞ୍ଚାୟତରେ ଗତ ଆର୍ଥିକ ବର୍ଷରେ ୫ ଲକ୍ଷ ୮୯ ହଜାର ୫୫୪ ଟଙ୍କା ବ୍ୟୟ ଅଟକଳରେ ବିଭିନ୍ନ ରାସ୍ତାର ଉନ୍ନୟନ ଓ କଟା ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଥିଲା । ତନ୍ମଧ୍ୟରୁ ୧୩ଟି କଟା ଓ ୮ଟି ରାସ୍ତାସମେତ ସମୁଦାୟ ୪୧ ଟି ବିଭିନ୍ନ ପ୍ରକଳ୍ପ ସଂପୂର୍ଣ୍ଣ କରାଯାଇଛି ବୋଲି ବୈଠକରେ ପ୍ରକାଶ । ସେହିପରି ମୃତ୍ତିକା ସଂରକ୍ଷଣ ବିଭାଗ ତରଫରୁ ୨ ଲକ୍ଷ ଟଙ୍କା ବ୍ୟୟରେ ୪ ଟି ଜଳ ଅମଳ ପ୍ରକଳ୍ପ ସଂପୂର୍ଣ୍ଣ କରାଯାଇଛି । ଅପ୍ରେଲ ମାସରେ ଟେଷ୍ଟ ରିଲିଫ୍ ସାହାଯ୍ୟ ବାବଦରେ ୧ ଲକ୍ଷ ୯୯ ହଜାର ୮୦୦ ଟଙ୍କା ଥିବା ସ୍ଥଳେ ଏହି ମାସ ମଧ୍ୟରେ ୬୩ ହଜାର ୯୬୯ ଟଙ୍କା ବ୍ୟୟ କରାଯାଇଛି । ଗତ ନଭେମ୍ବରଠାରୁ ଅପ୍ରେଲ ମାସ ମଧ୍ୟରେ ପ୍ରାୟ ଏକ ହଜାର କ୍ୱିଣ୍ଟାଲ ଚିନି, ୪୦୦ କ୍ୱିଣ୍ଟାଲରୁ ଊର୍ଦ୍ଧ୍ୱ ସୁଜି, ୩୯୪ ଟିଣ ଖାଇବା ତେଲ ଓ ୭୧ କ୍ୱିଣ୍ଟାଲ ଗହମ ଖାଉଟିମାନଙ୍କୁ ଯୋଗାଇ ଦିଆଯାଇଛି । ଏହିସବୁ ଅତ୍ୟାବଶ୍ୟକ ସାମଗ୍ରୀ ୩୬ ଜଣ ଡିଲର ଓ ୮ ଟି ସମବାୟ ସଂସ୍ଥା ଜରିଆରେ ଯୋଗାଇ ଦିଆଯାଇଛି ବୋଲି ଆଲୋଚନାରୁ ପ୍ରକାଶ । ଏହିଦିନ ଖଣିମନ୍ତ୍ରୀ ଶ୍ରୀ ନାଗ୍ ଭଟ୍ଲି ବ୍ଲକ୍‌ର ୬୮ ଜଣଙ୍କୁ ବାର୍ଦ୍ଧକ୍ୟ ଭତ୍ତା ଓ ବିଧବା ଭତ୍ତା ଏବଂ ୧୩୪ ଜଣଙ୍କୁ ଘରଡ଼ିହ ପଟ୍ଟା ବଣ୍ଟନ କରିଥିଲେ ।

## ବାର ହଜାରରୁ ଅଧିକ ନଳକୂପ ଖନନ

ଗତ ଆର୍ଥିକ ବର୍ଷ ମଧ୍ୟରେ ରାଜ୍ୟର ମରୁଡ଼ିଗ୍ରସ୍ତ ଅଞ୍ଚଳ ସମେତ ସବୁ ଜିଲ୍ଲାରେ ଉଭୟ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ଆର୍ଥିକ ସହାୟତାରେ ୧୪,୭୪୮ଟି ନଳକୂପ ବସାଇବାକୁ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ସ୍ଥଳେ ୧୨,୬୫୧ଟି ନଳକୂପ ବସାଯାଇଛି । ତନ୍ମଧ୍ୟରେ ମରୁଡ଼ିଗ୍ରସ୍ତ ଅଞ୍ଚଳଗୁଡ଼ିକରେ ବସାଯାଇଥିବା ୧୭୪୭ଟି ନଳକୂପ ଅନ୍ତର୍ଭୁକ୍ତ ।

କୋରାପୁଟ ଓ ରାୟଗଡ଼ାରେ ସର୍ବାଧିକ ୨୩୯୭ ଟି ନଳକୂପ ବସାଯାଇଛି । ତା' ପରକୁ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ଓ ଭଞ୍ଜନଗର ଜନସ୍ୱାସ୍ଥ୍ୟ ଡିଭିଜନରେ ୧୪୬୩ ଟି ଏବଂ କଟକ ୨ ନଂ ଓ ୩ ନଂ ଜନସ୍ୱାସ୍ଥ୍ୟ ଡିଭିଜନରେ ୧,୪୨୬ ଟି ନଳକୂପ ବସାଯାଇଛି । ସେହିପରି ମୟୂରଭଞ୍ଜ ଜିଲ୍ଲାରେ ୧୧୨୭ ପୁରୀରେ ୯୯୯, ଫୁଲବାଣୀରେ ୯୬୧, କଳାହାଣ୍ଡିରେ ୮୦୧, ଢେଙ୍କାନାଳରେ ୬୮୩, ସମ୍ବଲପୁରରେ ୭୪୯, ବାଲେଶ୍ୱରରେ ୫୮୨, ବଲାଙ୍ଗୀରରେ ୫୩୬, ରାଉରକେଲାରେ ୫୩୫ ଏବଂ କେନ୍ଦୁଝର ଜିଲ୍ଲାରେ ୨୪୧ଟି ନଳକୂପ ଖନନ କରାଯାଇଛି ।

ବସାଯାଇଥିବା ଉପରୋକ୍ତ ୧୨,୬୫୧ ଟି ନଳକୂପ ବ୍ୟତୀତ ଗତ ଆର୍ଥିକ ବର୍ଷ ମଧ୍ୟରେ 'ଡାନିଡା' ପ୍ରକଳ୍ପ ଅନୁଯାୟୀ ଉପକୂଳବର୍ତ୍ତୀ ଅଞ୍ଚଳ ଗୁଡ଼ିକରେ ସମୁଦାୟ ୪୬୦ ଟି ନଳକୂପ ବସାଯାଇଛି ।

## ଇନ୍ଦିରା ଆବାସ ଯୋଜନା ଓ ସ୍କୁଲ ଗୃହ

ଗତ ମଇ ୩୦ ତାରିଖ ଦିନ ନର୍ଲା ବ୍ଲକ୍‌ର ବାଲିପଡାଠାରେ ରାଜ୍ୟ ସୂଚନା ଓ ସେଚ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ ଇନ୍ଦିରା ଆବାସ ଯୋଜନାରେ ନିର୍ମିତ ୨୦ ଟି ଦୁଇବଖରିଆ ଟାଇଲ ଘର ବାସହୀନ ଦରିଦ୍ର ଲୋକଙ୍କ ମଧ୍ୟରେ ବଣ୍ଟନ କରିଥିଲେ । ଏଭଳି ପ୍ରତ୍ୟେକ ଗୃହ ନିର୍ମାଣରେ ୯ ହଜାର ଟଙ୍କା ବ୍ୟୟ କରାଯାଇଛି । ଶ୍ରୀ ସିଂହ ଏହି ଅବସରରେ ବାଲିପଡାର ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ପରିଦର୍ଶନ କରିଥିଲେ । ଏଠାରେ ରୋଗୀମାନଙ୍କ ବିଶ୍ରାମାଗାର ନିର୍ମାଣ ଓ ସ୍ୱାସ୍ଥ୍ୟକେନ୍ଦ୍ର କୋଠାର ସଂସ୍କାର ପାଇଁ ଜନସାଧାରଣ ରାଷ୍ଟ୍ରମନ୍ତ୍ରୀଙ୍କ ନିକଟରେ ନିବେଦନ କରିଥିଲେ । ଏହି ଅବସରରେ ଶ୍ରୀ ସିଂହ ୨୭ ଜଣଙ୍କୁ ବାର୍ଦ୍ଧକ୍ୟ ଭତ୍ତା ଓ ୨୫ ଜଣଙ୍କୁ ଘରଡ଼ିହ ପଟ୍ଟା ବଣ୍ଟନ କରିଥିଲେ । ଏମାନଙ୍କ ମଧ୍ୟରେ ୧୧ ଜଣ ଆଦିବାସୀ ଓ ୧୪ ଜଣ ହରିଜନ ସଂପ୍ରଦାୟର ଲୋକ ଅଛନ୍ତି ।

ପଲମଠାରେ ମଧ୍ୟ ଇନ୍ଦିରା ଆବାସ ଯୋଜନାର ୨୦ଟି ଗୃହ ଉଦ୍‌ଘାଟନ କରି ଶ୍ରୀ ସିଂହ ୪୫ ଜଣଙ୍କୁ ଘରଡ଼ିହ ପଟ୍ଟା ଓ ୨୪ ଜଣଙ୍କୁ ବାର୍ଦ୍ଧକ୍ୟ ଭତ୍ତା ପ୍ରଦାନ କରିଥିଲେ । ପରେ ସେ ରୂପ୍ରା, ମୁସ୍କୁଟି ଓ ଡମପଡର ପରିଦର୍ଶନ କରିଥିଲେ ଓ କେସିଙ୍ଗା ପଞ୍ଚାୟତ ସମିତି ସଭ୍ୟଙ୍କ ସହ ଉନ୍ନୟନ କାର୍ଯ୍ୟର ଅଗ୍ରଗତି ସଂପର୍କରେ ଆଲୋଚନା କରିଥିଲେ । ରୂଟେନ ଗ୍ରାମରେ ୨୭ ହଜାର ଟଙ୍କା ବ୍ୟୟରେ ନିର୍ମିତ ଏକ ପ୍ରାଥମିକ ବିଦ୍ୟାଳୟ କୋଠାଘର ଶ୍ରୀ ସିଂହ ଉଦ୍‌ଘାଟନ କରିଥିଲେ । ଏଠାରେ ଆଦିବାସୀ ଓ ହରିଜନ ସଂପ୍ରଦାୟର ୮୩ ଜଣ ଛାତ୍ରଛାତ୍ରୀ ଅଧ୍ୟୟନ କରନ୍ତି ।

## ଉଦ୍ୟାନ କୃଷି କାର୍ଯ୍ୟକ୍ରମ ବ୍ୟାପକ କରିବାକୁ ଡାକ

କୃଷି ଓ ସମବାୟ ମନ୍ତ୍ରୀ ଶ୍ରୀ ରାସବିହାରୀ ବେହେରା ରାଜ୍ୟରେ ଚକଡ଼ା ଭିତ୍ତିରେ ଆଳୁ ଓ କଦଳୀ ଚାଷର ସଫଳତା ପାଇଁ ଉଦ୍ୟାନ ଓ କୃଷିବିତ୍‌ମାନଙ୍କୁ ପରାମର୍ଶ ଦେଇଛନ୍ତି ।

ଭୁବନେଶ୍ୱର ଶହୀଦନଗରଠାରେ ଥିବା ମୃତ୍ତିକା ପରୀକ୍ଷା କେନ୍ଦ୍ରଠାରେ ଅପ୍ରେଲ ୩୦ ତାରିଖ ଦିନ ଉଦ୍ୟାନ କୃଷିବିତ୍‌ମାନଙ୍କର ଏକ ସମାବେଶରେ କୃଷିମନ୍ତ୍ରୀ ଏହି ଦୁଇଟି ଫସଲକୁ ବ୍ୟାପକ ଭାବରେ କରାଯିବାକୁ ମତ ପ୍ରକାଶ କରିଥିଲେ । ଚକଡ଼ା ଭିତ୍ତିରେ ବ୍ୟବସାୟିକ ଦୃଷ୍ଟିରୁ ଚଳିତବର୍ଷ କଦଳୀ ଚାଷ ୧ ହଜାର ହେକ୍ଟର ଓ ଆଳୁଚାଷ ୨୪ ହଜାର ହେକ୍ଟର ଜମିରେ କରାଯିବାକୁ ଲକ୍ଷ୍ୟ ରଖାଯାଇଛି । ଗତବର୍ଷ ୫୦୦ ହେକ୍ଟର ଜମିରେ କଦଳୀ ଓ ୧୪ ହଜାର ହେକ୍ଟର ଜମିରେ ଆଳୁଚାଷ କରାଯାଇଥିଲା ।

ଏବର୍ଷ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ୨୫ ହଜାର ସେଚ କୂପ ଖନନ ପାଇଁ ଯୋଜନା ଥିବାରୁ ଫଳ ଓ ପନିପରିବା ଚାଷ ବୃଦ୍ଧି ପାଇବ ବୋଲି କୃଷି ମନ୍ତ୍ରୀ ବୁଝାଇଥିଲେ । ଆଦିବାସୀମାନଙ୍କ ଘର ପଛପଟ ବାଡ଼ିରେ ଗୋଟିଏ ଗୋଟିଏ ପ୍ରକାରର ଫଳଗଛର ଚାରା ଅଧିକ ସଂଖ୍ୟାରେ ରୋପଣ କରାଯିବାକୁ ପରାମର୍ଶ ଦିଆଯାଇଛି ବୋଲି ସୂଚନା ଦେଇ କୃଷି ମନ୍ତ୍ରୀ କହିଲେ ଯେ ଜଣେ ଆଦିବାସୀ ନିଜର ଆବଶ୍ୟକତା ଛଡ଼ା ଅଧିକ ଉତ୍ପାଦିତ ଫଳଗୁଡ଼ିକୁ ବଜାରରେ ବିକ୍ରୟକରି କିଛି ଅର୍ଥ ଆୟ କରିପାରିବ ।

ଗତବର୍ଷ ଶୀତଶସ୍ୟ ଅଞ୍ଚଳରେ କୃଷୀମାନଙ୍କ ଉଦ୍ୟମରେ ହୋଇ-ପାରିଥିବା ଆଶାନୁରୂପ ସଫଳତା ବିଷୟରେ କୃଷି ମନ୍ତ୍ରୀ ଉଦାହରଣ ଦେଇ କହିଲେ ଯେ ସେମାନେ ପୂର୍ବର ସମବାୟ ଋଣ ପରିଶୋଧରେ ଶିଥିଳ କରିଥିଲେ ମଧ୍ୟ ଏପରି ସରକାରଙ୍କ ସ୍ୱତନ୍ତ୍ର ପାଇଁ ଚେଷ୍ଟିତ ଥିବାରୁ ସେମାନଙ୍କୁ ପୁନର୍ବାର ସମବାୟ କୃଷି ଋଣ ଦେବାକୁ ସ୍ୱତନ୍ତ୍ର ଭାବେ ଆଦେଶ ଦିଆଯାଇଥିଲା । ଅନ୍ୟ ଅଞ୍ଚଳରେ ମଧ୍ୟ ଏପରି ପରିସ୍ଥିତି ଉପୁଜିଲେ ସ୍ୱତନ୍ତ୍ର ବିଚାର କରାଯିବ ବୋଲି ମନ୍ତ୍ରୀ ପ୍ରକାଶ କରିଥିଲେ ।

ଚଳିତ ବର୍ଷକୁ ଉତ୍ପାଦନ ବୃଦ୍ଧି ବର୍ଷ ରୂପେ ଗ୍ରହଣକରି ଆମ୍ବ, ପଣସ, ପିଜୁଳି, କଦଳୀ, ରେଶମ୍ ଓ ଅନ୍ୟାନ୍ୟ ପନିପରିବା ଓ ପିଆଜ ଚାଷ ଅଧିକ ପରିମାଣରେ କରାଯିବା ପାଇଁ କୃଷୀମାନଙ୍କୁ ସାହାଯ୍ୟ ଓ ଉତ୍ସାହିତ କରିବାକୁ କୃଷିମନ୍ତ୍ରୀ ପରାମର୍ଶ ଦେଇଥିଲେ ।

## କଳାହାଣ୍ଡି ମରୁଡ଼ିଗ୍ରସ୍ତ ଅଞ୍ଚଳ ପାଇଁ ସ୍ୱତନ୍ତ୍ର ଯୋଜନା

କଳାହାଣ୍ଡି ଜିଲ୍ଲାର ମରୁଡ଼ିଗ୍ରସ୍ତ ଅଞ୍ଚଳରେ ଓଡ଼ିଶା ଖଦୀ ଓ ଗ୍ରାମୋଦ୍ୟୋଗ ବୋର୍ଡ଼ ଆନୁକୂଲ୍ୟରେ ୧ କୋଟି ୫୦ ଲକ୍ଷ ଟଙ୍କା ବିନିଯୋଗରେ ଏକ ସ୍ୱତନ୍ତ୍ର ମରୁଡ଼ି ଯୋଜନା କାର୍ଯ୍ୟକାରୀ କରାଯାଇ ଗ୍ରାମାଞ୍ଚଳର ୫ ହଜାରର କର୍ମ ସଂସ୍ଥାନ କରାଯିବ । ଗତ ଅକ୍ଟୋବର ୨୫ ତାରିଖରେ ଭବାନୀପାଟଣାଠାରେ ଖଦୀ ଓ ଗ୍ରାମୋଦ୍ୟୋଗ କମିଶନ, ଓଡ଼ିଶା ଖଦୀ ଓ ଗ୍ରାମୋଦ୍ୟୋଗ ବୋର୍ଡ଼, କଳାହାଣ୍ଡି ଜିଲ୍ଲା ଶିଳ୍ପକେନ୍ଦ୍ର ଏବଂ ଜିଲ୍ଲା ଗ୍ରାମାଞ୍ଚଳ ଉନ୍ନୟନ ସଂସ୍ଥାର କର୍ମକର୍ତ୍ତାଙ୍କ ଉପସ୍ଥିତିରେ ଅନୁଷ୍ଠିତ ବୈଠକରେ ଏ ସମ୍ପର୍କରେ କାର୍ଯ୍ୟକ୍ରମ ଚୂଡ଼ାନ୍ତ କରାଯାଇଛି । ଓଡ଼ିଶାର ମରୁଡ଼ିଗ୍ରସ୍ତ ଅଞ୍ଚଳରେ ଲୋକମାନଙ୍କୁ କାମଧନ୍ଦା ଯୋଗାଇ ଦେବାପାଇଁ ଏହି ସ୍ୱତନ୍ତ୍ର ଯୋଜନାଟି ଉଦ୍ଦିଷ୍ଟ ଏବଂ ଏହାକୁ କାର୍ଯ୍ୟକାରୀ କରିବା ନିମନ୍ତେ ଖଦୀ ଓ ଗ୍ରାମୋଦ୍ୟୋଗ କମିଶନ ଆବଶ୍ୟକୀୟ ସମ୍ବଳ ଯୋଗାଇ ଦେବେ । ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ମଧ୍ୟ ଆବଶ୍ୟକୀୟ କ୍ଷେତ୍ରରେ ଅନୁଦାନ ପ୍ରଦାନ କରିବେ । ଏହି ସ୍ୱତନ୍ତ୍ର ଯୋଜନା କାର୍ଯ୍ୟକାରୀ କରିବା ନିମନ୍ତେ ସାରା ରାଜ୍ୟରେ ବଛା ଯାଇଥିବା ୧୫ଟି ବ୍ଲକ ମଧ୍ୟରେ କଳାହାଣ୍ଡି ଜିଲ୍ଲାର ୧୦ଟି ବ୍ଲକ ଅନ୍ତର୍ଭୁକ୍ତ । ଏଗୁଡ଼ିକ ହେଲା :——ଭବାନୀପାଟଣା, ଲାଞ୍ଜିଗଡ଼, ମଦନପୁର-ରାମପୁର, ଥୁଆମୂଳ-ରାମପୁର, ଗୋଲମୁଣ୍ଡା, ନୂଆପଡ଼ା, କୋମନା, ଖଡ଼ିଆଳ, ବୋଡ଼େନ ଓ ସିନାପାଲି । ଏହି କାର୍ଯ୍ୟକ୍ରମ ଅନୁଯାୟୀ ପ୍ରତ୍ୟେକ ବ୍ଲକରେ ୩ ବର୍ଷ ପର୍ଯ୍ୟନ୍ତ ହାରାହାରି ବାର୍ଷିକ ୧୫ ଲକ୍ଷ ଟଙ୍କା ବିନିଯୋଗରେ ସୂତା ଖଦୀ ଓ ସିଲ୍କ ଖଦୀ ସମେତ ୧୮ଟି ବିଭିନ୍ନ ଧରଣର ଗ୍ରାମ୍ୟ ଶିଳ୍ପରେ ଗ୍ରାମବାସୀଙ୍କୁ ଥଇଥାନ କରାଯିବ । ଏହି ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଗତ ଆର୍ଥିକ ବର୍ଷରୁ କାର୍ଯ୍ୟକାରୀ କରାଯାଉଛି ଏବଂ ଉକ୍ତ ବର୍ଷ ଏହି କାର୍ଯ୍ୟକ୍ରମ ନିମନ୍ତେ ୪୩ ଲକ୍ଷ ଟଙ୍କା ମଞ୍ଜୁର କରାଯାଇଥିଲା । ଚଳିତ ବର୍ଷ ଏ ବାବଦରେ ବିନିଯୋଗ ନିମନ୍ତେ ୧ କୋଟି ୫୦ ଲକ୍ଷ ଟଙ୍କାର ବ୍ୟୟ ଅଟକଳ ମଞ୍ଜୁର କରାଯାଇଛି । ଏହି କାର୍ଯ୍ୟକ୍ରମ ସଫଳତାର ସହିତ କାର୍ଯ୍ୟକାରୀ ହେଲେ କଳାହାଣ୍ଡି ଜିଲ୍ଲାର ମରୁଡ଼ି ବିପନ୍ନ ଅଞ୍ଚଳର ବହୁ ସଂଖ୍ୟକ ଗ୍ରାମବାସୀ ଉପକୃତ ହୋଇପାରିବେ ।

## ରାଜ୍ୟର ସମବାୟ ଅନୁଷ୍ଠାନଗୁଡ଼ିକୁ ଅଧିକ ସୁଦୃଢ଼ କରାଯିବ

### ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ

ଓଡ଼ିଶାରେ କୃଷି ଉତ୍ପାଦନ ବୃଦ୍ଧି ଓ କୃଷକ ସମାଜର ଆର୍ଥିକ ମାନଦଣ୍ଡର କ୍ରମୋନ୍ନତି ଦିଗରେ ସେବା ସମବାୟ ସମିତିଗୁଡ଼ିକର କାର୍ଯ୍ୟ ପ୍ରଶଂସନୀୟ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ କହିଛନ୍ତି ।

ସଚିବାଳୟରେ ସମବାୟ ବିଭାଗ, ରାଜ୍ୟ ସମବାୟ ବ୍ୟାଙ୍କ, ରାଜ୍ୟ ଭୂ-ଉନ୍ନୟନ ବ୍ୟାଙ୍କ, ରାଜ୍ୟ ସମବାୟ ବାଣିଜ୍ୟିକ ସଂଘର କର୍ମକର୍ତ୍ତାମାନଙ୍କର ଏକ ବୈଠକରେ ମୁଖ୍ୟମନ୍ତ୍ରୀ ଅଧ୍ୟକ୍ଷତା କରିଥିଲେ । ରାଜ୍ୟରେ ଥିବା ବିଭିନ୍ନ ସମବାୟ ଅନୁଷ୍ଠାନ ଓ ବ୍ୟାଙ୍କମାନଙ୍କର କାର୍ଯ୍ୟ ଦକ୍ଷତା, ପୁଞ୍ଜି ଉଠାଣ ଓ ସାର ବଣ୍ଟନ ସମ୍ପର୍କରେ ମୁଖ୍ୟତଃ ଆଲୋଚନା କରାଯାଇଥିଲା ।

ଚଳିତ ବର୍ଷ ଖରିଫ ଋତୁରେ ବ୍ୟାପକ ଭାବେ କୃଷି କାର୍ଯ୍ୟକ୍ରମ ଗ୍ରହଣ କରାଯାଉଥିବାରୁ ଚାଷୀମାନଙ୍କୁ ଠିକ୍ ସମୟରେ କୃଷି ଋଣ ଓ ସାର ଯୋଗାଇ ଦେବାକୁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ । ଏ ବର୍ଷ ଖରିଫ୍ ଚାଷ ପାଇଁ ୫୦ କୋଟି ଟଙ୍କା କୃଷି ଋଣ ଓ ୧ ଲକ୍ଷ ୧୨ ହଜାର ଟନ୍ ରାସାୟନିକ ସାର ବଣ୍ଟନ କରାଯିବାକୁ ବୈଠକରେ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । ଗତବର୍ଷର ଖରିଫ ଚାଷରେ ମରୁଡ଼ିଜନିତ କ୍ଷୟକ୍ଷତି ହୋଇଥିବାରୁ ଶସ୍ୟବୀମା ଯୋଜନାରେ ଅଂଶ ଗ୍ରହଣ କରିଥିବା ୧ ଲକ୍ଷ ୨୦ ହଜାର ଚାଷୀ ବୀମା କମ୍ପାନୀ ପକ୍ଷରୁ କ୍ଷତିପୂରଣ ପାଇ ଉପକୃତ ହେବେ ବୋଲି ବୈଠକରେ ପ୍ରକାଶ ପାଇଥିଲା ।

କୃଷି ଓ ସମବାୟ ମନ୍ତ୍ରୀ ଶ୍ରୀ ରାସବିହାରୀ ବେହେରା, ମୁଖ୍ୟ ଶାସନ ସଚିବ ଶ୍ରୀ ନଳିନୀକାନ୍ତ ପଣ୍ଡା, ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ରମାକାନ୍ତ ରଥ, ଶାସନ ସଚିବ ଶ୍ରୀ କୈଳାସ ବିହାରୀ ବର୍ମା, ସମବାୟ ନିବନ୍ଧକ ଶ୍ରୀ ଏଲ. କିଣ୍ଡୋ, ରାଜ୍ୟ ସମବାୟ ବ୍ୟାଙ୍କର ସଭାପତି ଶ୍ରୀ ସୁରେନ୍ଦ୍ର ମୋହନ ପଟ୍ଟନାୟକ, ରାଜ୍ୟ ଭୂ-ଉନ୍ନୟନ ବ୍ୟାଙ୍କର ସଭାପତି ଶ୍ରୀ ସୌମ୍ୟରଞ୍ଜନ ପଟ୍ଟନାୟକ ଓ ରାଜ୍ୟ ବାଣିଜ୍ୟିକ ସଂଘର ସଭାପତି ଶ୍ରୀ ରାଜୀବ ଲୋଚନ ହୋତା, ବିଭିନ୍ନ ବିଭାଗୀୟ ଉଚ୍ଚ ପଦସ୍ଥ ଅଫିସରମାନେ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ଗୋବର ଗ୍ୟାସ୍ ପ୍ଲାଣ୍ଟ ନିର୍ମାଣରେ ସାଫଲ୍ୟ

ଗତ ଆର୍ଥିକ ବର୍ଷରେ ରାଜ୍ୟରେ ତିନି ହଜାରଟି ଗୋବର ଗ୍ୟାସ ପ୍ଲାଣ୍ଟ ନିର୍ମାଣ ଲାଗି ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ବେଳେ ମୋଟ ୬୦୦୫ଟି ପ୍ଲାଣ୍ଟ ବସାଯାଇ ଏ କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ହାସଲ କରାଯାଇ ପାରିଛି । ଏହି ସମୟ ମଧ୍ୟରେ ଗଞ୍ଜାମ ଓ କଳାହାଣ୍ଡି ଜିଲ୍ଲାରେ ୧୦୬୧ଟି ଲେଖାଏଁ ବାୟୋଗ୍ୟାସ ପ୍ଲାଣ୍ଟ ବସାଯାଇଥିବା ବେଳେ ତା' ପଛକୁ କଟକ ଜିଲ୍ଲାରେ ୮୨୦ଟି ଏପରି ପ୍ଲାଣ୍ଟ ନିର୍ମିତ ହୋଇଛି । ଏହାଛଡ଼ା ସମ୍ବଲପୁର, ମୟୂରଭଞ୍ଜ ଓ ବଲାଙ୍ଗୀର ଜିଲ୍ଲାଗୁଡ଼ିକରେ ୫୦୦ରୁ ଊର୍ଦ୍ଧ୍ୱ ପ୍ଲାଣ୍ଟ ବସାଯାଇଛି । ଅନ୍ୟ ଜିଲ୍ଲାଗୁଡ଼ିକ ମଧ୍ୟରୁ ସୁନ୍ଦରଗଡ଼ ଜିଲ୍ଲାରେ ୩୧୦ଟି ପୁରୀ ଜିଲ୍ଲାରେ ୨୮୧ଟି, କେନ୍ଦୁଝର ଜିଲ୍ଲାରେ ୨୩୫ଟି, ଢେଙ୍କାନାଳ ଜିଲ୍ଲାରେ ୨୧୧ଟି, ବାଲେଶ୍ୱର ଜିଲ୍ଲାରେ ୨୦୧ଟି, କୋରାପୁଟ ଜିଲ୍ଲାରେ ୧୪୩ଟି ଓ ଫୁଲବାଣୀ ଜିଲ୍ଲାରେ ୬୫ଟି ଗୋବର ଗ୍ୟାସ ପ୍ଲାଣ୍ଟ ନିର୍ମାଣ କରାଯାଇଛି । ସାରା ରାଜ୍ୟରେ ଆହୁରି ୧୯୯୮ଟି ଗୋବର ଗ୍ୟାସ ପ୍ଲାଣ୍ଟ ନିର୍ମାଣାଧୀନ ରହିଛି ।

## ଗୃହ ନିର୍ମାଣ ପାଇଁ ମଧ୍ୟମ ଆୟକାରୀଙ୍କୁ ଋଣ

ସାମାଜିକ ଗୃହ ନିର୍ମାଣ ପ୍ରକଳ୍ପ ଅନୁଯାୟୀ ରାଜ୍ୟ ସରକାରଙ୍କ ଦ୍ୱାରା କାର୍ଯ୍ୟକାରୀ ହେଉଥିବା ମଧ୍ୟମ ଆୟକାରୀ ଗୃହ ନିର୍ମାଣ ଯୋଜନାରେ ଗୃହ ନିର୍ମାଣ କରିବାକୁ ଜଣେ ମଧ୍ୟମ ଆୟକାରୀ ବ୍ୟକ୍ତିଙ୍କୁ ସର୍ବାଧିକ ୨୭,୫୦୦ ଟଙ୍କା ଋଣ ଆକାରରେ ମଞ୍ଜୁର କରାଯାଇଥାଏ । ଯେଉଁମାନଙ୍କର ବାର୍ଷିକ ଆୟ ୭,୨୦୧ ଟଙ୍କାରୁ ୧୮,୦୦୦ ଟଙ୍କା ହୋଇଥିବ, ସେମାନଙ୍କୁ ଏହି ଋଣ ଦିଆଯାଏ ଏବଂ ୨୫ଟି ବାର୍ଷିକ କିସ୍ତିରେ ଋଣ ଆଦାୟ କରାଯାଇଥାଏ ।

ଏହି ଯୋଜନା ଅନୁଯାୟୀ ଗତ ଷଷ୍ଠ ଯୋଜନା କାଳ ମଧ୍ୟରେ ୭୨ ଲକ୍ଷ ୧୭ ହଜାର ଟଙ୍କା ବ୍ୟୟରେ ୨୦୫ଟି ଗୃହ ନିର୍ମାଣ କରାଯାଇଥିଲା ।

ଚଳିତ ସପ୍ତମ ଯୋଜନା କାଳ ମଧ୍ୟରେ ଏ ବାବଦରେ ୧ କୋଟି ୧୦ ଲକ୍ଷ ଟଙ୍କା ଋଣ ମଞ୍ଜୁର କରି ୪୦୦ଟି ଗୃହ ନିର୍ମାଣ କରିବାକୁ ପ୍ରସ୍ତାବ ରହିଛି । ତଦନୁଯାୟୀ ୧୯୮୫-୮୬ରେ ୧୮ ଲକ୍ଷ ୯୮ ହଜାର ଟଙ୍କା ବିନିଯୋଗରେ ୬୯ଟି ଏବଂ ୧୯୮୬-୮୭ରେ ୧୫ ଲକ୍ଷ ୧୫ ହଜାର ଟଙ୍କାରେ ୫୮ଟି ଗୃହ ନିର୍ମାଣ କରାଯାଇଛି । ସେହିପରି ଗତ ଆର୍ଥିକ ବର୍ଷରେ ୧୫ ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ୫୫ଟି ଗୃହ ନିର୍ମାଣ ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା ।

## ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିର ପ୍ରଶାସନ

ପୁରାଣିତ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରର ଆର୍ଥିକ ଅବସ୍ଥାକୁ ସ୍ବଚ୍ଛ କରିବା ପାଇଁ ମନ୍ଦିର ଭିତରେ ଏକ ହୁଣ୍ଡି ରଖାଯାଇଛି । ଏଥିରେ ତୀର୍ଥଯାତ୍ରୀ ଏବଂ ଭକ୍ତମାନେ ତାଙ୍କର ଯଥାଶକ୍ତି ଶ୍ରଦ୍ଧା ଦିଅନ୍ତି । ଏହା ବ୍ୟତୀତ ଶ୍ରୀ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ପାଣ୍ଠି ନାମକ ଏକ ପାଣ୍ଠି ମଧ୍ୟ ଗଠନ କରାଯାଇଛି ।

ଗତ ଆର୍ଥିକ ବର୍ଷର ଡିସେମ୍ବର ମାସ ଶେଷ ସୁଦ୍ଧା ଉକ୍ତ ହୁଣ୍ଡିରୁ ସୁନା ଓ ରୂପାର ଅଳଙ୍କାର ଓ ଅନ୍ୟାନ୍ୟ ଦ୍ରବ୍ୟଗୁଡ଼ିକୁ ଛାଡ଼ି ନଗଦ ୬୩ ଲକ୍ଷ ୫୧ ହଜାର ୮୫୦ ଟଙ୍କା ସଂଗ୍ରହ କରାଯାଇଛି । 'ଶ୍ରୀ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ପାଣ୍ଠି' ସୁଧର ଶତକଡ଼ା ୪୫ ଭାଗ ଅର୍ଥ ପୁରୀର ଶ୍ରୀ ଜଗନ୍ନାଥ ସଂସ୍କୃତ ବିଦ୍ୟାଳୟକୁ ଦିଆଯିବ, ୫ ଭାଗ ଅର୍ଥ ସେବକମାନଙ୍କର କଲ୍ୟାଣ ପାଇଁ ଖର୍ଚ୍ଚ କରାଯିବା ସଙ୍ଗେସଙ୍ଗେ ଅବଶିଷ୍ଟ ୫୦ ଭାଗ ଅର୍ଥ ଶ୍ରୀ ମନ୍ଦିର ପାଣ୍ଠିରେ ଜମା କରାଯିବ ବୋଲି ସ୍ଥିର ହୋଇଛି ।

ଗତ ଆର୍ଥିକ ବର୍ଷରେ ଶ୍ରୀ ମନ୍ଦିର ପରିଚାଳନା ଓ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଯାତ୍ରା ପାଇଁ ଯଥାକ୍ରମେ ୬୩ ଲକ୍ଷ ୫୦ ହଜାର ଟଙ୍କା ଏବଂ ୪ ଲକ୍ଷ ଟଙ୍କା ମଞ୍ଜୁର କରାଯାଇଛି । ଏହା ବ୍ୟତୀତ ୩ ଲକ୍ଷ ଟଙ୍କାର ସୁଧମୁକ୍ତ ଋଣ ଦଇତାପତିମାନଙ୍କୁ ଦିଆଯାଉଛି, ଯାହାକି ଚିରନ୍ତନ ବାର୍ଷିକୀ (ପରପିଚ୍ୟୁଆଲ ଆନୁଇଟି) ରେ ଭରଣା କରାଯିବ ।

## ସଫେଇ କାର୍ଯ୍ୟରେ ନିଯୁକ୍ତ ବ୍ୟକ୍ତିଙ୍କ ପିଲାମାନଙ୍କ ଶିକ୍ଷା ପାଇଁ ସ୍ବତନ୍ତ୍ର ବୃତ୍ତି

ରାଜ୍ୟ ମଧ୍ୟରେ କୌଣସି ସ୍ବୀକୃତିପ୍ରାପ୍ତ ଶିକ୍ଷାନୁଷ୍ଠାନରେ ଷଷ୍ଠରୁ ଦଶମ ଶ୍ରେଣୀରେ ଅଧ୍ୟୟନ କରୁଥିବା ଓ ଛାତ୍ରାବାସ ବା ସ୍ବୀକୃତିପ୍ରାପ୍ତ ମେସ୍‌ରେ ରହୁଥିବା ଛାତ୍ର ଛାତ୍ରୀମାନଙ୍କୁ ୧୯୮୮-୮୯ ବର୍ଷରେ ପ୍ରାକ ପ୍ରବେଶିକା ବୃତ୍ତି ପ୍ରଦାନ କରାଯିବ । ବୃତ୍ତିର ପରିମାଣ ଷଷ୍ଠରୁ ଅଷ୍ଟମ ଶ୍ରେଣୀରେ ଅଧ୍ୟୟନ କରୁଥିବା ଛାତ୍ର ଛାତ୍ରୀଙ୍କ ପାଇଁ ମାସିକ ୨୦୦ ଟଙ୍କା ଏବଂ ନବମ ଓ ଦଶମ ଶ୍ରେଣୀର ଛାତ୍ର ଛାତ୍ରୀଙ୍କ ପାଇଁ ମାସିକ ୨୫୦ ଟଙ୍କା ଶିକ୍ଷାବର୍ଷ ମଧ୍ୟରେ ୧୦ ମାସ ପାଇଁ ଏହି ବୃତ୍ତି ମିଳିପାରିବ । ଯେଉଁ ଛାତ୍ର ଛାତ୍ରୀମାନଙ୍କର ପିତାମାତା ଅପରିଚ୍ଛନ୍ନ କାର୍ଯ୍ୟ ଯଥା ବିଦେଶୀ ଶୌଚ ପାଇଖାନାରୁ ମଇଳା ସଫେଇ, ନର୍ଦ୍ଦମା ସଫେଇ ଓ ଆବର୍ଜନା ଟାଣିବା କିମ୍ବା ମୃତ ପ୍ରାଣୀର ଚମଡ଼ା ଛାଡ଼ିବା ବା ଚମଡ଼ା କମାଇବା କାର୍ଯ୍ୟରେ ସମ୍ପୃକ୍ତ ହେବେ ନିଯୁକ୍ତ ଥିବେ ଏବଂ ସେମାନଙ୍କର ମାସିକ ଆୟ ୧୦୦୦ ଟଙ୍କାରୁ ଅଧିକ ହୋଇନଥିବ, କେବଳ ସେହିମାନେ ଏହି ବୃତ୍ତି ପାଇବାକୁ ହକଦାର ହେବେ । ଏଥିପାଇଁ ପିତାମାତାଙ୍କ ବୃତ୍ତି ସମ୍ବନ୍ଧୀୟ ସାର୍ଟିଫିକେଟ ଓ ଅନ୍ୟାନ୍ୟ ତଥ୍ୟ ଆବଶ୍ୟକତା ଅନୁଯାୟୀ ଯୋଗାଇ ଦେବାକୁ ହେବ ।

ଉପଯୁକ୍ତ ଛାତ୍ର ଛାତ୍ରୀମାନେ ବୃତ୍ତି ପାଇଁ ନିଜର ଯୋଗ୍ୟତା ଦର୍ଶାଇ ନିର୍ଦ୍ଧାରିତ ତାରିଖ ସୁଦ୍ଧା ପ୍ରଧାନ ଶିକ୍ଷକଙ୍କ ଜରିଆରେ ସଂପୃକ୍ତ ଜିଲ୍ଲା ମଙ୍ଗଳ ଅଧିକାରୀଙ୍କ ନିକଟକୁ ସାଧା କାଗଜରେ ଦରଖାସ୍ତ ପଠାଇଲେ, ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ବୋଲି ହରିଜନ ଓ ଆଦିବାସୀ ମଙ୍ଗଳ ବିଭାଗ ତରଫରୁ ଜଣାଇ ଦିଆଯାଇଛି ।

## ରାଜ୍ୟର ଜଳ ସମ୍ପଦ ଏବଂ ଏହାର ବିନିଯୋଗ

ମଇ ୫ ତାରିଖ ଦିନ ଭୁବନେଶ୍ୱରଠାରେ ଜାତୀୟ ଜଳ ସଂପଦ ଦିବସ ଉପଲକ୍ଷେ ରାଜ୍ୟ ଜଳ ସଂପଦ ବିନିଯୋଗ ସଂକ୍ରାନ୍ତରେ ଏକ ଆଲୋଚନା ଚକ୍ର ଅନୁଷ୍ଠିତ ହୋଇଥିଲା । ସେଚ, ଶକ୍ତି ଏବଂ ସଂସଦୀୟ ବ୍ୟାପାର ମନ୍ତ୍ରୀ ସେକ୍ ମତଲୁବ୍ ଅଲ୍ଲୀଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ଆଲୋଚନା ଚକ୍ରରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉଦ୍‌ବୋଧନ ଦେଇ କହିଲେ ଯେ ଓଡ଼ିଶାରେ ଜଳସେଚନର ବିଶାଳ ସମ୍ଭାବନା ରହିଛି । ଏହି ସମ୍ଭାବନାକୁ ସଫଳ କରିବାକୁ ହେଲେ ଦୀର୍ଘ ମିଆଦୀ ଯୋଜନା ହାତକୁ ନେବାକୁ ପଡ଼ିବ । ମୁଖ୍ୟମନ୍ତ୍ରୀ କହିଲେ ଯେ ଜଳସେଚନ ବିନା କୌଣସି ଉନ୍ନତି ସମ୍ଭବ ନୁହେଁ । ପଞ୍ଜାବ ଓ ହରିୟାନା ପ୍ରଭୃତି ରାଜ୍ୟର ଦୃଷ୍ଟାନ୍ତ ଦେଇ ସେ କହିଲେ ଯେ ଏହିସବୁ ରାଜ୍ୟରେ ଜଳସେଚନ ବ୍ୟବସ୍ଥାର ଦ୍ରୁତ ଉନ୍ନତି ଘଟିଛି । ଓଡ଼ିଶାରେ ଚାଷୋପଯୋଗୀ ୬୬ ଲକ୍ଷ ହେକ୍ଟର ଜମି ମଧ୍ୟରୁ ୫୯ ଲକ୍ଷ ହେକ୍ଟର ଜମିକୁ ଜଳସେଚନ ସୁବିଧା ଯୋଗାଇ ଦିଆଯାଇ ପାରିବ । ମାତ୍ର ଏ କ୍ଷେତ୍ରରେ ଅଗ୍ରଗତି ସାମାନ୍ୟ ମାତ୍ର ହୋଇପାରିଛି । ସ୍ୱାଧୀନତା ପୂର୍ବରୁ ଅଳ୍ପ ଜମିକୁ ଜଳସେଚନ ସୁବିଧା ମିଳିପାରିଥିଲା । ସ୍ୱାଧୀନତା ପରେ କିଛି ଅଗ୍ରଗତି ହୋଇପାରିଛି ଏବଂ ବର୍ତ୍ତମାନ ଏହା ଶତକଡ଼ା ୨୭ ଭାଗରେ ପହଞ୍ଚିପାରିଛି । ବର୍ତ୍ତମାନ ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ସେଚ ପ୍ରକଳ୍ପଗୁଡ଼ିକ ସଂପୂର୍ଣ୍ଣ ହେଲେ ୩୪ରୁ ୩୬ ଭାଗ ଜମିକୁ ଜଳ ଯୋଗାଣ ସମ୍ଭବ ହୋଇପାରିବ ବୋଲି ମୁଖ୍ୟମନ୍ତ୍ରୀ ସୂଚନା ଦେଇଥିଲେ । ରାଜ୍ୟର ସ୍ବାର୍ଥ ଦୃଷ୍ଟିରୁ ମହାନଦୀ ଜଳସେଚନ ବ୍ୟବସ୍ଥା ଏବଂ ଡେଲଟା ଜଳସେଚନ ବ୍ୟବସ୍ଥାକୁ ଶୀଘ୍ର ସଂପୂର୍ଣ୍ଣ କରିବା ସଙ୍ଗେସଙ୍ଗେ ହୀରାକୁଦ ଜଳସେଚନ ବ୍ୟବସ୍ଥାକୁ ଅଧିକ ସକ୍ଷମ କରିବାକୁ ପଡ଼ିବ । ଏସବୁ ପ୍ରକଳ୍ପ କାର୍ଯ୍ୟକାରୀ କରିବା ପାଇଁ ପ୍ରାୟ ୧୯୦୦ କୋଟି ଟଙ୍କା ଆବଶ୍ୟକ ପଡ଼ିବ ଏବଂ ଶୀଘ୍ର ଶେଷ ନହେଲେ ଏହା ଆହୁରି ବଢ଼ିଯିବାର ସମ୍ଭାବନା ଅଛି । ଏହି ପ୍ରକଳ୍ପଗୁଡ଼ିକୁ ଶୀଘ୍ର ସଂପୂର୍ଣ୍ଣ କରିବା ପାଇଁ ଅନ୍ୟାନ୍ୟ କ୍ଷେତ୍ରରେ ଟିକିଏ ମନ୍ଥର ଗତିରେ ଯିବାକୁ ହେଲେ ମଧ୍ୟ ଜଳସେଚନ ଉପରେ ଅଧିକ ଗୁରୁତ୍ୱ ଦେବାକୁ ପଡ଼ିବ । ସେ କହିଲେ ଯେ ଗୋଟିଏ ପ୍ରକଳ୍ପ କରିବାକୁ ହେଲେ ବହୁ ଆଗରୁ ମନ ସ୍ଥିର କରିବାକୁ ପଡ଼ିବ । ଆଜିଠାରୁ ମନ ସ୍ଥିର ନକଲେ, ସେ ପ୍ରକଳ୍ପ ସବୁ ସେମିତି ପଡ଼ି ରହିବ । ମଣିଭଦ୍ରା, ଇବ୍, ଲୋଅର ଇନ୍ଦ୍ର, ଲୋଅର ସୁକ୍ତେଲ ଏବଂ ଭୀମକୁଣ୍ଡ ପ୍ରକଳ୍ପଗୁଡ଼ିକୁ କାର୍ଯ୍ୟକାରୀ କରିବାକୁ ହେଲେ ଆଜିଠାରୁ ଚିନ୍ତା କରିବାକୁ ପଡ଼ିବ ଏହି ପ୍ରକଳ୍ପଗୁଡ଼ିକ କାର୍ଯ୍ୟକାରୀ ହେଲେ ଓଡ଼ିଶାର ପ୍ରାୟ ସମଗ୍ର ଅଞ୍ଚଳ ଜଳସେଚନ ସୁବିଧା ପାଇବ । ଏହାଛଡ଼ା କାନପୁର, ତୁରେଇ ଏବଂ ବାଘ ଇତ୍ୟାଦି ପ୍ରକଳ୍ପ ମଧ୍ୟ ରହିଛି । ଏ ସଂପର୍କରେ ଆଲୋଚନା ମାଧ୍ୟମରେ ମତ ବିନିମୟ ଭବିଷ୍ୟତ ଯୋଜନା ପାଇଁ ଏହି ପାଠଚକ୍ର ପଥ ପ୍ରଦର୍ଶକ ହେବ ବୋଲି ମୁଖ୍ୟମନ୍ତ୍ରୀ ଆଶା କରିଥିଲେ ।

ଜଳସେଚନ ଓ ବିଦ୍ୟୁତ ଏବଂ ସଂସଦୀୟ ବ୍ୟାପାର ମନ୍ତ୍ରୀ ସେକ୍ ମତଲୁବ୍ ଅଲ୍ଲୀ ଏଥିରେ ପୌରୋହିତ୍ୟ କରି ସଭ୍ୟମାନଙ୍କୁ ସ୍ବାଗତ ଜଣାଇ କହିଲେ ଯେ କେନ୍ଦ୍ର ଏବଂ ରାଜ୍ୟ ସରକାରଙ୍କ ଉଦ୍ୟମରେ ପ୍ରତିବର୍ଷ ଏପରି ଆଲୋଚନା କରାଯାଉଥାଏ । ଏଥିରେ ଲୋକପ୍ରତିନିଧି, ଇଂଜିନିୟର ଏବଂ ବିଶେଷଜ୍ଞମାନେ ଅଂଶ ଗ୍ରହଣ କରି ମତ ବିନିମୟ କରି ଜଳ ସଂପଦ ଏବଂ ଏହାର ବିନିଯୋଗ ତଥା ଏ ସଂପର୍କୀତ ସମସ୍ୟାର ସମାଧାନ ପାଇଁ ଉପାୟ ସ୍ଥିର କରିଥାଆନ୍ତି । ମନ୍ତ୍ରୀ କହିଲେ ଯେ ସପ୍ତମ ଯୋଜନାର ଶେଷ ଦୁଇବର୍ଷକୁ ଜଳସେଚନ ବର୍ଷ ରୂପେ ଘୋଷଣା କରାଯାଇଛି । ସେ କହିଲେ ଯେ ଆମ ରାଜ୍ୟରେ ଯେତିକି ଜମିକୁ ଜଳସେଚନ ସୁବିଧା ରହିଛି, ସେଥିମଧ୍ୟରୁ ଶତକଡ଼ା ୩୦ ଭାଗ ନଷ୍ଟ ହେଉଛି । ଏସବୁର ସମାଧାନ ଆବଶ୍ୟକ । ମହାନଦୀରେ ପ୍ରବାହିତ ଜଳର ଅଧିକାଂଶ ଭାଗ ସମୁଦ୍ରକୁ ବୋହିଯାଉଛି । ଏ ସଂପର୍କରେ ଆଲୋଚନା ପୂର୍ବକ ଯୋଜନା କରାଯିବା ଦରକାର । ମୁଖ୍ୟମନ୍ତ୍ରୀ ଏପରି ଆଲୋଚନା ଚକ୍ରର ଚିନ୍ତା ବହୁ ଆଗରୁ କରିଆସିଛନ୍ତି । ଏକବିଂଶ ଶତାବ୍ଦୀକୁ ରୂପ ପ୍ରଦାନ ପାଇଁ ପ୍ରଧାନମନ୍ତ୍ରୀ ଯେଉଁ ଆହ୍ୱାନ ଦେଇଛନ୍ତି, ତାହାକୁ ବାସ୍ତବ କରିବାକୁ ହେବ । ଜଳସେଚନ କ୍ଷେତ୍ରରେ ମଧ୍ୟ ଆମକୁ ଆଗେଇବାକୁ ହେବ । ଏ ଦୃଷ୍ଟିରୁ ସଭ୍ୟମାନେ ସୁଚିନ୍ତିତ ପରାମର୍ଶ ଦେବାକୁ ସେ ଆହ୍ୱାନ ଜଣାଇଥିଲେ ।

ସମ୍ମାନୀତ ଅତିଥି ଜଳସେଚନ ଏବଂ ସୂଚନା ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ ସଭ୍ୟମାନଙ୍କୁ ସ୍ବାଗତ ଜଣାଇ କହିଲେ ଯେ ରାଜ୍ୟରେ ଜଳସେଚନକୁ ବିଶେଷ ଗୁରୁତ୍ୱ ଦିଆଯାଉଛି । ମାତ୍ର ପ୍ରକଳ୍ପ ନିର୍ମାଣ କରିବାକୁ ହେଲେ ସୁପରିକଳ୍ପିତ ଯୋଜନା କରାଯିବା ଆବଶ୍ୟକ । ବାସଚ୍ୟୁତ ଲୋକମାନଙ୍କ ଥଇଥାନ ଏକ ସମସ୍ୟା । ଏ ସଂପର୍କରେ ବିଶଦ ଆଲୋଚନା କରାଯିବା ଦରକାର । ଭୂତଳ ଜଳ ସଂପଦର ବିନିଯୋଗ, ଲୁଣାଜଳକୁ ରୋକାଯିବା, ବନ୍ୟା ନିୟନ୍ତ୍ରଣ, ଶକ୍ତି ଉତ୍ପାଦନ ଏବଂ ଶକ୍ତି ସଞ୍ଚୟ ପ୍ରଭୃତି ବିଷୟକୁ ଆଖି ଆଗରେ ରଖି ଯୋଜନା କରିବାକୁ ହେବ । ଏ ସଂପର୍କରେ ଏଥିପୂର୍ବରୁ ଅନ୍ୟାନ୍ୟ ସ୍ଥାନମାନଙ୍କରେ

କେନ୍ଦ୍ରୀୟ ଜଳ କମିଶନ୍ ସଦସ୍ୟ, ଲୋକ ପ୍ରତିନିଧି, ବିଶେଷଜ୍ଞ ଏବଂ ଇଞ୍ଜିନିୟରମାନଙ୍କ ମଧ୍ୟରେ ଆଲୋଚନା ଅନୁଷ୍ଠିତ ହୋଇଛି । ପ୍ରକଳ୍ପ ନିର୍ମାଣ ବେଳେ କୃଷି ଅଞ୍ଚଳକୁ ଜାଣିଶୁଣି ବଢାଇବା ପାଇଁ କେବେ ଉଦ୍ୟମ ହୁଏନାହିଁ । ଏହାକୁ ଯଥାଶକ୍ତି କମ୍ କରିବା ପାଇଁ ଚେଷ୍ଟା କରାଯାଇଥାଏ ସେ କହିଲେ ଯେ ପ୍ରକଳ୍ପ ନିର୍ମାଣ ହେତୁ ବାଲିଚର ଏବଂ ସଂଯଣଟିକୁ କମାଇବା ପାଇଁ ଉପାୟ ଖୋଜିବାକୁ ହେବ । ଏପରି ଆଲୋଚନା ଏସବୁ ସମସ୍ୟା ସମାଧାନ ପାଇଁ ନିଶ୍ଚୟ ସହାୟ ହେବ ବୋଲି ଶ୍ରୀ ସିଂହ ଆଶା ପ୍ରକାଶ କରିଥିଲେ ।

ଏହି ସମ୍ମିଳନୀରେ ଯେଉଁ ଲୋକ ପ୍ରତିନିଧି ଓ ବିଶେଷଜ୍ଞମାନେ ଯୋଗ ଦେଇଥିଲେ, ସେମାନଙ୍କ ମଧ୍ୟରେ ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ହରିହର କରଣ, ଖଣି ଓ ଭୂତତ୍ତ୍ୱ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ମୋହନ ନାଗ, ଶିକ୍ଷା ଓ ଯୁବ କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ କୁମାରୀ ଫ୍ରିଡା ଟୋପ୍ନୋ, ଲୋକସଭା ସଦସ୍ୟ ଶ୍ରୀବଲ୍ଲଭ ପାଣିଗ୍ରାହୀ, ବିଧାୟକ ଡଃ ଶ୍ରୀଧର ସୂପକାର, ଶ୍ରୀ କୈଳାସ ଚନ୍ଦ୍ର ମହାପାତ୍ର, ଶ୍ରୀ ଭାଗବତ ବେହେରା, ଶ୍ରୀ ରାମକୃଷ୍ଣ ପଟ୍ଟନାୟକ, ଅବସରପ୍ରାପ୍ତ କେନ୍ଦ୍ର ଜଳ କମିଶନ୍ ଅଧ୍ୟକ୍ଷ ଆର. ଘୋଷ ପୂର୍ବତନ ମୁଖ୍ୟଯନ୍ତ୍ରୀ ସର୍ବଶ୍ରୀ ଏନ୍. କେ. ସାହୁ, ଆର. ଏନ୍. ଦାସ, ରୋହିଣୀ କୁମାର ସାହୁ, ବି . ଏନ୍. ତ୍ରିପାଠୀ, ଜନାର୍ଦ୍ଦନ ତ୍ରିପାଠୀ, ବୀରେନ୍ଦ୍ର ଚନ୍ଦ୍ର ପଟ୍ଟନାୟକ; ଏ. ବି. ଜେନା, ଦାମୋଦର ସାହୁ, ଏମ୍. ଏଲ୍. ଦାସ, ଉତ୍ତରପ୍ରଦେଶର ପୂର୍ବତନ ମୁଖ୍ୟଯନ୍ତ୍ରୀ ପ୍ରଫେସର ହରେକ୍ରିଷ୍ଣ, ଓ୍ବାଲ୍‌ମି ଡାଇରେକ୍ଟର ଡକ୍ଟର ବି.ପି. ଦାସ, ସେଣ୍ଟ୍ରାଲ ଓ୍ବାଟର କମିଶନ୍ ସଭ୍ୟ ଶ୍ରୀ ଆର. ଡି. ସାହା ଅନ୍ତର୍ଭୁକ୍ତ । ମୁଖ୍ୟ ଶାସନ ସଚିବ ଶ୍ରୀ ନଳିନୀକାନ୍ତ ପଣ୍ଡା ଏବଂ ଜଳସେଚନ ଓ ବିଦ୍ୟୁତ ବିଭାଗ ଶାସନ ସଚିବ ଶ୍ରୀ ଏସ୍. ଏ. ମୋଜେସ୍ ଆଲୋଚନା ବେଳେ ଉପସ୍ଥିତ ଥିଲେ ।

ଏହି ଆଲୋଚନା ଚକ୍ରରେ ଡଃ ବି. ପି. ଦାସ ଓ ଇଞ୍ଜିନିୟର ଆର. କେ. ଦାସଙ୍କ ଦ୍ୱାରା "ମହାନଦୀ ବେସିନ୍", ଇଞ୍ଜିନିୟର ବି. ନାୟକଙ୍କ ଦ୍ୱାରା ମଣିଭଦ୍ରା ପ୍ରକଳ୍ପ, ଇଞ୍ଜିନିୟର ଏ. ସି. ରାୟ ଓ ଡଃ ବି. ପଟ୍ଟନାୟକଙ୍କ ଦ୍ୱାରା ଇବ୍ ଓ ଅଙ୍ଗ ପ୍ରକଳ୍ପ, ଇଞ୍ଜିନିୟର ବି. ସେନାପତିଙ୍କ ଦ୍ୱାରା ଲୋଅର ସୁକ୍‌ତେଲ ଏବଂ ଲୋଅର ଇନ୍ଦ୍ରାବତୀ ପ୍ରକଳ୍ପ ଏବଂ ଇଞ୍ଜିନିୟର ବି. ଏସ୍. ଏନ. ମୂର୍ତ୍ତୀଙ୍କ ଦ୍ୱାରା ଭୀମକୁଣ୍ଡ ପ୍ରକଳ୍ପ ସଂପର୍କରେ ପ୍ରବନ୍ଧ ଉପସ୍ଥାପିତ କରାଯାଇଥିଲା । ଏହି ପ୍ରକଳ୍ପଗୁଡ଼ିକ କାର୍ଯ୍ୟକାରୀ ହେଲେ ବଲାଙ୍ଗୀର, କଳାହାଣ୍ଡି, ଓ ସମ୍ବଲପୁରର ଅଣ-ଜଳସେଚିତ ମରୁଡ଼ିଗ୍ରସ୍ତ ଅଞ୍ଚଳ ଉପକୃତ ହୋଇପାରିବ ।

ଏହି ଆଲୋଚନାରେ ବିଭିନ୍ନ ବିଶେଷଜ୍ଞ ତଥା ବ୍ୟକ୍ତି ବିଶେଷ ଅଂଶ ଗ୍ରହଣ କରି ସୁଚିନ୍ତିତ ପରାମର୍ଶ ଦେଇଥିବାରୁ ମୁଖ୍ୟମନ୍ତ୍ରୀ ସେମାନଙ୍କୁ ଧନ୍ୟବାଦ ଅର୍ପଣ କରିଥିଲେ ।

## ମରୁଡ଼ିଗ୍ରସ୍ତ ଅଞ୍ଚଳରେ ପାନୀୟ ଜଳ ଯୋଗାଣ

ମରୁଡ଼ିଗ୍ରସ୍ତ ଅଞ୍ଚଳଗୁଡ଼ିକୁ ପାନୀୟ ଜଳ ଯୋଗାଣ ନିମନ୍ତେ ୪କୋଟି ୨୮ ଲକ୍ଷ ଟଙ୍କା କେନ୍ଦ୍ରୀୟ ଅନୁଦାନ ମିଳିଛି । ଗ୍ରାମାଞ୍ଚଳରେ ନଳକୂପ ଖନନ ପାଇଁ ୩ କୋଟି ଟଙ୍କା ବ୍ୟବସ୍ଥା କରାଯାଇଛି । ଅଣ-ଚିହ୍ନିତ ଜଳାଭାବ ଥିବା ଗ୍ରାମଗୁଡ଼ିକରେ ୧୪୬୦ଟି ନଳକୂପ ବସାଇବା କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ସେଥିମଧ୍ୟରୁ ବାଲେଶ୍ୱର ଜିଲ୍ଲାରେ ୫୯ଟି, ବଲାଙ୍ଗୀରରେ ୧୧୩ଟି, କଟକରେ ୨୭୩ଟି ଢେଙ୍କାନାଳରେ ୨୦ଟି, ଗଞ୍ଜାମରେ ୧୪୭ଟି, କଳାହାଣ୍ଡିରେ ୧୯୦ଟି, କେନ୍ଦୁଝରରେ ୫ଟି, କୋରାପୁଟରେ ୨୯୮ଟି, ମୟୂରଭଞ୍ଜରେ ୯୦ଟି, ଫୁଲବାଣୀରେ ୬୯ଟି, ପୁରୀରେ ୧୧୮ଟି, ସମ୍ବଲପୁରରେ ୫୯ଟି ଓ ସୁନ୍ଦରଗଡ଼ ଜିଲ୍ଲା ଗ୍ରାମାଞ୍ଚଳରେ ୯ଟି ନଳକୂପ ଖନନ କାର୍ଯ୍ୟ ଅନ୍ତର୍ଭୁକ୍ତ ।

ସେହିପରି ସହରାଞ୍ଚଳ ପାନୀୟ ଜଳ ଯୋଗାଣ ନିମନ୍ତେ ରାଜ୍ୟ ସରକାର ୮୫ଲକ୍ଷ ଟଙ୍କା ମଞ୍ଜୁର କରିଛନ୍ତି । ଏଥିରେ ୩୨୫ଟି ନଳକୂପ, ୯ଟି ସିଷ୍ଟାନ ପ୍ରକାର ବୃହତ୍ ଗୋଲେଇ ବିଶିଷ୍ଟ ନଳକୂପ ଏବଂ ୧୦ଟି ବୃହତ୍ ଗୋଲେଇ ବିଶିଷ୍ଟ ଶକ୍ତିଚାଳିତ ନଳକୂପ ବସାଇବା ପାଇଁ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଏଥି ନିମନ୍ତେ ବିଭିନ୍ନ ସହରାଞ୍ଚଳକୁ ଯେଉଁ ପରିମାଣରେ ଅର୍ଥ ଦିଆଯାଇଛି, ତନ୍ମଧ୍ୟରେ ବାଲେଶ୍ୱର ଜିଲ୍ଲାକୁ ୨ଲକ୍ଷ ୮୦ହଜାର ଟଙ୍କା, ବଲାଙ୍ଗୀରକୁ ୬ଲକ୍ଷ ଟଙ୍କା, କଟକକୁ ୭ଲକ୍ଷ ୪୦ହଜାର ଟଙ୍କା, ଢେଙ୍କାନାଳକୁ ୨ଲକ୍ଷ ୮୦ହଜାର ଟଙ୍କା, ଗଞ୍ଜାମକୁ ୨୦ ଲକ୍ଷ ଟଙ୍କା, କଳାହାଣ୍ଡିକୁ ୧୩ ଲକ୍ଷ ୪୦ ହଜାର ଟଙ୍କା, କେନ୍ଦୁଝରକୁ ୧ଲକ୍ଷ ୮୦ହଜାର ଟଙ୍କା, କୋରାପୁଟକୁ ୭ଲକ୍ଷ ୬୦ହଜାର ଟଙ୍କା, ମୟୂରଭଞ୍ଜକୁ ୩ଲକ୍ଷ ୪୦ହଜାର ଟଙ୍କା, ଫୁଲବାଣୀକୁ ୪ ଲକ୍ଷ ୨୦ ହଜାର ଟଙ୍କା, ପୁରୀକୁ ୬ଲକ୍ଷ ୪୦ ହଜାର ଟଙ୍କା, ସମ୍ବଲପୁରକୁ ୭ଲକ୍ଷ ଟଙ୍କା ଓ ସୁନ୍ଦରଗଡ଼ ଜିଲ୍ଲାକୁ ୨ଲକ୍ଷ ୨୦ହଜାର ଟଙ୍କା ଅନ୍ତର୍ଭୁକ୍ତ ।

## ଗ୍ରାମାଞ୍ଚଳରେ ଅଗ୍ନି ନିରୋଧକ ଗୃହ ନିର୍ମାଣ ପାଇଁ ଋଣ

ରାଜ୍ୟ ସରକାରଙ୍କ ଗୃହ ନିର୍ମାଣ ଓ ନଗର ଉନ୍ନୟନ ବିଭାଗ ଦ୍ୱାରା କାର୍ଯ୍ୟକାରୀ ହେଉଥିବା ଗ୍ରାମ୍ୟ ଗୃହ ନିର୍ମାଣ ଯୋଜନାନୁଯାୟୀ ଗ୍ରାମାଞ୍ଚଳରେ ଗତ ଷଷ୍ଠ ଯୋଜନା କାଳ ମଧ୍ୟରେ ୧୫୮୫ଟି ଅଗ୍ନି ନିରୋଧକ ବାସଗୃହ ନିର୍ମାଣ କରାଯାଇଥିଲା । ଏ ବାବଦରେ ଇଚ୍ଛୁକ ବ୍ୟକ୍ତିମାନଙ୍କୁ ସମୁଦାୟ ୧ କୋଟି ୧୫ ଲକ୍ଷ ୪୯ ହଜାର ଟଙ୍କା ଋଣ ଦିଆଯାଇଥିଲା ।

ଚଳିତ ୭ମ ଯୋଜନା କାଳ ମଧ୍ୟରେ ୧ କୋଟି ୧୬ ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ସେପରି ୧୨୮୦ଟି ବାସଗୃହ ନିର୍ମାଣ ପାଇଁ କାର୍ଯ୍ୟକ୍ରମ ରହିଛି । ତନ୍ମଧ୍ୟରୁ ୧୯୮୫-୮୬ରେ ୩୨ଲକ୍ଷ ୧୧ ହଜାର ଟଙ୍କା ବ୍ୟୟରେ ୫୭୪ଟି ଅଗ୍ନି ନିରୋଧକ ଗୃହ ନିର୍ମାଣ କରାଯାଇଛି ।

୧୯୮୬-୮୭ ଆର୍ଥିକ ବର୍ଷଠାରୁ ଏହି ଯୋଜନା ରାଜ୍ୟ ଗୃହ ନିର୍ମାଣ ସଂସ୍ଥା ଓ ସମବାୟ ଗୃହ ନିର୍ମାଣ ସଂସ୍ଥା ଓ ସମବାୟ ଗୃହ ନିର୍ମାଣ ନିଗମ ଦ୍ୱାରା କାର୍ଯ୍ୟକାରୀ ହେଉଛି । ସେହିପରି ଉକ୍ତ ସଂସ୍ଥା ଓ ନିଗମକୁ ଋଣ ଆକାରରେ ଯଥାକ୍ରମେ ୧୭ ଲକ୍ଷ ୨ ହଜାର ଟଙ୍କା ଏବଂ ୯ଲକ୍ଷ ୮୭ହଜାର ଟଙ୍କା ଦିଆଯାଇଥିଲା । ଏହା ବ୍ୟତୀତ ଗତ ଆର୍ଥିକ ବର୍ଷରେ ଏ ବାବଦରେ ୩୮ଲକ୍ଷ ୩୦ ହଜାର ଟଙ୍କା ବ୍ୟୟ ବରାଦ କରାଯାଇଥିଲା।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଅଗ୍ନି ନିରୋଧକ ଗୃହ ନିର୍ମାଣ କରିବାକୁ ଇଚ୍ଛୁକ ଥିବା କୌଣସି ଗ୍ରାମବାସୀ ଯଦି ଗୃହ ନିର୍ମାଣ ପାଇଁ ସମୁଦାୟ ଖର୍ଚ୍ଚର ଶତକଡ଼ା ୨୦ ଭାଗ ବହନ କରିବାକୁ ପ୍ରସ୍ତୁତ ଥିବେ, ତେବେ ସେ ଋଣ ଆକାରରେ ୬୦୦୦ ଟଙ୍କା ପାଇପାରିବେ ।

## ମରୁଡ଼ି ଅଞ୍ଚଳରେ ଭୂତଳ ଜଳ ବିନିଯୋଗ ଲାଗି ଉଚ୍ଚସ୍ତରୀୟ ବୈଠକ

ରାଜ୍ୟ ସଚିବାଳୟରେ ମରୁଡ଼ି ଅଞ୍ଚଳରେ ଭୂତଳ ଜଳ ବିନିଯୋଗ କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ସଂକ୍ରାନ୍ତରେ ବିଶେଷଜ୍ଞ ଓ ପ୍ରଶାସକମାନଙ୍କର ଏକ ଉଚ୍ଚସ୍ତରୀୟ ବୈଠକ ଜଳସେଚନ ଓ ସୂଚନା ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହଙ୍କ ପୌରୋହିତ୍ୟରେ ଅନୁଷ୍ଠିତ ହୋଇଥିଲା । ବୈଠକରେ କଳାହାଣ୍ଡି ଜିଲ୍ଲା ଭଳି ରାଜ୍ୟର କ୍ରମାଗତ ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳଗୁଡ଼ିକରେ ଭୂତଳ ଜଳର ସ୍ତର ଓ ସ୍ଥିତି ପରିମାଣ ନିର୍ଣ୍ଣୟକରି କିପରି ଆଗାମୀ ଦୁଇବର୍ଷ ମଧ୍ୟରେ ଏହାର ବିନିଯୋଗ କରି ଅଧିକ ଜମିକୁ ଜଳ ଯୋଗାଇ ଦିଆଯାଇ ପାରିବ ସେ ସଂପର୍କରେ ପୁଙ୍ଖାନୁପୁଙ୍ଖ ଆଲୋଚନା ପରେ କେତେକ ନିଷ୍ପତ୍ତି ନିଆଯାଇଥିଲା । ଏହି ନିଷ୍ପତ୍ତି ମତେ ଏହିଭଳି ଅଞ୍ଚଳର ନାମମାତ୍ର ଚାଷୀମାନଙ୍କର ତାଲିକା ଆଗାମୀ ଅକ୍ଟୋବର ମାସ ସୁଦ୍ଧା ପ୍ରସ୍ତୁତ କରାଯିବ ।

ବିଭିନ୍ନ ବୈଜ୍ଞାନିକ ପ୍ରତିଷ୍ଠାନ ଦ୍ୱାରା ପ୍ରସ୍ତୁତ ଭୂତଳ ଜଳ ମାନଚିତ୍ର ଓ ତତ୍‌ସଂପର୍କୀୟ ବିବରଣୀ ସଂଗଠିତ କରି ବ୍ଲକ୍‌ଭିତ୍ତିକ ନୂତନ ଜଳ ମାନଚିତ୍ର ଉକ୍ତ ସମୟ ମଧ୍ୟରେ ପ୍ରସ୍ତୁତ କରାଯିବ । କେତେକ ନିର୍ଦ୍ଦିଷ୍ଟ ମରୁଡ଼ିଗ୍ରସ୍ତ ଅଞ୍ଚଳରେ ଚଳିତ ବର୍ଷ ମଧ୍ୟରେ ପରୀକ୍ଷାମୂଳକ ଭାବେ ଅନ୍ୟୁନ ୫ଟି ବୋର ଓ୍ବେଲ ସ୍ଥାପନ କରାଯିବ ।

ବୈଠକରେ ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ରମାକାନ୍ତ ରଥ, ଗୋଷ୍ଠୀ ଉନ୍ନୟନ ଶାସନ ସଚିବ ଶ୍ରୀ ନିହାର ରଞ୍ଜନ ହୋତା, ଉଠା-

ଜଳସେଚନ ପ୍ରଧାନ ଶ୍ରୀ ମଦନ ମୋହନ ମହାନ୍ତି, ଗୋଷ୍ଠୀ ଉନ୍ନୟନ ସ୍ୱତନ୍ତ୍ର ପ୍ରକଳ୍ପ ନିର୍ଦ୍ଦେଶକ ଶ୍ରୀ ଅଜିତ କୁମାର ତ୍ରିପାଠୀ, ନିର୍ଦ୍ଦେଶିକା କୁମାରୀ ରାଜଲକ୍ଷ୍ମୀ, ଜଳସେଚନ ଅତିରିକ୍ତ ଶାସନ ସଚିବ ଶ୍ରୀ ରମାନାଥ ମହାନ୍ତି, କେନ୍ଦ୍ରୀୟ ଭୂତଳ ଜଳ ବୋର୍ଡର ପ୍ରତିନିଧି ବୃନ୍ଦ, ଭୂ-ସର୍ବେକ୍ଷଣ ସଙ୍ଗଠନର ପ୍ରତିନିଧି ବୃନ୍ଦ, ଓଡ଼ିଶା ରିମୋଟ ସେନ୍‌ସିଂ ଆପ୍ଲିକେସନ ସେଣ୍ଟରର ପ୍ରତିନିଧି ବୃନ୍ଦ, ଜନସ୍ୱାସ୍ଥ୍ୟ ମୁଖ୍ୟଯନ୍ତ୍ରୀ ଏବଂ ଉଠା ଜଳସେଚନ ନିଗମର ବିଶେଷଜ୍ଞମାନେ ଯୋଗ ଦେଇ ଆଲୋଚନାରେ ଭାଗ ନେଇଥିଲେ ।

## କୋରାପୁଟ ଜିଲ୍ଲା ଦାରିଦ୍ର୍ୟ ଦୂରୀକରଣ ଯୋଜନା

ଗତ ଆର୍ଥିକ ବର୍ଷରେ କୋରାପୁଟ ଜିଲ୍ଲାରେ ସମନ୍ୱିତ ଗ୍ରାମ୍ୟ ବିକାଶ ଯୋଜନା ଦ୍ୱାରା ୨୪.୦୭୧ ଜଣଙ୍କୁ ନୂତନ ଭାବେ ସାହାଯ୍ୟ ଦିଆଯାଇଛି । ଏହି ଯୋଜନାରେ ପୂର୍ବରୁ ସାମିଲ ହୋଇଥିବା ୭୯୩୬ ଜଣଙ୍କୁ ଅତିରିକ୍ତ ସାହାଯ୍ୟ ଦିଆଯାଇ ପାରିଛି । ସେହିପରି ଜାତୀୟ କର୍ମ ନିଯୁକ୍ତିରେ ୪୦.୯୧ ଲକ୍ଷ ଓ ନିଯୁକ୍ତି ନିର୍ଭରତା ଯୋଜନାରେ ୨୨.୧୦ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯାଇ ଶ୍ରମିକମାନଙ୍କୁ ନିଯୁକ୍ତି ସୁବିଧା ଦିଆଯାଇଛି । ଏହି ବର୍ଷ ଜିଲ୍ଲାରେ ୧୩୨ଟି କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କରାଯାଇ ବେକାରୀମାନଙ୍କୁ କର୍ମ ସଂସ୍ଥାନ ଦିଆଯାଇଛି । ୨୩୯.୨୮ ଏକର ଉଦ୍ବୃତ୍ତ ଜମିକୁ ବାସହୀନଙ୍କ ମଧ୍ୟରେ ବଣ୍ଟନ କରାଯାଇଛି । ୧୦୨୫ ଜଣଙ୍କୁ ଗୋତିମୁକ୍ତ କରି ଥଇଥାନ ବ୍ୟବସ୍ଥା ଏବଂ ୮୫୨ଟି ଗ୍ରାମର ୨୭୦୭ ଜଣ ଲୋକଙ୍କୁ ପାନୀୟ ଜଳ ଯୋଗାଣ ବ୍ୟବସ୍ଥା କରାଯାଇଛି । ୪୨ଟି ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ସହିତ ୧୦୨ଟି ଉପ ସ୍ୱାସ୍ଥ୍ୟକେନ୍ଦ୍ର ଦ୍ୱାରା ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ କାର୍ଯ୍ୟକ୍ରମରେ ୪୮,୯୯୮ ଜଣଙ୍କୁ ଡି.ପି.ଟି., ୩୧,୦୫୫ ଜଣଙ୍କୁ ଡି.ଟି, ୩୮,୧୪୭ ଜଣଙ୍କୁ ଟିଟାନସ୍, ୩୧,୯୭୯ ଜଣଙ୍କୁ ପୋଲିଓ ଏବଂ ୨୪,୬୨୪ ଜଣଙ୍କୁ ବି.ସି.ଜି. ପ୍ରତିଷେଧକ ଟିକା ଦିଆଯାଇଛି । ଗତବର୍ଷ ୧୬,୦୮୭ ଜଣଙ୍କୁ ବନ୍ଧ୍ୟାକରଣ ଅସ୍ତ୍ରୋପଚାର କରାଯାଇଛି ତପସିଲଭୁକ୍ତ ଜାତି ଓ ଉପଜାତିଙ୍କୁ ନ୍ୟାୟ ପ୍ରଦାନ କ୍ଷେତ୍ରରେ ୧୮,୯୬୪ ଜଣ ହରିଜନ ଓ ୫୭,୫୧୫ ଜଣ ଆଦିବାସୀ ଉପକୃତ ହୋଇଛନ୍ତି । ୪୨୩୩ ଜଣଙ୍କୁ ଘରଡିହ ଯୋଗାଇ ଦିଆଯାଇଥିବା ବେଳେ ୧୩୫ ଜଣଙ୍କୁ ଗୃହ ନିର୍ମାଣ ସାମଗ୍ରୀ ଯୋଗାଇ ଦିଆଯାଇଛି । ସେହିପରି ଇନ୍ଦିରା ଆବାସ ଯୋଜନାରେ ୧୨୪୦ ଟି ଅନୁସୂଚୀତ ଜାତି ଓ ଉପଜାତିର ପରିବାର ଉପକୃତ ହୋଇଛନ୍ତି । ୫୭୧ଟି ବସ୍ତି ବାସିନ୍ଦାଙ୍କର ଉନ୍ନତି ବିଧାନ କରାଯାଇଛି । ୧୪୧.୦୫ ଲକ୍ଷ ହେକ୍ଟର ଜମିରେ ସାମାଜିକ ବନୀକରଣ କରାଯାଇଛି । ୧୬୮ଟି ଗ୍ରାମ ବିଦ୍ୟୁତ୍‌କରଣ କରାଯାଇଛି । ସେହିପରି ୯୫ଟି ପମ୍ପସେଟ୍, ୯୨୪ଟି ଧୂମ୍ରହୀନ ଚୁଲ୍ଲୀ ଏବଂ ୧୪୩ଟି ଗୋବର ଗ୍ୟାସ୍ ପ୍ଲାଣ୍ଟ ପ୍ରତିଷ୍ଠା କରାଯାଇଛି ।

## ସେଚକୂପ ଖନନ ଲାଗି ଜୀବନ ଧାରା ଯୋଜନା

ଦାରିଦ୍ର୍ୟ ସୀମାରେଖା ତଳେ ଥିବା ତଥା ସମନ୍ୱିତ ଗ୍ରାମ୍ୟ ବିକାଶ କାର୍ଯ୍ୟକ୍ରମ ତାଲିକାଭୁକ୍ତ ଆଦିବାସୀ ଓ ହରିଜନ ଶ୍ରେଣୀର କ୍ଷୁଦ୍ର ଓ ନାମମାତ୍ର କୃଷକଙ୍କ ପାଇଁ ମାଗଣାରେ ସେଚକୂପ ଖନନ ଲାଗି ଜୀବନଧାରା ନାମରେ ଏକ ଯୋଜନା ଅପ୍ରେଲ ପହିଲାଠାରୁ ପ୍ରବର୍ତ୍ତନ କରାଯାଇଛି । ଏହା ଦୁଇବର୍ଷ ପର୍ଯ୍ୟନ୍ତ ଲାଗୁ ରହିବ । ଏହା ଗ୍ରାମାଞ୍ଚଳ କର୍ମ ସଂସ୍ଥାନ ଓ ଗ୍ରାମାଞ୍ଚଳ ଭୂମିହୀନ ନିଯୁକ୍ତି ନିର୍ଭରତା ଯୋଜନା ମାଧ୍ୟମରେ କାର୍ଯ୍ୟକାରୀ ହେଉଛି । ହିତାଧିକାରୀମାନଙ୍କୁ ଏଥିପାଇଁ କୌଣସି ଋଣ ନେବା କିମ୍ବା ଖର୍ଚ୍ଚ ବହନ କରିବାକୁ ପଡ଼ିବ ନାହିଁ । ଏହି ଶ୍ରମ ଭିତ୍ତିକ କାର୍ଯ୍ୟକ୍ରମ ଉଭୟ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ମିଳିତ ଉଦ୍ୟମରେ କରାଯାଉଛି । ଏହି ଯୋଜନା ଦ୍ୱାରା ଦୁଇବର୍ଷ ମଧ୍ୟରେ ରାଜ୍ୟରେ ମୋଟ ୫୦ ହଜାର ସେଚକୂପ ଖନନ ଲାଗି ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

ଏପରି ପ୍ରତ୍ୟେକ ସେଚକୂପ ଦ୍ୱାରା ଅନ୍ୟୂନ ଅଢ଼େଇ ଏକର ଜମିରେ ଜଳସେଚନ ସୁବିଧା ରହିବା ଦରକାର ଏବଂ ଏହା ଉକ୍ତ କୃଷକଙ୍କର ନିଜସ୍ୱ ଜମି ହେବା ଉଚିତ୍ । ଉଣିକିଆ କୃଷକଙ୍କଠାରୁ କେତେକ କୃଷକ ମିଳିତ ଭାବେ କୂପ ଖନନ ଲାଗି ଅଗ୍ରାଧିକାର ପାଇବେ । ଏପରି କୃଷକମାନଙ୍କର ଏକାଠି ଥିବା ଜମିର ପରିମାଣ ଅଢ଼େଇ ଏକର କିମ୍ବା ତଦୂର୍ଦ୍ଧ୍ୱ ରହିବା ବାଞ୍ଛନୀୟ । ଏପରି ସ୍ଥଳେ, ଯେଉଁ କୃଷକଙ୍କ ଜମିରେ କୂପ ଖୋଳାଯିବ ସେ ଅନ୍ୟ ଅଂଶୀଦାରମାନଙ୍କୁ ଜଳସେଚନର ସୁବିଧା ଦେବା ପାଇଁ ରାଜି ହେବା ଦରକାର । କୂପ ଖନନ ପରେ ଏଥିପାଇଁ ରାଜସ୍ୱ ଦଲିଲରେ ମଧ୍ୟ ଲିପିବଦ୍ଧ କରାଯିବ ।

ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ପ୍ରକଳ୍ପ ନିର୍ଦ୍ଦେଶକ କାର୍ଯ୍ୟବାହୀ ସଂପାଦକ ଥାଇ ଗଠିତ ଏକ ସଂସ୍ଥା ଦ୍ୱାରା ଜୀବନଧାରା ଯୋଜନାର ପ୍ରକଳ୍ପଗୁଡ଼ିକ ଅନୁମୋଦନ କରାଯିବ । ଜିଲ୍ଲାପାଳଙ୍କ ସମେତ ନଳକୂପ ଓ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ନିର୍ବାହୀ ଯନ୍ତ୍ରୀ କିମ୍ବା ସମାଜ ମଙ୍ଗଳ ଅଧିକାରୀ ଓ ଲିଡ୍ ବ୍ୟାଙ୍କ୍ ଗୁଡ଼ିକର ପ୍ରତିନିଧିମାନେ ଏହି କମିଟିରେ ସଭ୍ୟ ରହିବେ ।

ଏହି ଯୋଜନାର ପରିସରଭୁକ୍ତ ହେବାକୁ ଇଚ୍ଛୁକ ବ୍ୟକ୍ତିମାନେ ନିଜନିଜ ଅଞ୍ଚଳର ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କ ନିକଟରେ ସାଧା କାଗଜରେ ଜମି ଜମା ବିବରଣୀ ସହ ଦରଖାସ୍ତ କରିବାକୁ ହେବ । ଏ ବିଷୟରେ ସେମାନେ ବି. ଡି. ଓ.ଙ୍କ କାର୍ଯ୍ୟାଳୟରୁ ସମସ୍ତ ବିବରଣୀ ପାଇପାରିବେ ।

## ଲବଣ ଉତ୍ପାଦନ ବୃଦ୍ଧି ପାଇଁ ଉଦ୍ୟମ

ଓଡ଼ିଶାର ଉପକୂଳବର୍ତ୍ତୀ ବାଲେଶ୍ୱର, କଟକ, ପୁରୀ ଓ ଗଞ୍ଜାମ ଜିଲ୍ଲାରେ ଲବଣ ଉତ୍ପାଦନ ବୃଦ୍ଧି ଓ ଲବଣ ଶିଳ୍ପର ବିକାଶ ପାଇଁ ଉଦ୍ୟମ କରାଯାଉଛି । ଏହି ଚାରୋଟି ଜିଲ୍ଲାରେ କେନ୍ଦ୍ର ସରକାରଙ୍କର ଲବଣ କମିଶନରଙ୍କ ନିୟନ୍ତ୍ରଣାଧୀନ ୬ ହଜାର ଏକର ଜମି ମଧ୍ୟରୁ ପ୍ରାୟ ୫ ହଜାର ଏକର ଘରୋଇ ଉଦ୍ୟୋଗକାରୀ ଏବଂ ଏକ ହଜାର ଏକର ସମବାୟ ସମିତିମାନଙ୍କୁ ଲବଣ ଉତ୍ପାଦନ ପାଇଁ ଲିଜ୍ ଦିଆ ଯାଇଛି । ଏହା ବ୍ୟତୀତ ରାଜ୍ୟ ସରକାର ସମବାୟ ସମିତିମାନଙ୍କୁ ୧୧୮୫ ଏକର ଲବଣ ଉତ୍ପାଦନକ୍ଷମ ଜମି ଲିଜ୍ ଦେଇଛନ୍ତି । ଆଉ ୪୮୨ ଏକର ଜମି ଲିଜ୍ ପାଇଁ ରାଜ୍ୟ ସରକାର ସମବାୟ ସମିତିମାନଙ୍କ ନିକଟରୁ ଦରଖାସ୍ତ ପାଇଛନ୍ତି ।

ମୁଖ୍ୟ ଶାସନ ସଚିବ ଶ୍ରୀ ନଳିନୀକାନ୍ତ ପଣ୍ଡାଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏକ ବୈଠକରେ ଲବଣ ଶିଳ୍ପର ବିକାଶ ସଂପର୍କରେ ଗୁରୁତ୍ୱପୂର୍ଣ୍ଣ ଆଲୋଚନା କରାଯାଇଥିଲା । ଲବଣ ଉତ୍ପାଦନକ୍ଷମ ଜମି ସଂପର୍କରେ ଉପଯୁକ୍ତ ସର୍ଭେ କରି ସଠିକ ତଥ୍ୟ ସଂଗ୍ରହ କରାଯିବା ସଙ୍ଗେ ସଙ୍ଗେ ବର୍ତ୍ତମାନ ଲିଜ୍ ଦିଆଯାଇଥିବା ଜମିର ଉପଯୁକ୍ତ ବିନିଯୋଗ ଓ ଶ୍ରମିକ ନିଯୁକ୍ତି ସଂପର୍କରେ ସମୀକ୍ଷା କରିବା ନିମନ୍ତେ ମୁଖ୍ୟ ଶାସନ ସଚିବ ପରାମର୍ଶ ଦେଇଥିଲେ । ଅଧିକ ଶ୍ରମିକ ନିଯୁକ୍ତି ଓ ଶ୍ରମିକମାନଙ୍କ ସ୍ୱାର୍ଥରକ୍ଷା ଦୃଷ୍ଟିରୁ ଘରୋଇ ଉଦ୍ୟୋଗକାରୀଙ୍କ ବଦଳରେ ସମବାୟ ସମିତିକୁ ଲବଣ ଉତ୍ପାଦନ କ୍ଷେତ୍ରରେ ଅଧିକ ସୁଯୋଗ ଦେବାର ଆବଶ୍ୟକତା ସଂପର୍କରେ ସହମତି ପ୍ରକାଶ ପାଇଥିଲା । କେନ୍ଦ୍ରୀୟ ଲବଣ କମିଶନରଙ୍କୁ ତାଙ୍କର ଅଧୀନରେ ଥିବା ୬ ହଜାର ଏକର ଜମି ଲବଣ ଉତ୍ପାଦନ ନିମନ୍ତେ ରାଜ୍ୟ ସରକାରଙ୍କୁ ଫେରାଇ ଦେବା ନିମନ୍ତେ ଅନୁରୋଧ କରାଯିବ ବୋଲି ସ୍ଥିର କରାଗଲା ।

ଓଡ଼ିଶାରେ ଉତ୍ପାଦିତ ହେଉଥିବା ଲବଣରେ ଅଧିକ ମାଟି ରହୁଥିବା ଦୃଷ୍ଟିରୁ ଏହାକୁ ପରିଷ୍କାର କରିବା ପାଇଁ ଉନ୍ନତ ପଦ୍ଧତି ଅବଲମ୍ବନ କରିବାର ଆବଶ୍ୟକତା ସଂପର୍କରେ ମଧ୍ୟ ଆଲୋଚନା କରାଯାଇଥିଲା । ଲବଣ ଉତ୍ପାଦନ ଓ ଶିଳ୍ପର ଉପଯୁକ୍ତ ବିକାଶ ଫଳରେ ବହୁ ଶ୍ରମିକ ଉପକୃତ ହୋଇପାରିବେ ବୋଲି ମୁଖ୍ୟ ଶାସନ ସଚିବ ମତ ଦେଇଥିଲେ ।

ଏହି ଆଲୋଚନାରେ ଶିଳ୍ପ ବିଭାଗ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର, ରାଜସ୍ୱ ବିଭାଗ ସଚିବ ଶ୍ରୀ ଭାସ୍କର ଚନ୍ଦ୍ର ପଟ୍ଟନାୟକ, ଶିଳ୍ପ ନିର୍ଦ୍ଦେଶକ ଶ୍ରୀ ପ୍ରିୟବ୍ରତ ପଟ୍ଟନାୟକ, ପୁରୀ ଜିଲ୍ଲାପାଳ ଶ୍ରୀ ସୁଦାମ ଚରଣ ପଟ୍ଟନାୟକ, ଗଞ୍ଜାମ ଜିଲ୍ଲାପାଳ ଶ୍ରୀ ରଂଗନାଥ ଜାମଦାରଙ୍କ ସମେତ ବହୁପଦସ୍ଥ ଅଧିକାରୀ ଯୋଗ ଦେଇଥିଲେ ।

## ପର୍ଯ୍ୟଟକଙ୍କ ପୁଅ ଛୁଟିଛି

ମୟୂରଭଞ୍ଜ ଜିଲ୍ଲାରେ ଥିବା ଦର୍ଶନୀୟ ସ୍ଥାନଗୁଡ଼ିକୁ ଦେଖିବା ପାଇଁ ଆସୁଥିବା ଉଭୟ ଆଭ୍ୟନ୍ତରୀଣ ଓ ବିଦେଶୀ ପର୍ଯ୍ୟଟକଙ୍କ ସଂଖ୍ୟା ବୃଦ୍ଧି ପାଉଥିବାର ଏକ ସମୀକ୍ଷାରୁ ଜଣାଯାଇଛି । ଗତ ୧୯୮୭-୮୮ ଆର୍ଥିକ

ବର୍ଷରେ ଜିଲ୍ଲାକୁ ମୋଟ ୨,୦୩,୭୮୦ ଜଣ ଆଭ୍ୟନ୍ତରୀଣ ଓ ୮୧ ଜଣ ବିଦେଶୀ ପର୍ଯ୍ୟଟକ ପରିଭ୍ରମଣରେ ଆସିଥିଲେ । ସେମାନେ ଜିଲ୍ଲାର ବୁଲି ମୁଖ୍ୟ ପର୍ଯ୍ୟଟନ ସ୍ଥଳୀ ଶିମିଳିପାଳ ଓ ଖିଚିଂକୁ ଆସିଥିବାର ଜଣାଯାଇଛି । ଏହି ସଂଖ୍ୟା କ୍ରମାଗତ ଭାବେ ବଢ଼ିବାରେ ଲାଗିଛି ଓ ଏହି ପର୍ଯ୍ୟଟନ ସ୍ଥଳୀଗୁଡ଼ିକ କ୍ରମେକ୍ରମେ ଦେଶୀ ଓ ବିଦେଶୀ ପର୍ଯ୍ୟଟକମାନଙ୍କ ଦ୍ୱାରା ଆଦୃତ ହେଉଥିବାର ଲକ୍ଷ୍ୟ କରାଯାଉଛି । ପର୍ଯ୍ୟଟକମାନଙ୍କ ବର୍ଦ୍ଧିତ ହାରକୁ ଦୃଷ୍ଟିରେ ରଖି ରାଜ୍ୟ ସରକାର ଜିଲ୍ଲାର ପର୍ଯ୍ୟଟନ ସ୍ଥଳୀଗୁଡ଼ିକର ବିକାଶ ଦିଗରେ ପଦକ୍ଷେପମାନ ଗ୍ରହଣ କରିଛନ୍ତି । ଶିମିଳିପାଳକୁ ଆସୁଥିବା ପର୍ଯ୍ୟଟକମାନଙ୍କ ପାଇଁ ଏକ ଫରେଷ୍ଟ ଲଜ୍ ଲୁଲୁଙ୍ଗଠାରେ ପ୍ରାୟ ସଂପୂର୍ଣ୍ଣ ହୋଇସାରିଲଣି । ଏଥିରେ ୪୦ ଜଣ ରହିପାରିବାର ବ୍ୟବସ୍ଥା ରହିଛି । ଏଠାରୁ ପର୍ଯ୍ୟଟକମାନଙ୍କୁ ଯାନ ଓ ହାତୀ ସାହାଯ୍ୟରେ ଜଙ୍ଗଲ ବୁଲାଇବାର ବନ୍ଦୋବସ୍ତ ମଧ୍ୟ କରାଯାଇଛି ।

ଏହା ବ୍ୟତୀତ ଯଶୀପୁରଠାରେ କେନ୍ଦ୍ର ସରକାରଙ୍କ ଦ୍ୱାରା ଏକ ଯୁବ ହଷ୍ଟେଲ ନିର୍ମାଣ କରାଯାଇଛି ଏବଂ ଏଠାରେ ପର୍ଯ୍ୟଟକମାନଙ୍କ ସହାୟତା ପାଇଁ ଗୋଟିଏ ପର୍ଯ୍ୟଟନ କାଉଣ୍ଟର ଶୀଘ୍ର ଖୋଲିବା ପାଇଁ ସରକାର ଲକ୍ଷ୍ୟ ରଖିଛନ୍ତି । ଡାଙ୍ଗାଡ଼ି ପୋଷିଠାରେ ଥିବା ପର୍ଯ୍ୟଟକ ପାନ୍ଥଶାଳାର ସଂପ୍ରସାରଣ ଓ ବହୁ ଉନ୍ନତିକର କାର୍ଯ୍ୟ ସରକାର ହାତକୁ ନେଇଛନ୍ତି ।

## ଆଇ. ଆର. ଡି. ରେ କୋଟି କୋଟି

ଗତ ଆର୍ଥିକ ବର୍ଷରେ ଫେବୃୟାରୀ ସୁଦ୍ଧା ଆଇ. ଆର. ଡି. କାର୍ଯ୍ୟକ୍ରମ ଦ୍ୱାରା ମୋଟ ୨୬ କୋଟି ୪୭ ଲକ୍ଷ ୯୬ ହଜାର ଟଙ୍କା ବ୍ୟୟ ହୋଇଛି । ତନ୍ମଧ୍ୟରୁ ଉପଭୋକ୍ତାମାନଙ୍କୁ ସବ୍‌ସିଡ୍ ବାବଦରେ ୧୮ କୋଟି ୭୬ ଲକ୍ଷ ୯୬ ହଜାର ଟଙ୍କା ବ୍ୟୟ କରାଯାଇଛି । ଅନ୍ୟାନ୍ୟ ଖର୍ଚ୍ଚଗୁଡ଼ିକ ମଧ୍ୟରୁ ଆତ୍ମ ନିଯୁକ୍ତି କାର୍ଯ୍ୟକ୍ରମରେ ୨ କୋଟି ୨୯ ଲକ୍ଷ ୮୧ ହଜାର ଟଙ୍କା, ଭିତ୍ତିଭୂମି ଲାଗି ୫୪ ଲକ୍ଷ ୫୭ ହଜାର ଟଙ୍କା, ତାଲିମ ବାବଦରେ ୧୦ ଲକ୍ଷ ୩୧ ହଜାର ଟଙ୍କା, ସର୍ଭେ ପାଇଁ ୨ ଲକ୍ଷ ୭୨ ହଜାର ଟଙ୍କା, ଡି: ଆର.: ଡି: ଏ: ଅଫିସ୍ ପରିଚାଳନା ବାବଦରେ ୧ କୋଟି ୭୧ ଲକ୍ଷ ୯୫ ହଜାର ଟଙ୍କା ଓ ଆନୁଷଙ୍ଗିକ ଖର୍ଚ୍ଚ ବାବଦରେ ୩ କୋଟି ୧ ଲକ୍ଷ ୬୩ ହଜାର ଟଙ୍କା ବ୍ୟୟ ହୋଇଛି । ଏହି ସମୟ ମଧ୍ୟରେ ହିତାଧିକାରୀମାନଙ୍କୁ ସମବାୟ ଓ ବ୍ୟବସାୟିକ ବ୍ୟାଙ୍କଗୁଡ଼ିକରୁ ମୋଟ ୨୮ କୋଟି ୭୭ ଲକ୍ଷ ୬୮ ହଜାର ଟଙ୍କା ଋଣ ଯୋଗାଇ ଦିଆଯାଇଛି ।

ଉକ୍ତ ସମୟ ମଧ୍ୟରେ ଏହି ଯୋଜନା ଦ୍ୱାରା ମୋଟ ୧ ଲକ୍ଷ ୮୫ ହଜାର ୮୦ ଜଣ ଉପକୃତ ହୋଇଛନ୍ତି । ଏମାନଙ୍କ ମଧ୍ୟରେ ୪୩ ହଜାର ୪୪ ଜଣ ତଫସିଲଭୁକ୍ତ ଜାତି ଓ ୪୭ ହଜାର ୪୮୭ ଜଣ ତଫସିଲଭୁକ୍ତ ସଂପ୍ରଦାୟର ଲୋକ ଅନ୍ତର୍ଭୁକ୍ତ । ଏହି ଉପଭୋକ୍ତାମାନଙ୍କ ମଧ୍ୟରେ ୨୫ ହଜାର ୫୭୮ ଜଣ ମହିଳା ଅନ୍ତର୍ଭୁକ୍ତ ।

## ଅଗ୍ରାଧିକାର କାର୍ଯ୍ୟକ୍ରମ ପାଇଁ ଋଣ ଲଗାଣ

କୃଷି ଓ କୃଷିଭିତ୍ତିକ କାର୍ଯ୍ୟ, କ୍ଷୁଦ୍ର ଶିଳ୍ପ ଏବଂ କ୍ଷୁଦ୍ର ବ୍ୟବସାୟ ଇତ୍ୟାଦି ଅଗ୍ରାଧିକାର ପାଉଥିବା କାର୍ଯ୍ୟକ୍ରମଗୁଡ଼ିକ ନିମନ୍ତେ ଗତବର୍ଷ (୧୯୮୭) ରାଜ୍ୟର ୮ ଲକ୍ଷ ୮୦ ହଜାର ୨୦୨ ଜଣ ବ୍ୟକ୍ତିଙ୍କୁ ସର୍ବମୋଟ ୩୦୩ କୋଟି ୭୦ ଲକ୍ଷ ଟଙ୍କା ଆନୁଷ୍ଠାନିକ ଋଣ ଯୋଗାଇ ଦିଆଯାଇଛି । ତନ୍ମଧ୍ୟରେ ୧୪୧ କୋଟି ୨୮ ଲକ୍ଷ ଟଙ୍କା କୃଷିଋଣ ଓ ୧୬୧ କୋଟି ୯୭ ଲକ୍ଷ ଟଙ୍କା କ୍ଷୁଦ୍ର ବ୍ୟବସାୟ ଋଣ ଅନ୍ତର୍ଭୁକ୍ତ ।

କୃଷିଋଣ ବାବଦରେ ଦିଆଯାଇଥିବା ଅର୍ଥରୁ ଶସ୍ୟ ଋଣ ପାଇଁ ୪ ଲକ୍ଷ ୩୦ ହଜାର ୭୩ ଜଣ ବ୍ୟକ୍ତିଙ୍କୁ ୮୭ କୋଟି ୩୭ ଲକ୍ଷ ଟଙ୍କା, ମିଆଦୀ ଋଣ ନିମନ୍ତେ ୭୪,୩୯୧ ଜଣ ବ୍ୟକ୍ତିଙ୍କୁ ୩୨ କୋଟି ୬୬ ଲକ୍ଷ ଟଙ୍କା ଓ କୃଷି ସଂପର୍କୀୟ ଅନ୍ୟାନ୍ୟ ଋଣ ବାବଦରେ ୭୩,୭୪୦ ଜଣ ବ୍ୟକ୍ତିଙ୍କୁ ୨୧ କୋଟି ୨୪ ଲକ୍ଷ ଟଙ୍କା ଦିଆଯାଇଛି ।

ସେହିପରି କ୍ଷୁଦ୍ର ଶିଳ୍ପ, କ୍ଷୁଦ୍ର ବ୍ୟବସାୟ ପ୍ରଭୃତି କାର୍ଯ୍ୟକ୍ରମ ପାଇଁ ପ୍ରଦାନ କରାଯାଇଥିବା ଋଣ ମଧ୍ୟରୁ କେବଳ କ୍ଷୁଦ୍ର ଶିଳ୍ପପାଇଁ ୪୯,୮୦୨ ଜଣ ବ୍ୟକ୍ତିଙ୍କୁ ୬୮ କୋଟି ୮୪ ଲକ୍ଷ ଟଙ୍କା ଓ କ୍ଷୁଦ୍ର ବ୍ୟବସାୟ ପ୍ରଭୃତି ଅନ୍ୟାନ୍ୟ କାର୍ଯ୍ୟକ୍ରମ ପାଇଁ ୨ ଲକ୍ଷ ୫୨ ହଜାର ୧୯୬ ଜଣ ବ୍ୟକ୍ତିଙ୍କୁ ୯୩ କୋଟି ୮ ଲକ୍ଷ ଟଙ୍କା ଋଣ ଦିଆଯାଇଛି ।

ପ୍ରକାଶ ଥାଉକି, ଉପରୋକ୍ତ କାର୍ଯ୍ୟକ୍ରମରେ ୧୯୮୬ ମସିହାରେ ୭ ଲକ୍ଷ ୮୨ ହଜାର ୯୭୩ ଜଣ ବ୍ୟକ୍ତିଙ୍କୁ ୨୩୮ କୋଟି ୮୬ ଲକ୍ଷ ଟଙ୍କା ଅଗ୍ରାଧିକାର ଭିତ୍ତିରେ ଆନୁଷ୍ଠାନିକ ଋଣ ପ୍ରଦାନ କରାଯାଇଥିଲା ।

## ଶହ ଶହ ବାୟୋଗ୍ୟାସ ପ୍ଲାଣ୍ଟ

ଗୋବର ଗ୍ୟାସ ପ୍ଲାଣ୍ଟ ବସାଇବା ପାଇଁ ଲୋକମାନଙ୍କର ବିଶେଷ ଆଗ୍ରହ ଦେଖାଦେଇଛି । ଚଳିତ ଆର୍ଥିକ ବର୍ଷର ପ୍ରଥମ ମାସରେ ରାଜ୍ୟରେ ମୋଟ ୧୬୮୬ଟି ବାୟୋଗ୍ୟାସ ପ୍ଲାଣ୍ଟ ପ୍ରତିଷ୍ଠା କରାଯାଇଛି । ଏ ବର୍ଷ ରାଜ୍ୟରେ ୪୦୦୦ଟି ଏପରି ପ୍ଲାଣ୍ଟ ବସାଇବାକୁ ଲକ୍ଷ୍ୟ ରଖାଯାଇଛି । ଗତ ଆର୍ଥିକ ବର୍ଷରେ ମଧ୍ୟ ଓଡ଼ିଶା ଏ କ୍ଷେତ୍ରରେ ଧାର୍ଯ୍ୟ ଲକ୍ଷ୍ୟର ଦୁଇ-ଗୁଣରୁ ଅଧିକ ସଫଳତା ହାସଲ କରିପାରିଥିଲା । ଏହି ମାସରେ ଗଞ୍ଜାମ ଜିଲ୍ଲାରେ ସର୍ବାଧିକ ୩୨୦ଟି ପ୍ଲାଣ୍ଟ ନିର୍ମାଣ କରାଯାଇଥିବା ବେଳେ ତା'ପଛକୁ କଳାହାଣ୍ଡି ଜିଲ୍ଲାରେ ୨୯୦ଟି ଓ କଟକ ଜିଲ୍ଲାରେ ୨୪୦ଟି ପ୍ଲାଣ୍ଟ ବସିଛି ।

ସେହିପରି ସମଗ୍ର ରାଜ୍ୟରେ ୟୁରୋଟି ପବନ କଳ ବସିଛି । ଏବଂ ପ୍ରତ୍ୟେକରେ ଦୈନିକ ୧୦୦୦ ଲିଟର ପାଣି ଗରମ ହୋଇପାରିବା ଭଳି ୧୨ଟି ସୌରତାପରେ ଜଳ ଗରମ ବ୍ୟବସ୍ଥା କରାଯାଇଛି ।

## ଭାରତୀୟ ଆୟୁର୍ବେଦ ଚିକିତ୍ସା ବିଜ୍ଞାନର ମହତ୍ତ୍ୱ ଅନସ୍ୱୀକାର୍ଯ୍ୟ

—ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ

ଭାରତୀୟ ଆୟୁର୍ବେଦର ଚିକିତ୍ସା ବିଜ୍ଞାନ ତା'ର ମହତ୍ୱପୂର୍ଣ୍ଣ ସ୍ଥାନ ସବୁବେଳେ ଅଧିକାର କରିବ ବୋଲି ଭୁବନେଶ୍ୱରଠାରେ ଆୟୋଜିତ ଦ ଇଣ୍ଡିଆ ଆୟୁର୍ବେଦିକ ଫିଜିସିଆନ୍‌ସ ଆସୋସିଏସନର ବାର୍ଷିକ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ କହିଛନ୍ତି ।

ଏହି ସମ୍ମିଳନୀର ଉଦ୍‌ଯାପନ ଦିବସରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଶ୍ରୀ ପଟ୍ଟନାୟକକହିଲେ ଯେ ଭାରତବର୍ଷରେ ଏହି ଚିକିତ୍ସା ବିଜ୍ଞାନ ପୃଥିବୀର ସମସ୍ତଙ୍କୁ ଚିକିତ୍ସା ବିଜ୍ଞାନର ସୂତ୍ର ପ୍ରଦାନ କରିଛି । ଆଧୁନିକ ଏଲୋପାଥିକ୍ ଚିକିତ୍ସା କ୍ଷେତ୍ରରେ ଯାହା ସତ୍ୟ କରାଯାଇଛି, ତାହା ବେଦରେ ରହିଛି । ବୁଦ୍ଧଙ୍କ ଚିକିତ୍ସକ 'ଜୀବକ'ଙ୍କ ବିଷୟରେ ଯେଉଁ କଥା ଶୁଣାଯାଏ, ସେଥିରୁ ଏହାର ପ୍ରମାଣ ମିଳୁଛି । କେବଳ ଯେ ଭାରତ ଚିକିତ୍ସା ବିଜ୍ଞାନରେ ପ୍ରତିଷ୍ଠା ଲାଭ କରିଥିଲା ତା' ନୁହେଁ, କୃଷି, ବିଜ୍ଞାନ ଶାସ୍ତ୍ର, ଅଙ୍କଶାସ୍ତ୍ର ଏବଂ ମହାକାଶ ବିଜ୍ଞାନରେ ମଧ୍ୟ ପ୍ରତିଷ୍ଠା ଲାଭ କରିଥିଲା ଓ ଭାରତ ବିଶ୍ୱର ଶିକ୍ଷକ ରୂପେ ପରିଗଣିତ ହେଉଥିଲା । ମାତ୍ର ଗୋଟିଏ ସମୟରେ ସେହି ଗବେଷଣାରେ ଭଟ୍ଟା ପଡ଼ିଯାଇଥିଲା ଏବଂ ସେ ସମୟରେ ଗବେଷଣାକୁ ପ୍ରୋତ୍ସାହନ ମିଳି ନଥିଲା । ମୁଖ୍ୟମନ୍ତ୍ରୀ କହିଲେ ଯେ ଡାକ୍ତରୀ ଚିକିତ୍ସାର ପ୍ରଭାବ ବେଶୀ ଥିବା ବେଳେ ଆୟୁର୍ବେଦକୁ ପୁଣି ତା'ର ଉପଯୁକ୍ତ ସ୍ଥାନ ଦେବା ପାଇଁ ସମୟ ଆସିଛି । ଅଳିଭ ଲୋକପ୍ରିୟ ସରକାର ଆୟୁର୍ବେଦକୁ ଅବଜ୍ଞା କରିବାର ପ୍ରଶ୍ନ ଉଠୁନାହିଁ । ଅନ୍ୟ ପକ୍ଷରେ ଏହାକୁ ଉଚ୍ଚ ସମ୍ମାନ ଦିଆଯାଇଛି । ଆୟୁର୍ବେଦ ଚିକିତ୍ସକମାନଙ୍କ ଦାବୀ ସଂପର୍କରେ ମୁଖ୍ୟମନ୍ତ୍ରୀ କହିଲେ ଯେ ଆୟୁର୍ବେଦ କଲେଜ ସଂପର୍କରେ ଡାକ୍ତର ଭଗବାନ ଦାସଙ୍କ ନେତୃତ୍ୱରେ ଗଠିତ କମିଟି ଯେଉଁ ରିପୋର୍ଟ ଦେଇଛନ୍ତି, ତାହା କାର୍ଯ୍ୟକାରୀ କରିବାକୁ ନିର୍ଦ୍ଦେଶ ଦିଆଯାଇଛି । ସେ କହିଲେ ଯେ ସମସ୍ତଙ୍କୁ ଚିକିତ୍ସା ସୁବିଧା ଯୋଗାଇ ଦେବା ଏକ ସାମ୍ବିଧାନିକ ଅଧିକାର । ଏହା

କେବଳ ଯେ ଏଲୋପାଥିକ୍ ମାଧ୍ୟମରେ କରାଯିବ ତା 'ନୁହେଁ, ସବୁ ଚିକିତ୍ସା ହେବା ଦରକାର । ଆୟୁର୍ବେଦ ଚିକିତ୍ସକମାନଙ୍କ କଲ୍ୟାଣ ଏବଂ ଜନସାଧାରଣଙ୍କ କଲ୍ୟାଣ ଦୃଷ୍ଟିରୁ ଆବଶ୍ୟକ ଦାବୀ ପ୍ରତି ସରକାରଙ୍କର ପୂର୍ଣ ସହାନୁଭୂତି ଅଛି । ନିଜ ମାଟିରୁ ଏବଂ ଜଳବାୟୁରୁ ସମ୍ଭୂତ ଆୟୁର୍ବେଦ ଚିକିତ୍ସାର କିପରି ବିକାଶ ଘଟିବ, ସେଥିପାଇଁ ଚିକିତ୍ସକମାନେ ଚେଷ୍ଟା କରିବାକୁ ମୁଖ୍ୟମନ୍ତ୍ରୀ ଆହ୍ୱାନ ଜଣାଇଥିଲେ । ପୂର୍ବରୁ ଏ ଉପଲକ୍ଷେ ପ୍ରକାଶିତ ଏକ ସ୍ମରଣିକା ମୁଖ୍ୟମନ୍ତ୍ରୀ ଉନ୍ମୋଚନ କରିଥିଲେ ।

ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକ ସମ୍ମାନିତ ଅତିଥି ଭାବେ ଯୋଗ ଦେଇ କହିଲେ ଯେ ସୁଦୂର ଅତୀତରୁ ଏ ପର୍ଯ୍ୟନ୍ତ ବେଦ ହେଉଛି ଚିକିତ୍ସା ପ୍ରଣାଳୀର ଉତ୍ସ । ଇଂରେଜ ଶାସନ ଅମଳରେ ଏହି ଚିକିତ୍ସା ପ୍ରଣାଳୀର ଅବନତି ଦେଖାଦେଇଥିଲେ ମଧ୍ୟ ସ୍ୱାଧୀନତା ପରଠାରୁ ଏହା ଉପରେ ଗୁରୁତ୍ୱ ଆରୋପ କରାଯାଉଛି । ଏହା ସମସ୍ତଙ୍କୁ ଜଣା । ସପ୍ତମ ଯୋଜନା କାଳରେ ୧୨୬ଟି ଆୟୁର୍ବେଦ ଚିକିତ୍ସାନୁଷ୍ଠାନ ଖୋଲିବା ପାଇଁ ସରକାର ସ୍ଥିର କରିଛନ୍ତି ବୋଲି ସ୍ୱାସ୍ଥ୍ୟ ମନ୍ତ୍ରୀ ପ୍ରକାଶ କରିଥିଲେ । ସେମାନଙ୍କ ଦାବୀ ସଂପର୍କରେ ସୂଚନା ଦେଇ ମନ୍ତ୍ରୀ କହିଲେ ଯେ ସମସ୍ତଙ୍କୁ ଆସ୍ଥା ଆଗରେ ରଖି ଆୟୁର୍ବେଦ ଚିକିତ୍ସାର ପ୍ରସାର ପାଇଁ ନିଷ୍ପତ୍ତି କରାଯିବ । ଏଥି ସଙ୍ଗେସଙ୍ଗେ ଆୟୁର୍ବେଦ ଚିକିତ୍ସକମାନେ ମଧ୍ୟ ଜନସାଧାରଣଙ୍କ ବିଶ୍ୱାସ ଭାଜନ ହେବେ ବୋଲି ସେ ଆଶା ପ୍ରକାଶ କରିଥିଲେ ।

ସୂଚନା ଓ ଲୋକ ସଂପର୍କ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ ସମ୍ମାନିତ ଅତିଥି ଭାବେ ଯୋଗ ଦେଇ କହିଲେ ଯେ ଦୁଇଦିନର ଆଲୋଚନା ଭିତରେ ଆୟୁର୍ବେଦ ଚିକିତ୍ସା ପଦ୍ଧତି କିପରି ଜୀବନ୍ତ ଥିଲା ଏବଂ ବହୁ ଘାତ ପ୍ରତିଘାତର ସମ୍ମୁଖୀନ ହେଲା, ସେ ସଂପର୍କରେ ନିଶ୍ଚୟ ଆଲୋଚନା କରାଯାଇଥିବ । ଏସବୁ ସତ୍ତ୍ୱେ, ଆୟୁର୍ବେଦ ଚିକିତ୍ସା ପଦ୍ଧତି ଲୋକଙ୍କ ପାଖରେ ପହଞ୍ଚାଇବାକୁ ହେବ ଏବଂ ସେମାନଙ୍କ ବିଶ୍ୱାସଭାଜନ ହେବାକୁ ପଡିବ । ଏହା ଏକ ସଂକଳ୍ପ ଓ ସମାଧାନ କାର୍ଯ୍ୟକ୍ରମ । ଦେଶକୁ ଏକବିଂଶ ଶତାବ୍ଦୀରେ ପହଞ୍ଚାଇବା ପାଇଁ ଯୁବ ପ୍ରଧାନ ମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ ଯେଉଁ ଆହ୍ୱାନ ଦେଇଛନ୍ତି, ତାହା ସଫଳ କରିବାକୁ ହେବ । ଏଥିପାଇଁ ସେମାନେ ଆତ୍ମ ବିଶ୍ୱାସର ସହିତ ଆଗେଇବାକୁ ପଡ଼ିବ । ଆମର ପ୍ରିୟ ମୁଖ୍ୟମନ୍ତ୍ରୀ ଜଣେ ଆଶାବାଦୀ ବ୍ୟକ୍ତି । ଆୟୁର୍ବେଦ ଚିକିତ୍ସା ପଦ୍ଧତିର ବିକାଶ ପାଇଁ ମୁଖ୍ୟମନ୍ତ୍ରୀ ଏବଂ ସ୍ୱାସ୍ଥ୍ୟ ମନ୍ତ୍ରୀ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ତେଣୁ ଏଥିରେ ସଫଳ ନିଶ୍ଚିତ ବୋଲି ଶ୍ରୀ ସିଂହ ପ୍ରକାଶ କରିଥିଲେ ।

ବିଶିଷ୍ଟ ଆୟୁର୍ବେଦ ଚିକିତ୍ସକ ଡକ୍ଟର ଭଗବାନ ଦାସ ଆୟୁର୍ବେଦ ଚିକିତ୍ସା ପଦ୍ଧତି ସଂପର୍କରେ ସୂଚନା ଦେଇ କହିଲେ ଯେ ଏହି ଚିକିତ୍ସା ପ୍ରଣାଳି ତିବ୍ବତ, ମାଙ୍ଗୋଲିଆ, ବର୍ମା, ଚୀନ, ପ୍ରଭୃତି ଦେଶରେ ଏବେ ମଧ୍ୟ ପ୍ରସିଦ୍ଧି ଲାଭ କରିଛି ଏବଂ ଏହାର ପ୍ରସାର ଘଟୁଛି । ମୁଖ୍ୟମନ୍ତ୍ରୀଙ୍କ ପ୍ରୋତ୍ସାହନ କ୍ରମେ ଓଡ଼ିଶାରେ ରାଜଧାନୀ ଭୁବନେଶ୍ୱରଠାରେ ଏପରି ଏକ ଅନୁଷ୍ଠାନ ଖୋଲାଯାଇଥିବାରୁ ସେ ମୁଖ୍ୟମନ୍ତ୍ରୀଙ୍କର ଭୂୟସୀ ପ୍ରଶଂସା କରିଥିଲେ ।

ଅନ୍ୟମାନଙ୍କ ମଧ୍ୟରେ ଡାକ୍ତର ସୁବ୍ରତ ଚନ୍ଦ୍ର ମିଶ୍ର, ଉପଦେଷ୍ଟା ଭାବେ ଶ୍ରୀ ବିପିନ୍ ଦାସ, ଅସୋସିଏସନ୍‌ର ସଭାପତି ଡାକ୍ତର ସତ୍ୟେନ୍ଦ୍ର ପଣ୍ଡା ପ୍ରମୁଖ ଭାଷଣ ଦେଇଥିଲେ ।

## ସଂପୂର୍ଣ୍ଣ ଜଳ ଅମଳ ପ୍ରକଳ୍ପ

ବଲାଙ୍ଗୀର ଜିଲ୍ଲାରେ ହାତକୁ ନିଆଯାଇଥିବା ୧୩୫୮ଟି ଜଳ ଅମଳ ପ୍ରକଳ୍ପ ମଧ୍ୟରୁ ୧୦୩୫ଟିର ନିର୍ମାଣ ସଂପୂର୍ଣ ହେବା ଫଳରେ ଅବଶିଷ୍ଟ ୩୨୩ଟି ସଂପୂର୍ଣ କରିବାକୁ ଉଦ୍ୟମ ଚାଲିଛି । ଗତ ମଇ ୫ ତାରିଖରେ ଜିଲ୍ଲା ପ୍ରାକୃତିକ ବିପର୍ଯ୍ୟୟ କମିଟି ବୈଠକରେ ସମୀକ୍ଷା ବେଳେ ଏହା ଜଣାପଡ଼ିଛି । ଅତୀତ ମଧ୍ୟ ବିଗତ ୧୯୮୨, ୧୯୮୫ ଓ ୧୯୮୬ ବର୍ଷଗୁଡ଼ିକରେ ଜିଲ୍ଲା ମଧ୍ୟରେ ପ୍ରବାହିତ ବିଭିନ୍ନ ନଦୀରେ ବନ୍ୟାଜଳ ଆସିବା ଫଳରେ ଯେଉଁ ଅସ୍ୱାଭାବିକ ପରିସ୍ଥିତି ଦେଖାଦେଇଥିଲା, ସେହିପରି ସମ୍ଭାବ୍ୟ ବନ୍ୟାର ସମ୍ମୁଖୀନ ପାଇଁ ପ୍ରସ୍ତୁତ ହୋଇ ରହିବାକୁ ବୈଠକରେ ମତ ପ୍ରକାଶ ପାଇଥିଲା । ଜିଲ୍ଲାପାଳ ଶ୍ରୀ ରମେଶ ଚନ୍ଦ୍ର ବେହେରା ସ୍ଥାନୀୟ ସମସ୍ତ ବିଭାଗୀୟ ଅଫିସରଙ୍କୁ ପରାମର୍ଶ ଦେଇ କହିଲେ ଯେ ସେମାନେ ଏଭଳି ପରିସ୍ଥିତିର ମୁକାବିଲା ପାଇଁ ପ୍ରସ୍ତୁତ ହୋଇ ରହିବା ଆବଶ୍ୟକ ।

## ବେକାର ଅନ୍ୱେଷଣକାରୀଙ୍କୁ ବୃତ୍ତିଗତ ମାର୍ଗ ନିମନ୍ତେ ପରାମର୍ଶ

ଜିଲ୍ଲା କର୍ମ ଯୋଗାଣ ସଂସ୍ଥାରେ ନାମ ରେଜେଷ୍ଟ୍ରୀକରଣ ଏବଂ ରେଜେଷ୍ଟ୍ରୀକୃତ ନାମ ସୁପାରିଶ ସମେତ ବହୁ ବେକାରଙ୍କ ଫଳପ୍ରଦ ନିଯୁକ୍ତି ପାଇଁ ବୃତ୍ତିଗତ ମାର୍ଗ ନିମନ୍ତେ ପରାମର୍ଶ ଦିଆଯାଇଥାଏ । ବେକାର ବ୍ୟକ୍ତି ଓ ସ୍କୁଲ-କଲେଜର ଛାତ୍ର ଛାତ୍ରୀମାନଙ୍କୁ ବୃତ୍ତିଗତ ମାର୍ଗ ପ୍ରଦର୍ଶନ ପାଇଁ ତାଲିମ ସୁବିଧା ତଥା ସମ୍ଭାବ୍ୟ ଜୀବିକା ଉପାର୍ଜନ ଓ ଆତ୍ମ ନିଯୁକ୍ତି ସଂପର୍କରେ ଏହି ସଂସ୍ଥା ତରଫରୁ ସୂଚନା ଦିଆଯାଇଥାଏ ।

ଏହି ଅନୁଯାୟୀ ସଂସ୍ଥା ପକ୍ଷରୁ ୧୯୮୬ ମସିହାରେ ୫୦,୭୨୪ ଜଣ ବ୍ୟକ୍ତି ବ୍ୟକ୍ତିଗତ ଭାବେ ଏବଂ ୨୨,୪୩୬ ଜଣ ବ୍ୟକ୍ତି ନାମ ରେଜିଷ୍ଟ୍ରୀକରଣ ସମୟରେ ବୃତ୍ତିଗତ ମାର୍ଗ ସଂପର୍କରେ ସୂଚନା ପାଇଥିଲେ । ସେହିପରି ଆୟୋଜିତ ୨୪୫୦ଟି ଆଲୋଚନା ବୈଠକରେ ୧୮,୨୬୪ ଜଣ ଦରଖାସ୍ତକାରୀ ଯୋଗ ଦେଇଥିଲେ । ଏହାଛଡା ସ୍କୁଲ ଓ କଲେଜରେ ୭୭୩ ଟି ଶିକ୍ଷାଗତ ଆଲୋଚନା ବୈଠକର ଆୟୋଜନ କରାଯାଇଥିଲା ଏବଂ ୬୦୮୧ ଜଣ ଦରଖାସ୍ତକାରୀଙ୍କୁ ଶିକ୍ଷା ନବୀଶ ତାଲିମ ନିମନ୍ତେ ପଠାଯାଇଥିଲା ।

## ଶାରୀରିକ ଅସମର୍ଥଙ୍କ ପାଇଁ ଶିକ୍ଷା ବ୍ୟବସ୍ଥା

ରାଜ୍ୟର ଶାରୀରିକ ଅସମର୍ଥ ପିଲମାନଙ୍କ ଶିକ୍ଷାର ପ୍ରସାର ପାଇଁ ବୁର୍ଲା ସ୍ଥିତ ସରକାରୀ ମୂକ ବଧିର ସ୍କୁଲ ଓ ଅନ୍ଧ ସ୍କୁଲକୁ ମଧ୍ୟ ଇଂରାଜୀ ସ୍ତରରୁ ଉଚ୍ଚ ବିଦ୍ୟାଳୟ ସ୍ତରକୁ ଉନ୍ନୀତ କରାଯାଇଛି । ରାଜ୍ୟର ୨୦ଟି ସମନ୍ୱିତ ସ୍କୁଲରେ ମୂକ ବଧିର ପିଲମାନଙ୍କୁ ଶିକ୍ଷାଦାନର ବ୍ୟବସ୍ଥା କରାଯାଇଛି । ଏହି କାର୍ଯ୍ୟକ୍ରମରେ ସଂପ୍ରସାରଣ ପାଇଁ କେନ୍ଦ୍ର ସରକାର ସାହାଯ୍ୟ ଯୋଗାଇ ଦେବାକୁ ଅନୁରୋଧ କରାଯାଇଛି ।

## ରାଜ୍ୟରେ ରେଜିଷ୍ଟ୍ରେସନ୍ ଫିସ୍ ଓ ଷ୍ଟାମ୍ପ ଶୁଳ୍କ ଆଦାୟ

ରେଜିଷ୍ଟ୍ରେସନ ଫିସ୍ ଓ ଷ୍ଟାଂପ ଶୁଳ୍କ ବାବଦରେ ୧୯୮୪-୮୫ରୁ ୧୯୮୭-୮୮ ଆର୍ଥିକ ବର୍ଷର ନଭେମ୍ବର ମାସ ଶେଷ ସୁଦ୍ଧା ରାଜ୍ୟ ସରକାର ମୋଟ ୬୪ କୋଟି ୭୭ ଲକ୍ଷ ୨୬ ହଜାର ଟଙ୍କା ଆଦାୟ କରିଛନ୍ତି । ତନ୍ମଧ୍ୟରେ ରେଜିଷ୍ଟ୍ରେସନ ଫିସ୍ ବାବଦରେ ୧୨ କୋଟି ୩୯ ଲକ୍ଷ ୫୫ ହଜାର ଟଙ୍କା ଓ ଷ୍ଟାଂପ ଶୁଳ୍କ ବାବଦରେ ୫୨ କୋଟି ୩୭ ଲକ୍ଷ ୭୧ ହଜାର ଟଙ୍କା ଅନ୍ତର୍ଭୁକ୍ତ ।

ରାଜ୍ୟରେ ବିଭିନ୍ନ ପ୍ରକାର ଦଲିଲ ରେଜିଷ୍ଟ୍ରେସନ ପାଇଁ ୧୪ଟି ଜିଲ୍ଲା ସବ୍-ରେଜିଷ୍ଟ୍ରେସନ ଅଫିସ, ୮୮ଟି ରେଜିଷ୍ଟ୍ରେରୀ ଅଫିସ ଓ ୪୮ଟି ପଦପ୍ରମୁଖ (ଏକ୍ସ ଅଫିସିଓ) ସବ୍-ରେଜେଷ୍ଟ୍ରୀ ଅଫିସ୍ ଅଛି । ସମସ୍ତ ଜିଲ୍ଲା ସବ୍-ରେଜିଷ୍ଟ୍ରେରୀ ଅଫିସ୍‌କୁ ମିଶାଇ ସମଗ୍ର ରାଜ୍ୟରେ ୧୯୭୭-୭୮ ଶେଷ ସୁଦ୍ଧା ୧୨୭ଟି ରେଜିଷ୍ଟ୍ରେସନ ଅଫିସ୍ ଥିଲା ବେଳେ ୧୯୮୫ ଶେଷ ସୁଦ୍ଧା ଏହା ୧୫୦କୁ ବୃଦ୍ଧି ପାଇଛି । ପ୍ରତ୍ୟେକ ତହସିଲ୍‌ରେ ଅନ୍ତତଃପକ୍ଷେ ଗୋଟିଏ କରି ସବ୍-ରେଜେଷ୍ଟ୍ରୀ ଅଫିସ୍ ଖୋଲିବା ପାଇଁ ବ୍ୟବସ୍ଥା ହୋଇଛି ।

ବର୍ତ୍ତମାନ ରାଜ୍ୟରେ ମୋଟ ୧୪୨ଟି ତହସିଲ ମଧ୍ୟରୁ ୧୭ଟି ତହସିଲ ପରିସୀମା ମଧ୍ୟରେ ଆଦୌ ସବ୍-ରେଜିଷ୍ଟ୍ରେସନ ଅଫିସ ନାହିଁ ।

ଯେଉଁଠାରେ ଏହା ନାହିଁ, ସେଗୁଡ଼ିକ ହେଲ :—ବଲାଙ୍ଗୀର ଜିଲ୍ଲାର ତୁଷୁରା, କଟକ ଜିଲ୍ଲାର କନିକା, ରାଜ ନଗର ଓ ବିଂଝାରପୁର, କଳାହାଣ୍ଡି ଜିଲ୍ଲାର ଥୁଆମୂଳ-ରାମପୁର, କୋରାପୁଟ ଜିଲ୍ଲାର ମାଛକୁଣ୍ଡ, କୋଲିଙ୍ଗା, ଡାବୁଗାଁ, ଫୁଲବାଣୀ ଜିଲ୍ଲାର କଣ୍ଟାମାଳ ଓ ଦାରିଙ୍ଗବାଡ଼ି, ସମ୍ବଲପୁରର ରେଢ଼ାଖୋଲ, ଜିଲ୍ଲାର ରେଙ୍ଗାଲି ଓ ଭଟ୍ଲି, ସୁନ୍ଦରଗଡ଼ ଜିଲ୍ଲାର ହେମଗିରି, ଲେଫ୍ରିପଡ଼ା, କେନ୍ଦୁଝର ଜିଲ୍ଲାର ଘାଟଗାଁ ଓ ହାଟଡିହ ।

ଉଲ୍ଲେଖନୀୟ ଯେ ନୂତନ ସବ୍‌—ରେଜେଷ୍ଟ୍ରୀ ଅଫିସ୍ ଖୋଲିବା ପାଇଁ ଯେଉଁ ମାନଦଣ୍ଡ ସ୍ଥିର ହୋଇଛି, ସେଥିମଧ୍ୟରେ ଗୋଟିଏ ପଦ-ପ୍ରମୁଖ ସବ୍‌—ରେଜେଷ୍ଟ୍ରୀ ଅଫିସ୍‌କୁ ବିଭାଗୀୟ ସବ୍‌—ରେଜେଷ୍ଟ୍ରୀ ଅଫିସ୍‌ରେ ପରିଣତ କରାଯିବା ପାଇଁ ଏହାର ରେଜିଷ୍ଟ୍ରେସନ ଦଲିଲ୍ ସଂଖ୍ୟା ବର୍ଷକୁ ନିହାତି କମ୍‌ରେ ୧୫୦୦ ହେବା ଦରକାର । ସେହିପରି ଗୋଟିଏ ବିଭାଗୀୟ ସବ୍‌—ରେଜେଷ୍ଟ୍ରୀ ଅଫିସ୍ ପୃଥକ କରି ଦୁଇଟି ସବ୍‌—ରେଜେଷ୍ଟ୍ରୀ ଅଫିସ୍ ଖୋଲିବା ପାଇଁ ଏହାର ବାର୍ଷିକ ରେଜିଷ୍ଟ୍ରେସନ ଦଲିଲ ସଂଖ୍ୟା ୬ ହଜାର ହେବା ଦରକାର ।

## ଧନ୍ଦାମୂଳକ ଶିକ୍ଷା ପ୍ରଚଳନ

ଚଳିତ ଆର୍ଥିକ ବର୍ଷରେ ମାଧ୍ୟମିକ ସ୍ତରରେ ଛାତ୍ର ଛାତ୍ରୀମାନଙ୍କୁ ଧନ୍ଦାମୂଳକ ଶିକ୍ଷାଦାନ ଦେବାର ବ୍ୟବସ୍ଥା କରାଯାଇଛି । ଚଳିତ ବର୍ଷ ସୀମିତ ଭାବରେ ରାଜ୍ୟର ୩୧ଟି ସ୍କୁଲରେ ଉଚ୍ଚ ମାଧ୍ୟମିକ ସ୍ତରରେ ଏହା ପ୍ରଚଳନ କରାଯିବ । ଏଥିପାଇଁ କେନ୍ଦ୍ର ସରକାର ଏକ କୋଟି ୫୬ ହଜାର ଟଙ୍କା ପ୍ରଥମ ପର୍ଯ୍ୟାୟରେ ଯୋଗାଇ ଦେଇଛନ୍ତି । ଏଥିନିମନ୍ତେ ଶିକ୍ଷକମାନଙ୍କୁ ପୁରୀ ଓ ସମ୍ବଲପୁରଠାରେ ତାଲିମ ଶିବିର ପ୍ରତିଷ୍ଠା କରାଯାଇ ତାଲିମ ଦିଆଯାଇଛି ।



୪୫ ଫୁଟ ଗଭୀରତା ବିଶିଷ୍ଟ କୂପରେ ବସିଥିବା ସୌରଶକ୍ତି ଚାଳିତ ପାଣିପମ୍ପକୁ ଚାଳନା କରି ଦେଖୁଛନ୍ତି ରାଜ୍ୟ ଶିଳ୍ପମନ୍ତ୍ରୀ

# କାଳେ ଆମେ ଭୁଲିଯିବା

ଶ୍ରୀ ସାତକଡ଼ି ହୋତା

ଜନସାଧାରଣଙ୍କର ସଂଘଶକ୍ତି କ୍ଷୀଣ, ତେଣୁ ଯାହା ଘଟିଯାଉଛି ବା ଘଟୁଅଛି, ତାହାର ବିବରଣୀ ଐତିହାସିକମାନେ ଲିପିବଦ୍ଧ କରି ରଖନ୍ତି । ପୁନଶ୍ଚ ଯେତେବେଳେ କୌଣସି ଜାତିର ବା ଗୋଷ୍ଠୀର ପୁନରୁତ୍ଥାନର ବିଷୟ ଲିପିବଦ୍ଧ କରିବା ଆବଶ୍ୟକ ହୁଏ, ତାହା ହୁଏ ଆହୁରି ରୋମାଞ୍ଚକର ଓ ପ୍ରେରଣାଦାୟକ । ପୂର୍ବକାଳରେ ସମ୍ରାଟ ଓ ରାଜା ମହାରାଜାମାନଙ୍କର ଇତିହାସ ରଚନା କରାଯାଉଥିଲା, ସେମାନଙ୍କର ରାଜତ୍ୱର ଇତିହାସ, ଜୟ ପରାଜୟର କାହାଣୀ, ପ୍ରାସାଦର ଆଭ୍ୟନ୍ତରୀଣ ହର୍ଷ ବିଷାଦ ସହିତ କୂଟନୀତି, ଚକ୍ରାନ୍ତ ଓ ଷଡ଼ଯନ୍ତ୍ର, ବିଜୟ ଓ ବିଭୀଷିକା ସବୁ ବିଷୟ ସଂଗୃହୀତ ହୋଇ ସ୍ଥାନ ପାଉଥିଲା ଇତିହାସରେ । ଜନସାଧାରଣଙ୍କର ସଂଗ୍ରାମ ଓ ସଫଳତାର କାହାଣୀ ସେତେବେଳର ଇତିହାସର ବିଷୟବସ୍ତୁ ବା ତାର ପରିସରଭୁକ୍ତ ନଥିଲା । ସେମାନଙ୍କର ଦୁଃଖ, ଅଶ୍ରୁ ଓ ଗ୍ଲାନି, ଲାଞ୍ଛନା ଓ ନିପୀଡ଼ନ, ଆନୁଗତ୍ୟ ଓ ଅନୁରାଗର କାହାଣୀ କେହି କହୁ ନଥିଲେ । ଗଣତାନ୍ତ୍ରିକ ସମାଜ ବ୍ୟବସ୍ଥା ପ୍ରତିଷ୍ଠିତ ହେବା ପରେ ପରେ ରାଜା ମହାରାଜା, ସମ୍ରାଟ ଓ ସେନାପତିଙ୍କ ସ୍ଥାନ ଅଧିକାର କରିନେଲେ ଜନସାଧାରଣ, ସେମାନେ ହେଲେ ଦେଶର ଅଖଣ୍ଡ ସାର୍ବଭୌମତ୍ୱର ଭକ୍ତ ଓ ଅଧିକାରୀ । ସେମାନଙ୍କର ଆଶା ଓ ଆକାଂକ୍ଷା, ପ୍ରୟାସ ଓ ପ୍ରଚେଷ୍ଟା, ସଂଗ୍ରାମ ଓ ସଂଘର୍ଷ, ବିଜୟ ଓ ପରାଜୟର କାହାଣୀ ହେଲା ଶାସନର ନୀତି ନିର୍ଦ୍ଧାରଣର ପ୍ରଧାନ ଉପାଦାନ । ଯେଉଁଠାରେ ଜନଜୀବନରେ ଆତ୍ମମର୍ଯ୍ୟାଦା ସହିତ ଆତ୍ମନିରୀକ୍ଷଣ କରିବାର ଇଚ୍ଛା ଜାଗ୍ରତ ହୋଇ ନାହିଁ ସେଠାରେ ଏକ ସ୍ୱୟଂସିଦ୍ଧ ବ୍ୟବସ୍ଥା ମଧ୍ୟ ପ୍ରତିଷ୍ଠିତ ହୁଏ ନାହିଁ । କେବଳ ଶାସନକଳ ପରିଚାଳନାରେ ନୁହେଁ, ରାଷ୍ଟ୍ରଶକ୍ତିର ପରିଚାଳନାରେ ଓ ଜନ ଜୀବନରୁ ଦୁଃଖ ଓ ଦୁର୍ଗତି, ନିପୀଡ଼ନ ଓ ଅବିଚାର ଦୂର କରିବାରେ ଜନସାଧାରଣ ଯେଉଁଠାରେ ଯେତିକି କ୍ରିୟାଶୀଳ ଓ ସଚେତନ ଭୂମିକା ଗ୍ରହଣ କରନ୍ତି ସେଠାରେ ରାଷ୍ଟ୍ର ଓ ଶାସନ ପ୍ରତି ସେମାନଙ୍କର ଆନୁଗତ୍ୟ ଓ ଅନୁରାଗ ସେତିକି ଦୃଢ଼ ହୁଏ । ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ଗୋଟିଏ ଦେଶ ବା ରାଜ୍ୟର ଲୋକମାନଙ୍କୁ ହିଁ ସୁଖୀ ଓ ସମୃଦ୍ଧ କରିବା ଦିଗରେ ଯେଉଁ ପ୍ରଶାସନ ଯେତିକି ଅଙ୍ଗୀକାରବଦ୍ଧ ଓ ଉତ୍ସର୍ଗୀକୃତ ପ୍ରୟାସ କରିଛି ସେଠାରେ ସେହି ପରିମାଣରେ ସଫଳତା ହାସଲ କରାଯାଇଛି । ଯେଉଁଠାରେ ଶାସନର ମୂଳଲକ୍ଷ୍ୟ ପ୍ରଜାର କଲ୍ୟାଣ ନହୋଇ ପ୍ରଜାପୀଡ଼ନ ହୋଇଛି ସେଠାରେ କେବଳ ବିଦ୍ରୋହ ବା ବିପ୍ଳବ ହୋଇ ନାହିଁ, ପ୍ରଚଳିତ ଶାସନ ଓ ବିଧିବ୍ୟବସ୍ଥା ଭୁଶୁଡ଼ି ପଡ଼ିଛି । ଏହି ପଟ୍ଟଭୂମିରେ ବଳିତ ଘଟଣାର ମୂଲ୍ୟାୟନ କରାଗଲେ ଏବଂ ଆତ୍ମନିରୀକ୍ଷଣ ଓ ବିଶ୍ଳେଷଣ କରିବାର ଯେଉଁ ସୁଯୋଗ ପୂର୍ଣ୍ଣଥରେ ଆମକୁ ମିଳିଛି ତାର ସଦୁପଯୋଗ କଲେ ଆମେ ଆମର ସଫଳତାର କାହାଣୀକୁ ଯେପରି ଗର୍ବର ସହିତ ଇତିହାସରେ ଲିପିବଦ୍ଧ କରିବା ସେହିପରି ଆମର ତ୍ରୁଟି ଓ ନୀତି ବିଚ୍ୟୁତି, ଶିଥିଳତା ଓ ବିପର୍ଯ୍ୟୟର ବିଷୟଗୁଡ଼ିକୁ ଗଭୀର ଭାବରେ ବିଶ୍ଳେଷଣ କରି ଏହାର ପୁନରାବୃତ୍ତି ଯେପରି ନଘଟେ ସେ ଦିଗରେ ନିଷ୍ଠା ଓ ସଂକଳ୍ପର ସହିତ ଉଦ୍ୟମ ଓ ଆବଶ୍ୟକୀୟ ସଂଶୋଧନ କଲେ, ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ଆହୁରି ସୁଦୃଢ଼ ଏବଂ ଫଳପ୍ରସୂ ହେବାର ସହାୟକ ହେବ । ଯେଉଁ ଶାସନର ଅବିମୃଶ୍ୟକାରୀତା ଏବଂ ହଠକାରୀତା ଯୋଗୁ ଏହା ସମ୍ଭବ ହୁଏ ନାହିଁ ସେଠାରେ ବିପର୍ଯ୍ୟୟ ସୃଷ୍ଟି ହେବା ଅନିବାର୍ଯ୍ୟ ।

ଓଡ଼ିଶାର ପୂର୍ଣ୍ଣାଙ୍ଗ ଇତିହାସ ଏଯାଏ ଲେଖା ହୋଇ ନାହିଁ । ପ୍ରାୟ ତେରଶହ ବର୍ଷଧରି ପୂର୍ବଭାରତ ଓ ପୂର୍ବ ଏସିଆରେ ଆଧିପତ୍ୟ ବିସ୍ତାର କରିଥିବା ଏବଂ କଳା ଓ ସାହିତ୍ୟ, ରାଜ୍ୟ ଶାସନ ଓ ସଂସ୍କାର, ବାଣିଜ୍ୟ ଓ କୁଶଳତା, ଦର୍ଶନ ଓ ଆଧ୍ୟାତ୍ମିକତାରେ ଉତ୍କର୍ଷତା ଅର୍ଜନ କରିନିବା ଗୋଟିଏ ଜାତିର ମେରୁଦଣ୍ଡ ଭାଙ୍ଗିଯାଇ କିପରି ସେହି ଭୂଖଣ୍ଡର ଅଧିବାସୀ ହୀନମନ୍ୟତା ଓ ଅସହାୟତା କବଳରେ ପଡ଼ିଗଲେ ତାହା ମଧ୍ୟ ଏଯାଏ ରହସ୍ୟାବୃତ ହୋଇ ରହିଛି । ଯେଉଁ ଓଡ଼ିଆମାନଙ୍କର ପୂର୍ବପୁରୁଷମାନେ ପୂର୍ବ ଏସିଆରେ ଏ ଦେଶର ଧର୍ମ, ସଭ୍ୟତା, ସଂସ୍କୃତି, କୃଷି, ବାଣିଜ୍ୟର ପ୍ରସାର ଏବଂ ପ୍ରତିଷ୍ଠା କରିଥିଲେ ଓ ବୀରତ୍ୱ ସହିତ ମାନବୀୟ ସମ୍ପଦର ସୁବିନିଯୋଗ କରିବାର ଅପୂର୍ବ ସଫଳତା ପ୍ରଦର୍ଶନ କରିଥିଲେ, କଳା ଏବଂ ସ୍ଥାପତ୍ୟ ସହିତ ଭାଷା ଓ ସାହିତ୍ୟରେ ଚରମ କୃତିତ୍ୱ ଓ ଉତ୍କର୍ଷତାର ନିଦର୍ଶନ ରଖିଯାଇଛନ୍ତି ; ସେମାନଙ୍କର ବଂଶଧରମାନଙ୍କୁ ଦେଖିଲେ ମନେହୁଏ ଯେ ବୋଧହୁଏ ଯୁଗଯୁଗର ପ୍ରତିଷ୍ଠା ଆଉ ଫେରିବି ପାଇଁ ସେମାନେ ବୋଝ ବୋହି ବୋହି କୁର୍ମ ପାଲଟି ଯାଇଛନ୍ତି । କାରଣ ବିନା ମୂଲ୍ୟରେ କେହି କେବେ ବଡ଼ ହୋଇ ନାହିଁ, ଆଜି ମଧ୍ୟ ମୂଲ୍ୟନଦେଇ ସମୃଦ୍ଧ ହେବାର କଳ୍ପନା ଆକାଶରେ ଗୃହ ନିର୍ମାଣ ସୁଦୃଢ଼ ନିଷ୍ଫଳ ଅଟେ । ଷୋଡ଼ଶଶ ଶତାବ୍ଦୀଠାରୁ ଉନବିଂଶ ଶତାବ୍ଦୀର ମଧ୍ୟ ଭାଗ ପର୍ଯ୍ୟନ୍ତ ଗର୍ବ ଓ ଗୌରବ କରିବା ଭଳି କୌଣସି ଇତିହାସ ଆମେ ସୃଷ୍ଟି କରିନାହୁଁ । ଏହା କହିଲା ବେଳେ ଶାରଳା ଦାସ, ଜଗନ୍ନାଥ ଦାସ ଓ ପଞ୍ଚସଖା, ମଧ୍ୟଯୁଗୀୟ ସାହିତ୍ୟ ଓ ଉପେନ୍ଦ୍ର ଭଞ୍ଜ ଏବଂ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଭାଷା, ସାହିତ୍ୟ ଓ ଜନଜାଗରଣ ଦିଗରେ ଏବଂ ତା'ପୂର୍ବରୁ ବ୍ରିଟିଶ ରାଜତ୍ୱର ଅୟମାରମ୍ଭ ସମୟରେ ଯେଉଁ

ଜାଗର୍ ଓ ସଂଘର୍ଷର ଇତିହାସକୁ ବିସ୍ମରଣର ବାହାରେ ରଖିଛି, କାରଣ ତାହା ଜାତିର ସାମଗ୍ରିକ ପୁନରୁତ୍ଥାନରେ କେବଳ ଉଚ୍ଚ ସ୍ମୃତି କରିଛି ସିନା ସେଇ ପ୍ରକ୍ରିୟାକୁ ଓଡ଼ିଆର ଜୀବନ ଧାରାର ଅନ୍ତର୍ଭୁକ୍ତ କରି ପାରି ନାହିଁ । ଫଳରେ ଓଡ଼ିଶା ଯେଉଁ ସ୍ୱାଭିମାନ ହରାଇଥିଲା ତାହା ବିଂଶ ଶତାବ୍ଦୀର ପ୍ରଥମ ତୃତୀୟାଂଶ ପର୍ଯ୍ୟନ୍ତ ଦୃଷ୍ଟିଗୋଚର ହୋଇ ନଥିଲା । ଓଡ଼ିଶାର ଜନଗଣ କେବଳ ଆଚାର ଓ ବିଚାର, ଆହାର ଓ ବିହାରରେ ନୁହେଁ, ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ପରସ୍ପରଠାରୁ ତଥା ଦେଶର ମୂଳ-ସ୍ରୋତଠାରୁ ବିଚ୍ଛିନ୍ନ ହୋଇ ରହିଲେ । ଏହା ଐତିହାସିକ କାରଣରୁ ହୋଇଥାଇ ପାରେ, କିନ୍ତୁ ୧୯୪୬ର ଓଡ଼ିଶାର ରାଜନୈତିକ ତଥା ଭୌଗଳିକ ରୂପ ଦେଖିଲେ ଏବଂ ତାର ପରବର୍ତ୍ତୀ ସମନ୍ୱୟ ଓ ଏକତ୍ରୀକରଣର ଇତିହାସ ଅନୁଧ୍ୟାନ କଲେ କିପରି ଆମେ ଅନେକ ସୁଯୋଗ ନଷ୍ଟ କରିଛୁ ଅନ୍ୟମାନେ ଜାତି ଗଠନରେ ଲିପ୍ତ ଥିବା ବେଳେ ଅତିମୂଲ୍ୟବାନ ସମୟ ପରସ୍ପରର ଦୋଷାରୋପ କରି ଅପଚୟ କରିଛୁ ତାର ପ୍ରଚୁର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଉପକୂଳ ଓଡ଼ିଶା ଯେପରି ନଦୀନାଳ ଦ୍ୱାରା ପୂର୍ବ, ପଶ୍ଚିମ ଓ ଉତ୍ତରାଞ୍ଚଳ ସେହିପରି ବଣ, ପର୍ବତ ଦ୍ୱାରା ପରିବେଷ୍ଟିତ । ଗୋଟିଏ ଅଞ୍ଚଳକୁ ଅନ୍ୟ ଅଞ୍ଚଳଠାରୁ ବିଚ୍ଛିନ୍ନ କରିରଖିଛି ପ୍ରକୃତି । ଏହି କାରଣରୁ ବୋଧହୁଏ ଗୋଟିଏ ଜାତି, ଗୋଟିଏ ବିଶ୍ୱାସ ଓ ସଂକଳ୍ପ, ବଡ଼ ହେବାର ପ୍ରୟାସ ଓ ପ୍ରଚେଷ୍ଟା ଆଚରଣରେ ସଂହତି ଓ ସମନ୍ୱୟ ବାଧାପାଇଥିଲା, ଯାହା ଓଡ଼ିଆମାନଙ୍କର ଏକୀକରଣର ପ୍ରକ୍ରିୟାକୁ ପ୍ରଚ୍ଛେଦ ଦେଇଥିଲା । ସେ ଯାହାହେଉ ଐତିହାସିକ, ଭୌଗଳିକ, ରାଜନୈତିକ ଓ ସାମାଜିକ କାରଣରୁ ହୀନମନ୍ୟତାର ଶିକାର ହୋଇ ପଙ୍ଗୁତ୍ୱକୁ ଆବରି ନେଇଥିବା ଗୋଟିଏ ଜାତିକୁ ସୁଦୃଢ଼, ଶକ୍ତିଶାଳୀ ଓ ସମୃଦ୍ଧ କରିବାର ସଂକଳ୍ପ ଓ ସାଧନାର ଇତିହାସ କମ୍ ରୋଚକର ନୁହେଁ । ଗତ ଆଠ ଦଶବର୍ଷର ଇତିହାସ ଅନୁଶୀଳନ କଲେ ଆମେ ନିଶ୍ଚୟ ଭାବରେ ଗୋଟିଏ ସିଦ୍ଧାନ୍ତରେ ଉପନୀତ ହୋଇ ପାରିବା ଯେ ଏହି ଦଶନ୍ଧିର ସବୁଠାରୁ ବଡ଼ ସଫଳତା ହେଉଛି ନିଷ୍କ୍ରିୟତା ଓ ଶିଥିଳତା ଉପରେ ପ୍ରତିବଦ୍ଧତା ଓ କ୍ରିୟାଶୀଳତାର ବିଜୟ, ହୀନମନ୍ୟତା ସ୍ଥାନରେ ସ୍ୱାଭିମାନର ପ୍ରତିଷ୍ଠା ଏବଂ ନକାରାତ୍ମକ ଦୃଷ୍ଟିକୋଣ ସ୍ଥାନରେ ପ୍ରୟାସ ଓ ପ୍ରଚେଷ୍ଟା କରିବାର ଦୃଷ୍ଟିକୋଣର ପ୍ରସାର । ଦେଶ ଯେଉଁ ସର୍ବାତ୍ମକ ବିକାଶ ପଥରେ ଦ୍ରୁତ ଅଗ୍ରସର, ସେହି ପଥରେ କେବଳ ଅନ୍ୟମାନଙ୍କର ସମକକ୍ଷ ହେବା ପାଇଁ ନୁହେଁ, ଅନ୍ୟମାନଙ୍କୁ ପଛରେ ପକେଇ ସେମାନଙ୍କଠାରୁ ଆଗେଇ ଯିବାର ସାଧନା ବଡ଼ ରୋମାଞ୍ଚକର ଓ ପ୍ରେରଣାଦାୟକ । ଏହା ଦୁଃସାହସ ହୋଇ ପାରେ, କିନ୍ତୁ କିଏ ସ୍ୱୀକାର କରିବ ନାହିଁ ଯେ, ଏହି ଦୁଃସାହସ ହିଁ ଇତିହାସ ସୃଷ୍ଟିକରେ, ନବ ନବ ଉଦ୍ଭାବନ ଓ ଆବିଷ୍କାରକୁ ଜନ୍ମଦିଏ ଏବଂ ଏହାହିଁ ଦେଶ ନିର୍ମାଣ, ଐକ୍ୟ ଓ ଅଖଣ୍ଡତା ପ୍ରତିଷ୍ଠାର ପ୍ରଥମ ପଦକ୍ଷେପଣ ଭୂମି । ଏହିଦୃଷ୍ଟିରୁ ଓଡ଼ିଶାର ନିର୍ମାଣରେ, ଓଡ଼ିଶାକୁ ଏକ ସମୃଦ୍ଧ ଅଗ୍ରଗାମୀ ରାଜ୍ୟରେ ପରିଣତ କରିବାରେ ଦେଶର ଐକ୍ୟ ଓ ଅଖଣ୍ଡତା ରକ୍ଷାକରି ସବୁକାର୍ଯ୍ୟରେ ଜାତୀୟ ମୂଳସ୍ରୋତରେ ସାମିଲ ହୋଇବା ଓ ଅଂଶ ଗ୍ରହଣ କରିବାରେ ଓଡ଼ିଆମାନେ ଏଇ ଦଶନ୍ଧିରେ ଏଯାବତ୍ ଯେଉଁ ଭୂମିକା ଗ୍ରହଣ କରିଛନ୍ତି ତାହା ଲିପିବଦ୍ଧ ହୋଇ ରହିବା ଉଚିତ । ସ୍ୱାଧୀନତା ସଂଗ୍ରାମ ସମଗ୍ର ଓଡ଼ିଶାକୁ ଯେଉଁ ମନ୍ତ୍ରରେ ଦୀକ୍ଷିତ କରି ପାରିନଥିଲା ଏବଂ ସେଥିପାଇଁ କେତେକ ଐତିହାସିକ ମତ ଦିଅନ୍ତି ଯେ ଜାତୀୟ ସ୍ରୋତରୁ ବିଚ୍ଛିନ୍ନ ହୋଇଯିବା ଆମ ହୀନମନ୍ୟତା ଓ ଅନଗ୍ରସରତାର ଅନ୍ୟ ଏକ କାରଣ, କିନ୍ତୁ ଗତ କେତେବର୍ଷର ସାଧନା ଓ ପ୍ରଚେଷ୍ଟା ଜନସାଧାରଣଙ୍କୁ ଦେଶ ନିର୍ମାଣର ନୂତନ ମନ୍ତ୍ରରେ ଦୀକ୍ଷିତ କରି ପାରିଛି । ସ୍ଥାଣୁ ଭାବରେ ଗୋଟିଏ ସ୍ଥାନରେ ଛିଡ଼ା ନହୋଇ ବା ପଛକୁ ନହଟି ଅଗ୍ରସର ହେବାପାଇଁ ପ୍ରେରଣା ଯୋଗାଇ ଦେଇ ତରୁଣମାନଙ୍କ ମନରେ ଗଭୀର ଆତ୍ମପ୍ରତ୍ୟୟ ଓ ଆଶାର ସଞ୍ଚାର କରି ପାରିଛି । ଆଜି ଆଉ ସେଇ ପଦକ୍ଷେପଣ ଅବସ୍ଥା ବା ଟେକ୍ଅଫ୍ ଅବସ୍ଥା ଆମର ଲକ୍ଷ୍ୟ ବାହାରେ ରହିନାହିଁ, ଭିତ୍ତିଭୂମି ପ୍ରସ୍ତୁତ ହୋଇଯିବା ଫଳରେ ଆମେ ଉପରକୁ ଉଠିବାକୁ ଆରମ୍ଭ କରିଛୁ । ସେଥିପାଇଁତ ଘରେଘରେ ଓ ପ୍ରତିଗ୍ରାମରେ ନୂତନ ସଂକଳ୍ପ, ନୂତନ ଶପଥ ନିଆ ଯାଉଛି, ନୂତନ କାର୍ଯ୍ୟକ୍ରମ ପ୍ରସ୍ତୁତ ହେଉଛି । ଯେଉଁଠାରେ ସିଦ୍ଧାନ୍ତ ବା ପ୍ରଶାସନ ଏହାର ପ୍ରତିବନ୍ଧକ ହେଉଛି, ସେଠାରେ ତାକୁ ନିର୍ମୂଳ କରିବା ସକାଶେ ଉଦ୍ୟମ ଅବ୍ୟାହତ ରହିଛି । ଜନ ଜୀବନରେ ସୃଜନଶୀଳ ସଂଗ୍ରାମୀ ମନୋଭାବର ସଞ୍ଚାର କରିବା ସହଜ ବିଷୟ ନୁହେଁ । ଗୋଟିଏ ଅନଗ୍ରସର ସମାଜରେ ଏହି ପ୍ରକ୍ରିୟା ଆହୁରି କଷ୍ଟକର । କିନ୍ତୁ ଅନଗ୍ରସରତା ବିରୁଦ୍ଧରେ ଆରମ୍ଭ ହୋଇଥିବା ଯୁଦ୍ଧ ଆଉ ଗୋଟିଏ ଅଞ୍ଚଳ ବା ଗୋଷ୍ଠୀ ମଧ୍ୟରେ ଆବଦ୍ଧ ନୁହେଁ, ଏହା ଜାତି ବର୍ଣ୍ଣ ଓ ଅଞ୍ଚଳ ନିର୍ବିଶେଷରେ ଅଭ୍ୟାସରେ ପରିଣତ ହେବାରେ ଲାଗିଛି ।

ଗୋଟିଏ କଥା ମନେ ରଖିବାକୁ ହେବ ଯେ ଏକ ଜୀବନ୍ତ ସଂସ୍କୃତି ବ୍ୟତୀତ କୌଣସି ଜାତି ଆଗରେ ପ୍ରେରଣାର ଉତ୍ସ ହୋଇ କିଛି ରହେ ନାହିଁ । ଏକ ପ୍ରାଣବନ୍ତ ସହିତ ସଂସ୍କୃତିହିଁ ନିରନ୍ତର ଉତ୍କର୍ଷତା ଆଡ଼କୁ ନେଇଯିବା ପାଇଁ ଜନଜୀବନକୁ ପ୍ରେରଣା ଯୋଗାଇଥାଏ । ଏଥି ସକାଶେ ଅପସଂସ୍କୃତି ବିରୁଦ୍ଧରେ ସବୁକାଳରେ ସଂଗ୍ରାମ ଜାରି ରହେ । ଅପସଂସ୍କୃତି ବିଶୃଙ୍ଖଳା, ଅବିମୃଶ୍ୟକାରୀତା, ଅଜ୍ଞତା, ମତାନ୍ଧତା ଓ କୁସଂସ୍କାରକୁ ଜନ୍ମଦିଏ । ଶିଥିଳତା, ଆଳସ୍ୟ, ଭ୍ରଷ୍ଟାଚାର, ଅଶ୍ଳୀଳତା, ଅନଗ୍ରସରତା ଏହାର ଚିହ୍ନ । ଜନଜୀବନରୁ ଅପସଂସ୍କୃତିକୁ ବହିଷ୍କାର କରିବା ଯେପରି ଅପରିହାର୍ଯ୍ୟ, ସେହିପରି ଅନିର୍ବାର୍ଯ୍ୟ ନବନବ ସଂସ୍କୃତିର ଓ ଉନ୍ମେଷକୁ ସଂସ୍କୃତିର ଅଙ୍ଗୀଭୂତ କରି ସମାଜରୁ ଅଜ୍ଞତା ଓ କୁସଂସ୍କାରକୁ ଦୂର କରିବା । ସଂସ୍କୃତି ସଂସ୍କାର ମଧ୍ୟ ଦେଇ ଆସେ । ସମୟାନୁକୂଳ ସଂସ୍କାର ଆଣିବା ଏହାର ଧର୍ମ । ଦିନେ ସଂସ୍କୃତି ଏ ଜାତିର ଅସ୍ଥି ମଜ୍ଜାଗତ ହୋଇଥିଲା ବୋଲି ଆମର ନୃତ୍ୟ, ସଙ୍ଗୀତ, କଳା ଓ ସ୍ଥାପତ୍ୟ ସାହିତ୍ୟ ଓ ନାଟକ ଏପରି ଲୋକଟିଭକୁ ଉନ୍ମୀଳିତ କରି ରଖିଥିଲା । କେତେ ଶତାବ୍ଦୀର ଅବକ୍ଷୟ ଓ ଅବହେଳା ଆମ ସଂସ୍କୃତିର ଶକ୍ତିହରଣ କରିଥିଲା, ତେଣୁ ସଂସ୍କାର ଓ ଉତ୍କର୍ଷତା ନାମରେ କୁସଂସ୍କାର ସଂସ୍କୃତି ଭିତିକୁ ପ୍ରବେଶ କରି ଜନଜୀବନରେ ମାନ୍ୟତା ପାଇ ଯାଇଥିଲା । ଏଗୁଡ଼ିକୁ ଚିହ୍ନଟ କରାଯାଇ ଜନଜୀବନରେ ସଂସ୍କୃତିକୁ ସଜୀବ ଓ ସକ୍ରୀୟ କରି ରଖିବାପାଇଁ ସାଂସ୍କୃତିକ ନବ ଜାଗରଣର ଭିତ୍ତିଭୂମି ପ୍ରସ୍ତୁତ କରିବା ଅନ୍ୟ ଏକ ଉପାଦାନ ଭାବରେ ଗୃହୀତ ହୋଇଛି । ସଂସ୍କୃତିହିଁ ଚରିତ୍ର ଗଠନର ମୂଳ ଉପାଦାନ ଯୋଗାଇ ଦିଏ । ତେଣୁ ଏହା ଚରିତ୍ରଗତ ଓ ଆଚରଣଗତ ନହେବା ଯାଏ ଜନଜୀବନରୁ ଅଶୋଭନୀୟତା, ଅଶ୍ଳୀଳତା, ଭ୍ରଷ୍ଟାଚାର ପ୍ରଭୃତି ଅନ୍ତର୍ହିତ ହେବନାହିଁ । ପ୍ରତ୍ୟେକ ଓଡ଼ିଆର ଜୀବନରେ ସାଂସ୍କୃତିକ ଜାଗରଣ ଆଣିବା ସକାଶେ ସଂସ୍କୃତି କ୍ଷେତ୍ରରେ ନବୀନ ଉଦ୍ୟମ ଆରମ୍ଭ ହୋଇଛି, ଏଥିପାଇଁ ଅନ୍ୟାୟ ଓ ଅବିଚାର ବିରୁଦ୍ଧରେ ଆଜିର ସଂଗ୍ରାମରତ ମଣିଷ ଏତେ କଠୋର । ଅଭ୍ୟାସ ଭିତରକୁ ଯେଉଁ ଅପସଂସ୍କୃତି ପଶି ଆସି ସମାନତା ପାଇ ଆସନ ଜମାଇ ରହି ଯାଉଛି, ତାକୁ ଚିହ୍ନଟକରି ଜନଜୀବନରୁ ବହିଷ୍କାର କରିବା ପ୍ରକ୍ରିୟାକୁ ଆହୁରି ତ୍ୱରାନ୍ୱିତ କରିବାର ବେଳ ଆସିଛି ।

ଗଣତାନ୍ତ୍ରିକ ଜୀବନଧାରା ଯେପରି ଜନଜୀବନର ଗ୍ରାହ୍ୟ ଏବଂ ଆଚରଣଗତ ହୁଏ ସେଥି ସକାଶେ ଉଦ୍ୟମ କରିବା ଆବଶ୍ୟକ । ଏଥିପାଇଁ କର୍ତ୍ତବ୍ୟବୋଧ ଓ ଅଧିକାର ବୋଧ ମଧ୍ୟରେ ସମନ୍ୱୟ ସାଧନ କରିବା ଅପରିହାର୍ଯ୍ୟ ସମାଜ ବା ଦେଶ ଉପରେ ଆମର ଅପାରଗତା ଓ ଅସଫଳତାର ସମସ୍ତ ଦୋଷ ଲଦି ନଦେଇ ସମାଜ ଓ ଦେଶ ପାଇଁ ଆମର ଅବଦାନ ସଂପର୍କରେ ତର୍କ କରିବାପାଇଁ ଉତ୍ସାହ ସୃଷ୍ଟି କରାଯାଉଛି । ତେଣୁ ଜନଜୀବନରେ ବହୁ ମତବାଦ ଗ୍ରାହ୍ୟ ହୋଇଛି ଏବଂ କ୍ରମଶଃ ଅସହିଷ୍ଣୁତା, ଅସହଯୋଗୀତା ଅହଙ୍କାର ସ୍ଥାନରେ ସହିଷ୍ଣୁତା, ସହଯୋଗୀତା ଓ ଉଦାରତା ସ୍ଥାନ ପାଇବାରେ ଲାଗିଛି । ସମାଜୀକରଣ ପ୍ରଣାଳୀକୁ ଏହା ସାହାଯ୍ୟ କରୁଛି ଏବଂ ସେହି କାରଣରୁ ଏବେ କଳାହାଣ୍ଡିର ଆଞ୍ଚଳିକ ଅଭାବ ଓ ଅନାଟନ ସାରା ରାଜ୍ୟରେ ଓ ଦେଶର ସହାନୁଭୂତି ଅର୍ଜନ କରୁଛି । ଏହା ସମାଧାନକୁ ଆହୁରି ଦ୍ରୁତ କରିବ ଏବଂ ଉଦ୍ୟମକୁ କ୍ଷିପ୍ର କରିବ ଏଥିରେ କୌଣସି ଦ୍ୱିମତ ନାହିଁ ।

ଅବିକଶିତ ତଫସିଲଭୁକ୍ତ ଅନଗ୍ରସର ଜାତି ଓ ଉପଜାତିମାନଙ୍କ ମଧ୍ୟରେ ସମାଜ କଲ୍ୟାଣ କାର୍ଯ୍ୟ ସହିତ ଶିକ୍ଷାର ପ୍ରସାର ସେମାନଙ୍କୁ ଜାତି ଗଠନ କାର୍ଯ୍ୟରେ ଅଂଶୀଦାର କରିବାରେ ଅଧିକ ସାହାଯ୍ୟ ଓ ସଚେତନ କରିବ । ଏଥିପାଇଁ ସରକାରୀ ଉଦ୍ୟମରେ ଯେଉଁ କାର୍ଯ୍ୟ-ସୂଚୀ ହାତକୁ ନିଆହୋଇଛି, ତାହା ସମ୍ବଳ ଅନୁସାରେ କରଯାଉଥିଲେ ସୁଦ୍ଧା ଏବଂ ଏହି କାର୍ଯ୍ୟକ୍ରମର ବ୍ୟାପକ ସଫଳତା ଏଯାଏ କେବଳ ଲକ୍ଷ୍ୟ ହୋଇ ରହି ଆସିଥିବାରୁ ଅନଗ୍ରସରତା କିଛି ପରିମାଣରେ ଅନ୍ତର ହୋଇଥିଲେ ମଧ୍ୟ ମୂଳ ଅର୍ଥନୈତିକ ଓ ସାମାଜିକ ଅନଗ୍ରସରତାର କାରଣଗୁଡ଼ିକ ପୂର୍ବବତ୍ ରହିଛି । ସାମାଜିକ ନ୍ୟାୟରୁ ସେମାନଙ୍କୁ

ବଞ୍ଚିତ କରି ସେମାନଙ୍କ, ଉଦ୍ଦେଶ୍ୟରେ ଅଭିପ୍ରେତ ସଫଳତାକୁ ବାଟ ମାରଣା କରି ଯେଉଁ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ନିଜର ହିତ ସାଧନରେ ରତ, ସେମାନଙ୍କୁ ପ୍ରତି ପଦେପଦେ ଅପଦସ୍ଥ କରିବା ଯେପରି ଏକ ସାମାଜିକ କର୍ତ୍ତବ୍ୟ ସେହିପରି ସେମାନଙ୍କୁ ସମାଜର କଳଙ୍କିତ ନାଗରିକ ଭାବରେ ଉପସ୍ଥାପିତ କରିବାର ସାହସ ଲୋକମାନଙ୍କ ମଧ୍ୟରେ ସଞ୍ଚାର କରାଇବା ସକାଶେ ପଦକ୍ଷେପ ନିଆଯାଉଛି । ମନେ ରଖିବାକୁ ହେବ ଯେ ସମାଜ କଲ୍ୟାଣ କାର୍ଯ୍ୟ ସମାଜର ସବୁ ଗୋଷ୍ଠୀର ସମତୁଲ ଓ ସୁଷମ ବିକାଶ ପାଇଁ ଉଦ୍ଦିଷ୍ଟ ଏବଂ ସେମାନଙ୍କ ମଧ୍ୟରେ ସଂହତି ଓ ସମନ୍ୱୟ, ଭାବାତ୍ମକ ଐକ୍ୟ ଓ ସଚେତନତା ସମଗ୍ର ସମାଜର ବିକାଶ ପାଇଁ କାମ୍ୟ । ସେଥିପାଇଁ ସାମାଜିକ ନ୍ୟାୟର ଅଂଶ ବିଶେଷ ଭାବରେ ଆଇନର ଶାସନ ଓ ସାମାଜିକ ସମତା ଆଉ ତର୍କର ବିଷୟ ନ ହୋଇ ଆଚରଣଗତ ହେବାରେ ଲାଗିଛି । ଏଥି ସକାଶେ ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ଆଶା ଓ ପ୍ରତ୍ୟୟର ସଞ୍ଚାର ହୋଇଛି ଏବଂ ପ୍ରଶାସନ ସେମାନଙ୍କ ବିକାଶ ନିମନ୍ତେ ଅଧିକ ଭାବରେ ଯେପରି କାର୍ଯ୍ୟ କରେ ସେଥି ସକାଶେ ପ୍ରଶାସନିକ କଳକୁ ଅଧିକ କାର୍ଯ୍ୟକ୍ଷମ, ନିରପେକ୍ଷ ଓ ଦକ୍ଷ କରାଯାଉଛି । ଲୋକାୟୁକ୍ତ, ଲୋକ ଅଦାଲତ, ପଞ୍ଚାୟତ ପ୍ରଭୃତି ଅନୁଷ୍ଠାନଗୁଡ଼ିକୁ ଅଧିକ ସକ୍ରିୟ ଓ ଆଦର୍ଶମୂଳକ କରିବା ପାଇଁ ବିଧିବଦ୍ଧ ପ୍ରଚେଷ୍ଟା ଚାଲିଛି । ବ୍ୟକ୍ତିଗତ ଜୀବନର ଆସ୍ପୃହାକୁ ଉତ୍ସାହିତ କରି ଗଣଜୀବନରେ ବ୍ୟକ୍ତି ଓ ସମାଜ ମଧ୍ୟରେ ଅଧିକ ସୃଜନଶୀଳ ସଂପର୍କ ସ୍ଥାପନ କରିବା ସକାଶେ ଗଣ ଅନୁଷ୍ଠାନ, ସଂଘ ଓ ସଂସ୍ଥାମାନଙ୍କୁ ମଜବୁତ ଓ କ୍ରିୟାଶୀଳ କରିବା ପାଇଁ ପ୍ରଶାସନିକ ସହାୟତା କରିବାରେ ଆଗପରି ଆଉ କାର୍ପଣ୍ୟ ରହୁନାହିଁ । ଏକଥା ସ୍ୱୀକୃତ ହୋଇଛି ଯେ ଅନୁଷ୍ଠାନ ସୁଦୃଢ଼ ଓ ସକ୍ରିୟ ହେଲେ ଏବଂ ଅନୁଷ୍ଠାନ ଜରିଆରେ ବ୍ୟକ୍ତିକୁ ଶକ୍ତି ଓ ସୁରକ୍ଷା ଯୋଗାଇ ହେଲେ ବର୍ତ୍ତମାନ ଦେଶର ଅକଳନ୍ତି ମାନବୀୟ ସମ୍ବଳର ବିନିଯୋଗ ଅଧିକ ଫଳପ୍ରସୂ ହେବ । ଏଥି ସକାଶେ କେବଳ ଅଭିମୁଖ୍ୟରେ ନୁହେଁ ଶିକ୍ଷା କ୍ଷେତ୍ରରେ ମଧ୍ୟ ମୌଳିକ ପରିବର୍ତ୍ତନ ଆଣିବା ପାଇଁ କାର୍ଯ୍ୟ ହେଉଛି । ଶିଶୁ ଅବସ୍ଥାରୁ ନାଗରିକ ସକ୍ଷମ ଥିବା ଯାଏ, ତାର ବିକାଶରେ ସେ ଯେପରି ସମାଜ, ଅନୁଷ୍ଠାନ ଓ ରାଷ୍ଟ୍ରର ସହାୟତା ପାଇ ପାରିବ ଏବଂ ସେ ଯେପରି ସମାଜର ଶୀର୍ଷ ସ୍ଥାନକୁ ନିଜର ଯୋଗ୍ୟତାକୁ ବଳରେ ଉଠିପାରିବ ସେଥି ସକାଶେ ମାନବୀୟ ସମ୍ବଳର ସଂପୂର୍ଣ୍ଣ ସଦୁପଯୋଗ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଛି । ନବୋଦୟ ଶିକ୍ଷାନୁଷ୍ଠାନ ଗୁଡ଼ିକ ଏହି ଉଦ୍ଦେଶ୍ୟରେ ପୂର୍ଣ୍ଣତା ଦିଗରେ କାର୍ଯ୍ୟ କରିବା ଲାଗି ଅଭିପ୍ରେତ ।

ଗଣତାନ୍ତ୍ରିକ ଶାସନରେ ବ୍ୟକ୍ତି ଅନେକ ମର୍ଯ୍ୟାଦାର ଅଧିକାରୀ । ସେ କେବଳ ସମାଜ ଓ ରାଷ୍ଟ୍ରର ସୁରକ୍ଷା, ସହାୟତା ଓ ସମ୍ମାନ ପାଇବ ନାହିଁ, ସମାଜ ଓ ରାଷ୍ଟ୍ରକୁ ସୁଦୃଢ଼ ଏବଂ ଶକ୍ତିଶାଳୀ କରିବା ସକାଶେ ଅକୁଣ୍ଠିତ ଚିତ୍ତରେ ନିଜର କର୍ତ୍ତବ୍ୟ କରିଯିବ । ବ୍ୟକ୍ତି ତଥା ଗୋଷ୍ଠୀ ଜୀବନରେ ଏହି ସଚେତନତାକୁ ସ୍ଥାୟୀ ଓ ପ୍ରସାରିତ କରିବା ସୂଚନା ଓ ଲୋକସଂପର୍କ ବିଭାଗର କାର୍ଯ୍ୟ । ସେ ଦିଗରେ ଅଧିକ ତତ୍ପରତା ପ୍ରକାଶ ପାଉଛି ।

ଭିତ୍ତିଭୂମିର ଆବଶ୍ୟକୀୟ ବିକାଶ ହୋଇ ପାରିନଥିବା କାରଣରୁ ଓଡ଼ିଶାର ସାମାଜିକ ଜୀବନରେ ସଂହତି ଓ ସମନ୍ୱୟ ସ୍ଥାପନ କରିବାରେ ଯେପରି ପ୍ରତିବନ୍ଧକ ସୃଷ୍ଟି ହେଉଥିଲା ସେହିପରି ଅର୍ଥନୈତିକ ପ୍ରଗତି ବାଧାପ୍ରାପ୍ତ ହେଉଥିଲା । ଏଇ ଦଶନ୍ଧିର ପ୍ରାରମ୍ଭରୁ ଏଇ ଅଭାବ ଦୂର କରିବା ପାଇଁ ସଂକଳ୍ପବଦ୍ଧ ଉଦ୍ୟମ ଆରମ୍ଭ କରାଯିବା ଫଳରେ ଆଜି ଯୋଗାଯୋଗ, ସଡ଼କ ଓ ରେଳପଥ ବିକାଶ ହେବା ସଙ୍ଗେସଙ୍ଗେ ଜମି, ଜଳ, ପ୍ରଶିକ୍ଷଣପ୍ରାପ୍ତ କୁଶଳୀ ବ୍ୟକ୍ତି, ପରିଚାଳନା ଶିକ୍ଷା ପ୍ରାପ୍ତ ବ୍ୟକ୍ତିର ଅଭାବ ନାହିଁ । ବିଦ୍ୟୁତ୍‌ଶକ୍ତିର ଉପଯୋଗ ବୃଦ୍ଧି ପାଇବା ଯୋଗୁ ଏବଂ ଭିତ୍ତିଭୂମିର ପ୍ରସାର ସହିତ ଶିଳ୍ପ ଓ କୃଷିର ବିକାଶରେ ଏହାର ଆବଶ୍ୟକତା ଆହୁରି ବୃଦ୍ଧି ପାଉଥିବାରୁ, ବିଦ୍ୟୁତଶକ୍ତିରେ ସ୍ୱାବଲମ୍ବୀ ହେବା ଲାଗି ବହୁତ ପ୍ରକଳ୍ପଗୁଡ଼ିକୁ ସଂପୂର୍ଣ୍ଣ କରିବା ସଙ୍ଗେସଙ୍ଗେ ସମୟ ସୀମା ମଧ୍ୟରେ ତାଳଚେର ତାପବିଦ୍ୟୁତ ଓ ବୁକଗଲ ନଗର ଜଳ ବିଦ୍ୟୁତ ଉତ୍ପାଦନ କେନ୍ଦ୍ରଗୁଡ଼ିକ ମଞ୍ଜୁର ହୋଇ କାର୍ଯ୍ୟ ଆରମ୍ଭ ହୋଇଛି । ଆଗାମୀ ୫ ବର୍ଷ ମଧ୍ୟରେ ଏହି ପ୍ରକଳ୍ପଗୁଡ଼ିକ ସଂପୂର୍ଣ୍ଣ ହେଲେ ଏବଂ ଇନ୍ଦ୍ରାବତୀ, ଅପର କୋଲାବ ପ୍ରଭୃତି ପ୍ରକଳ୍ପ ଗୁଡ଼ିକର କାର୍ଯ୍ୟ ସଂପୂର୍ଣ୍ଣ ହେଲେ ଓଡ଼ିଶାରେ ଶିଳ୍ପ ବିକାଶ, ଉଠାଜଳସେଚନ ଓ ଆନୁସଙ୍ଗିକ କାର୍ଯ୍ୟ ତ୍ୱରାନ୍ୱିତ ହେବ । କୃଷି ଉତ୍ପାଦନ ବହୁ ବର୍ଷ ଧରି ପ୍ରାୟ ଏକ ପ୍ରକାର ରହିଥିଲା । ଜଳସେଚନର ପ୍ରସାର, ଉନ୍ନତ ବିହନ, ସାର ଓ କୀଟନାଶକ ଔଷଧ ପ୍ରୟୋଗ ଓ କୃଷି କ୍ଷେତ୍ରରେ ଯନ୍ତ୍ରର ପ୍ରୟୋଗ ଓ ବୈଜ୍ଞାନିକ ପ୍ରଣାଳୀରେ ଅର୍ଥକରୀ ଶସ୍ୟ ଉତ୍ପାଦନ ପାଇଁ ଅଧିକ ଧ୍ୟାନ ଦେବା ଫଳରେ ଏବଂ କାର୍ଯ୍ୟରେ ନୂତନ ପଦ୍ଧତି ଅବଲମ୍ବନ କରାଯିବାରେ, ଶସ୍ୟବୀମା ପ୍ରଚଳନ ଏବଂ ଅଧିକ ଫଳଦାୟକ ଶସ୍ୟର ପ୍ରସାର ଫଳରେ କୃଷି ଉତ୍ପାଦନ କେବଳ ବୃଦ୍ଧି ପାଇନାହିଁ, ଏକର ପ୍ରତି ଉତ୍ପାଦନ ମଧ୍ୟ ବୃଦ୍ଧି ପାଉଛି । ଓଡ଼ିଶା ଏକ କୃଷି ପ୍ରଧାନ ରାଜ୍ୟ ହୋଇଥିବାରୁ କୃଷିର ବିକାଶ ନିମନ୍ତେ ଯୋଜନାବଦ୍ଧ ଭାବରେ କାର୍ଯ୍ୟ କରାଯାଉଛି । ତୈଳବୀଜ ଓ ଡାଲି ଜାତୀୟ ଫସଲ ଅମଳ କରିବା ଉପରେ ଅଧିକ ଧ୍ୟାନ ଦିଆଯାଉଛି, କାଜୁ, ଚା, କଫି ପ୍ରଭୃତି ଅର୍ଥକରୀ ଶସ୍ୟ ଉତ୍ପାଦନ ବୃଦ୍ଧିକରିବା ପାଇଁ ପ୍ରଶାସନିକ ସହାୟତା ଓ ସହଯୋଗ ଯୋଗାଇ ଦିଆଯାଉଛି ।

ହଜାର ଦିନରେ ହଜାରେ ଶିଳ୍ପ ସ୍ଲୋଗାନ ଏଇ ଦଶନ୍ଧିର ପ୍ରାରମ୍ଭରେ ଦିଆଯାଇଥିଲା । ଓଡ଼ିଶାରେ ଶିଳ୍ପ ପ୍ରସାର କରି ଶିକ୍ଷିତ ଓ ଅଶିକ୍ଷିତ ବେକାରୀ ସମସ୍ୟା ଦୂର କରିବା ଓ ଓଡ଼ିଶାରେ ଥିବା ପ୍ରଚୁର କଞ୍ଚାମାଲର ସୁଉପଯୋଗ କରିବା ପାଇଁ ଏହି ସ୍ଲୋଗାନକୁ କାର୍ଯ୍ୟରେ ପରିଣତ କରିବା ଫଳରେ ଆଜି ଓଡ଼ିଶାର ସର୍ବତ୍ର ଛୋଟ ବଡ଼ ଶିଳ୍ପ ଗଢ଼ି ଉଠିଛି ଏବଂ ଓଡ଼ିଶା ବାହାରକୁ ଚାଲିଯାଉଥିବା ହଜାର ହଜାର ଯୁବକ ଓ ଶ୍ରମିକ ଓଡ଼ିଶା ଭିତରେ କଳକାରଖାନାରେ ନିଯୁକ୍ତି ପାଇ ରହିଯାଉଛନ୍ତି । ଓଡ଼ିଶାର ବିପ୍ଳବଜୟର ରୂପ ବଦଳିବାରେ ଲାଗିଛି । ଏହାର ପ୍ରମାଣ ନୂତନ ଶିଳ୍ପାୟନ ପ୍ରଶିକ୍ଷଣ କେନ୍ଦ୍ର ଓ ଅନ୍ୟାନ୍ୟ ଭିତ୍ତିଭୂମିର ପ୍ରସାର ସର୍ବତ୍ର ଦୃଷ୍ଟି ଗୋଚର ହୁଏ । କୃଷି ପ୍ରଧାନ ରାଜ୍ୟରେ ଜନଶକ୍ତିର ସଂପୂର୍ଣ୍ଣ ବିନିଯୋଗ ବିଭିନ୍ନ ଧନ୍ଦା ଓ ବୃତ୍ତିର ପ୍ରଚଳନ ସହିତ କୁଟୀର ଶିଳ୍ପର ପ୍ରସାର ଓ ବିଭିନ୍ନ ଗଠନମୂଳକ ନିର୍ମାଣ କାର୍ଯ୍ୟ ହାତକୁ ନେବା ଦ୍ୱାରା ହୋଇ ପାରିବ । ଏଥିସକାଶେ ଅଙ୍ଗୀକାରବଦ୍ଧ ଉଦ୍ୟମ ଜାରି ରହିଛି । ଓଡ଼ିଶାର ପାରଂପରିକ କଳା ଜଗତ ବିଖ୍ୟାତ । କଳାର ବିକାଶ ନିମନ୍ତେ ପ୍ରୋତ୍ସାହନ ଦିଆଯିବା ସଙ୍ଗେସଙ୍ଗେ ଓଡ଼ିଶାର କାରିଗରମାନଙ୍କ ଦ୍ୱାରା ପ୍ରସ୍ତୁତ ସାମଗ୍ରୀ ଓଡ଼ିଶା ବାହାରେ ଓ ବିଦେଶରେ ଯେପରି ସହଜରେ ବିକ୍ରୟ ହୋଇ ପାରିବ, ସେଥିପାଇଁ ବ୍ୟବସ୍ଥା କରାଯାଉଛି । ସମବାୟର ଭିତ୍ତିଭୂମି ସୁଦୃଢ଼ କରାଯାଇ ଅର୍ଥନୈତିକ ଓ ସାମାଜିକ କ୍ଷେତ୍ରରେ ଏହାର ପ୍ରସାରକୁ ଅଗ୍ରାଧିକାର ଦିଆଯାଉଛି ।

ଶିଳ୍ପର ବିକାଶ ସହିତ ସହର ଗୁଡ଼ିକର ସମସ୍ୟା ବୃଦ୍ଧି ପାଇବା ଫଳରେ ସେଇ ସମସ୍ୟା ସମାଧାନ କରିବା କେବଳ ନଗର ଉନ୍ନୟନର କାର୍ଯ୍ୟ ହୋଇ ରହିନାହିଁ । ଓଡ଼ିଶାରେ ସୃଷ୍ଟି ହୋଇଥିବା ନୂତନ ବିକାଶ କେନ୍ଦ୍ରଗୁଡ଼ିକରେ ଶିକ୍ଷା, ସ୍ୱାସ୍ଥ୍ୟ, ସାମାଜିକ ଜୀବନ ଯେପରି ଅବ୍ୟାହତ ଭାବରେ ବିକାଶ ଲାଭ କରେ ସେଥିପ୍ରତି ଗୁରୁତ୍ୱ ଦିଆଯାଉଛି । ରାଜ୍ୟର ସୀମିତ ସମ୍ବଳ ଅଗ୍ରୁଆ ଲୋକଙ୍କ ପାଇଁ ଉପଯୋଗ ନହୋଇ ଦୁର୍ବଳ ଶ୍ରେଣୀର ଓ ଗ୍ରାମରେ ରହୁଥିବା ଲୋକମାନଙ୍କର କଲ୍ୟାଣ ନିମନ୍ତେ ଯେପରି ଉପଯୋଗ ହୁଏ, ସେଥିନିମନ୍ତେ ଧ୍ୟାନ ଦିଆଯାଉଛି ଏବଂ ଶିକ୍ଷା, ସ୍ୱାସ୍ଥ୍ୟ ସହିତ ସମାଜକଲ୍ୟାଣ କାର୍ଯ୍ୟର ପ୍ରସାର ସହର ବାହାରେ ଅଧିକ ହେବାରେ ଲାଗିଛି । ଏହି ସବୁ କାର୍ଯ୍ୟର ସଫଳତା ଜନସହଯୋଗ ଉପରେ ନିର୍ଭର କରୁଥିବାରୁ ସେ ଦିଗରେ ଅଧିକ ପ୍ରୟତ୍ନ ଓ ପ୍ରଚେଷ୍ଟା କରାଯାଉଛି ।

ଓଡ଼ିଶା ଭାରତର ଏକ ଅବିଭାଜ୍ୟ ଅଂଶ । ଏହାର ତେରଟି ଜିଲ୍ଲାର ପ୍ରାୟ ତିନିକୋଟି ଲୋକଙ୍କ ମଧ୍ୟରୁ ଦୁଇ ତୃତୀୟାଂଶରୁ ଅଧିକ ଦାରିଦ୍ର୍ୟର ସୀମାରେଖା ତଳେ ବହୁକାଳ ନିପୀଡ଼ିତ ହେଉଥିଲେ । ସେମାନଙ୍କୁ ଦାରିଦ୍ର୍ୟର କଶାଘାତ ଓ ବଂଚନା ମଧ୍ୟରୁ ଉଦ୍ଧାର କରିବା ଲାଗି ଯେଉଁ ସାଧୁ ଉଦ୍ୟମ ଅବ୍ୟାହତ ରହିଛି ତାର ମନ୍ଥର ଗତିକୁ ଦ୍ରୁତ କରାଯାଇଛି । ଫଳରେ ଦାରିଦ୍ର୍ୟର ସୀମାରେଖା ତଳେ ଥିବା ପ୍ରାୟ ଅଶୀଭାଗ ଲୋକଙ୍କ ସଂଖ୍ୟା ଏବେ ପଷ୍ଟଣକୁ ଖସି ଆସିବାର କୁହାଯାଉଛି । ଏହା ଏକ କ୍ରମାଗତ ପ୍ରଚେଷ୍ଟା ଏବଂ ଏଥିରେ ବିରତି ବା ବିରାମ ନାହିଁ । ଏହି ଉଦ୍ୟମ ଆହୁରି ଶକ୍ତିଶାଳୀ ହେବ ଆଗାମୀ ଦିନମାନଙ୍କରେ ।

ଅଖଣ୍ଡ ଭାରତର ଜନସାଧାରଣଙ୍କ ମଧ୍ୟରେ ଧର୍ମ, ଜାତି, ବର୍ଣ୍ଣ ଓ ବର୍ଗ ନିର୍ବିଶେଷରେ ପ୍ରୀତି ଓ ସୌହାର୍ଦ୍ଦ୍ୟ ରହିବା ଯେପରି ବାଂଛନୀୟ, ଏକ ସୁଦୃଢ଼

ଗଣ୍ଡିର ବନ୍ଧନରେ ସେମାନଙ୍କୁ ବାନ୍ଧିରଖିବା ଲାଗି ପ୍ରୟାସ ହେବା ମଧ୍ୟ ପ୍ରୟୋଜନ । ଆଜି ଦେଶର ବିଭିନ୍ନ ସ୍ଥାନରେ ଆଞ୍ଚଳିକତା, ମୌଳିକତାବାଦ ଓ ସଂକୀର୍ଣ୍ଣ ଶ୍ରେଣୀ ସଂଘର୍ଷ ଯେପରି ତୀବ୍ର ହେବାରେ ଲାଗିଛି, ତାହା ଦେଖିଲେ ଏ ଜାତିର ଐକ୍ୟ ଓ ସଂହତି ଯେ ବିପନ୍ନ ହେବାକୁ ବସିଛି ତାହା ଅନୁମାନ କରାଯାଇପାରେ । ଏହା ବିରୁଦ୍ଧରେ ସଚେତନ ସଂଘବଦ୍ଧ ଉଦ୍ୟମ ହେବା ଆବଶ୍ୟକ । ସୁଖର ବିଷୟ ଯେ ଏପରି ବିପର୍ଯ୍ୟୟ ଓଡ଼ିଶାକୁ ଗ୍ରାସ କରି ପାରିନାହିଁ ଏବଂ ଏ ରାଜ୍ୟର ଜନସାଧାରଣଙ୍କ ମଧ୍ୟରେ ପ୍ରୀତି ଓ ଭାତୃତ୍ୱ ଭଣାଅଧିକେ ବିରାଜମାନ କରୁଛି । ସାଂପ୍ରଦାୟିକତା, ସଂକୀର୍ଣ୍ଣ ଆଞ୍ଚଳିକତା ଓ ଗୋଷ୍ଠୀ ସଚେତନତା ଏଠାରେ ଉଗ୍ର ରୂପ ଧାରଣ କରିନାହିଁ । ଓଡ଼ିଶାର ଜନ ଜୀବନରେ ସର୍ବାଧିକ ବିକାଶର ଅନୁକୂଳ ହେବାଭଳି ଶାନ୍ତି, ସଂହତି ଓ ସୃଜନଶୀଳତା ରହିଅଛି । ଏହା ଯେ କୌଣସି ଶାସନ ପକ୍ଷରେ ଗର୍ବ ଓ ଗୌରବର ବିଷୟ । ଜାତୀୟ ଐକ୍ୟ ଓ ସଂହତିକୁ ସୁଦୃଢ଼ କରିବା ସକାଶେ ଓଡ଼ିଶାର ଅବଦାନ ଅବହେଳାର ବିଷୟ ନୁହେଁ ।

ଦିନେ ହୀନମନ୍ୟତା ଓଡ଼ିଆର ସ୍ୱାଭିମାନ ଓ ମର୍ଯ୍ୟାଦାବୋଧକୁ ମ୍ରିୟମାଣ କରି ରଖିଥିଲା । ବହୁ ଶତାବ୍ଦୀ ଧରି ଐତିହାସିକ କାରଣରୁ ଏପରି ନିର୍ଯ୍ୟାତିତ ଓ ଅବହେଳିତ ଜୀବନ ଯାପନ କରିବା ପରେ ଓଡ଼ିଆ ଜାତି ଅତୀତର ବୀରତ୍ୱ ମର୍ଯ୍ୟାଦାବୋଧ ଓ ସଚେତନତା ଫେରି ପାଉଛି ଯେପରି ସେଥିପାଇଁ ଓଡ଼ିଆମାନଙ୍କୁ ଓଡ଼ିଶା ବାହାରେ ଭାରତର ବିଭିନ୍ନ ରାଜ୍ୟ ଓ ଅନୁଷ୍ଠାନରେ ଏବଂ ବିଦେଶରେ ବହୁ ସଂସ୍ଥାରେ କାର୍ଯ୍ୟରତ ଅବସ୍ଥାରେ ଦେଖିବାକୁ ମିଳୁଛି । ଓଡ଼ିଶାର ଲୋକ ଓଡ଼ିଆ ବୋଲି ପରିଚୟ ଦେବାରେ ଆଉ କୁଣ୍ଠାବୋଧ କରୁନାହାନ୍ତି, ବରଂ ଉଦୀୟମାନ ସୂର୍ଯ୍ୟପରି ଏକ ନୂତନ ଆବିର୍ଭାବ ହେଉଥିବା ଉଜ୍ଜ୍ୱଳତାର ଦୀପ୍ତି ମାଖି ସେମାନେ ଦେଶର ଗର୍ବର କାରଣ ହେବାକୁ ଲାଗିଛନ୍ତି । ଓଡ଼ିଆମାନଙ୍କର ହୃତ ଗୌରବ ଫେରି ଆସିନି ସତ୍ୟ, କିନ୍ତୁ ସେହି ପଥରେ ଯାତ୍ରାରମ୍ଭରେ ଯେଉଁ ସଂକଳ୍ପ, ନିର୍ମଳ ଦୂରଦୃଷ୍ଟି ଏବଂ ନିଷ୍ଠା ପ୍ରାଣକୁ ଉଜ୍ଜୀବିତ କରିବା କଥା ତାହାତ ଆଉ ସ୍ୱପ୍ନର ବସ୍ତୁ ହୋଇ ରହିନାହିଁ; ବାସ୍ତବରେ ରୂପାନ୍ତରୀତ ହେବାରେ ଲାଗିଛି । ଏହାହିଁ ଏ ଦଶନ୍ଧିର ଅନ୍ୟାନ୍ୟ ସଫଳତା । ଏହି ଆତ୍ମପ୍ରତ୍ୟୟ ଉପରେ ଗଢି ଉଠିବ ଆଗାମୀ ଦିନର ଓଡ଼ିଶା, ଯେଉଁଠାରେ ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ପ୍ରୀତି ଓ ମମତ୍ୱବୋଧ, ଉନ୍ମେଷଶୀଳ ଜୀବନ ସୃଷ୍ଟି କରିବ ନବ ନବ ଆବିଷ୍କାର । ସୁଖ ସ୍ୱପ୍ନର ବିଷୟ ନହୋଇ ସାକାର ହେବ ବାସ୍ତବରେ ।

**ଆଠ ଦଶବର୍ଷ ଗୋଟିଏ ଦେଶର ପୁନର୍ନିର୍ମାଣ ପାଇଁ ଯଥେଷ୍ଟ ନୁହେ । କିନ୍ତୁ ଏହି ସମୟ ମଧ୍ୟ ଅତି ତୁଚ୍ଛ ନୁହେଁ । ଯେଉଁ କାମ ଏଯାଏ ହୋଇଛି ଏବଂ ଯାହା ହେବାକୁ ଯାଉଛି ସେଗୁଡ଼ିକୁ ବିଶ୍ଳେଷଣ କରି ଯାହା ହୋଇ ନପାରିଲା ତାହା କିପରି କରିବାକୁ ହେବ ସେ ବିଷୟ ଚିନ୍ତା କରିବାକୁ ପଡ଼ିବ । ଭୁଲ ତ୍ରୁଟିର ସଂଶୋଧନ କରିବାକୁ ପଡ଼ିବ ସାହସର ସହିତ । ଯିଏ କାମକରେ ସିଏ ଭୁଲ ମଧ୍ୟ କରେ । ଯିଏ କିଛି କରେନାହିଁ ସେ ଭୁଲ ହୁଏତ କରେନାହିଁ କିନ୍ତୁ ସେପରି ଜୀବନ ଓ ସମୟର ମୂଲ୍ୟ କଅଣ ଥାଇପାରେ ? ଚତୁର୍ଦ୍ଦିଗରେ** ଯେଉଁ କର୍ମଯଜ୍ଞ ଚାଲିଛି ସେଥିପାଇଁ ନୂତନ ପ୍ରେରଣା, ନୂତନ କର୍ମ ସଂସ୍କୃତି ସୃଷ୍ଟି କରିବାକୁ ପଡ଼ିବ । ଏହା କେବଳ ବଚନ ଦ୍ୱାରା ହୋଇପିବ ନାହିଁ. ଏଥିପାଇଁ କାର୍ଯ୍ୟ କରିବାକୁ ପଡ଼ିବ । ପରଶ୍ରୀକାତରତା ଅନଗ୍ରସରତାର ଅନ୍ୟ ଏକ କାରଣ । ଏହାକୁ ହୀନମନ୍ୟତା ପରି ଜନଜୀବନରୁ ବହିଷ୍କାର କରିବାକୁ ହେବ । ନିରନ୍ତର ଉଦ୍ୟମ ଦ୍ୱାରା, ଉଚିତ ସଂସ୍କୃତିକୁ ଆଚରଣଗତ କରିବା ଦ୍ୱାରା ଆମେ ଜନଜୀବନରୁ ଶିଥିଳତା, କୁସଂସ୍କାର ଓ ଅଜ୍ଞତା ଦୂର କରିପାରିବା ।

ରାଜନୈତିକ ଓ ସାମାଜିକ ଜୀବନ ଯେତେବେଳେ ଅନୁଶାସନଠାରୁ ଦୂରକୁ ଘୁଞ୍ଚି ଯାଇଛି ସେତେବେଳେ ଦେଶରେ ବିଶୃଙ୍ଖଳା ଓ ବିପର୍ଯ୍ୟୟ ଦେଖା ଦେଇଛି । ଦେଶରେ ଯେଉଁ ଅସ୍ଥିରତା, ଅଶାନ୍ତି, ହିଂସାଚରଣ, ଉଗ୍ର ଆତଙ୍କବାଦ ବର୍ତ୍ତମାନ ଦେଖାଯାଉଛି ଏହାର କାରଣ ରାଜନୈତିକ ଜୀବନରୁ ଦୂରଦୃଷ୍ଟି ଓ ଜନସେବାର ଆଗ୍ରହ ଉଭେଇ ଗଲାଣି । ଏଥିପାଇଁ ଜଣେ ବା କେତେକ ମୁଷ୍ଟିମେୟ ଲୋକଙ୍କୁ ଦାୟୀ କରା ନଯାଇ ପାରେ । ନୈତିକତା ଓ ମୂଲ୍ୟବୋଧ ହ୍ରାସପାଇଲେ ଦୁର୍ନୀତି ପଶୁଥିବା ବେଳେ ଜଣକୁ ବା ଅଳ୍ପ କେତେ ଜଣଙ୍କୁ ଦାୟୀ କରି ଆତ୍ମସନ୍ତୋଷ ଲାଭ କରିବାର କୌଣସି ଅର୍ଥ ନାହିଁ । ମୂଲ୍ୟଗୁଡ଼ିକୁ, ଆଦର୍ଶଗୁଡ଼ିକୁ ସୃଷ୍ଟି କରିବା ଲାଗି ଯେପରି ତପସ୍ୟା ଓ ତ୍ୟାଗ କରାଯାଇଥିଲା, ସେଗୁଡ଼ିକର ସୁରକ୍ଷା ଓ ଜନ ଜୀବନରେ ସେଗୁଡ଼ିକର ପ୍ରଚଳନ ସକାଶେ ସେହିପରି ତପସ୍ୟା ଓ ତ୍ୟାଗ କରିବାକୁ ପଡ଼ିବ । ଯେଉଁମାନେ ଶିକ୍ଷିତ ଓ ଅଗ୍ରଣୀ, ଯେଉଁମାନେ ନେତା, ସମାଜ ବା ଶାସନକର୍ତ୍ତା ସେମାନଙ୍କୁ ପ୍ରଥମେ ଆଦର୍ଶ ଜୀବନ ଯାପନ କରିବାକୁ ପଡ଼ିବ । ଗୀତାରେ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି ଯେ ଯେପରି କରିବେ ଲୋକମାନେ ତାଙ୍କୁ ସେହିପରି ଅନୁସରଣ କରିବେ । ଯେଉଁମାନେ ଶାସନ, ସମାଜ, ସଂସ୍କାର ପରିଚାଳକ ସେମାନଙ୍କୁ ତ୍ୟାଗ କରିବାକୁ ପଡ଼ିବ । ଜନ ଜୀବନରେ ନୈତିକତା, ମୂଲ୍ୟବୋଧ ଓ ସାଂସ୍କୃତିକ ଚେତନା ସୃଷ୍ଟି କରିବା ଉଦ୍ଦେଶ୍ୟରେ ସେମାନଙ୍କୁ ଦୃଷ୍ଟାନ୍ତ ରଖିବାକୁ ପଡ଼ିବ । ବର୍ତ୍ତମାନ ଜନସେବା ଓ ଜନଜୀବନରେ ଯେଉଁ ନୀତି ବିଚ୍ୟୁତି ପ୍ରବେଶ କରିଛି, ତାକୁ ବହିଷ୍କାର କରିବା ସଙ୍ଗେସଙ୍ଗେ ଯେଉଁ ଶୁଦ୍ଧତା, ଉଦାରତା ଓ ନୈତିକତା ଆଚରଣଗତ ହେବା ବାଞ୍ଛନୀୟ ତାହା ପ୍ରତିପାଦନ କରିପାରିଲେ ଜନଜୀବନ ଆହୁରି ନିର୍ମଳ, ଜନସେବା ଆହୁରି ପ୍ରେରଣା ଦାୟକ ଏବଂ ଶାସନ ଆହୁରି ଲୋକପ୍ରିୟ ହେବ । ଏ ଦିଗରେ ଶୁଭ ସୂଚନା ଦେଖିବାକୁ ମିଳୁଛି । ପ୍ରଶାସନ କଳକୁ ଜନସ୍ୱାର୍ଥର ସୁରକ୍ଷା ନିମନ୍ତେ ବ୍ୟବହାର କରିବା ନୀତି ଗୃହୀତ ହୋଇଛି । ଯାତ୍ରାରମ୍ଭରେ ଯାତ୍ରା ଶେଷର କ୍ଲାନ୍ତି ନଥାଏ । ଶୁଭମୁହୂର୍ତ୍ତରେ ଦେଶ ନିର୍ମାଣର ଯେଉଁ ଜୟଯାତ୍ରା ଆରମ୍ଭ ହୋଇଛି ସେଥିରେ ଦଳମତ ନିର୍ବିଶେଷରେ ଆବାଳବୃଦ୍ଧବନିତା କାୟମନୋବାକ୍ୟରେ ଅଂଶଗ୍ରହଣ କରି ଦେଶ ଓ ଦଶର ସେବା କରିବାର ସୁଯୋଗ ଗ୍ରହଣ କଲେ, ଏ ଜାତିର ସୌଭାଗ୍ୟ ଓ ସମୃଦ୍ଧିକୁ ଅନ୍ୟ କୌଣସି ଶକ୍ତି ପ୍ରତିହତ କରି ପାରିବ ନାହିଁ । କାଳେ ଆମେ ଭୁଲି ଯିବା ସେଥିପାଇଁ ଯାହା ହୋଇଛି ତାହା ଲିପିବଦ୍ଧ କରିବା ବେଳେ ଯାହା ହୋଇନାହିଁ ତାହା ସୂଚନା ଦେଇ ଏ ପ୍ରବନ୍ଧ ସାଙ୍ଗ କରୁଛି ।

୯, ଷ୍ଟେସନ ସ୍କୋୟାର,
ଭୁବନେଶ୍ୱର ।

ଆମେ କି କି ଫସଲ କରିବା, ସେଥିପାଇଁ କେତେପାଣି ଦରକାର ହେବ, ପାଣିର ସୁପରିଯୋଜନା କିପରି ହେବ ଏବଂ ପ୍ରତ୍ୟେକ ଗାଁର ଜମିରେ ବିନା ବିବାଦରେ ପାଣି ଯେପରି ମାଡ଼ି ପାରିବ, ଏସବୁ ବିଷୟ ଇଂଜିନିୟର, କୃଷି ବିଶେଷଜ୍ଞ ଓ ଚାଷୀମାନଙ୍କର କମିଟି ଏକାଠି ବସି ଆଲୋଚନା ମାଧ୍ୟମରେ ସ୍ଥିର କରିବା ଉଚିତ ହେବ । ଏହା ଦ୍ୱାରା ଅନେକ ସମସ୍ୟାର ସମାଧାନ ହୋଇ ପାରିବ ।



# ରାଜ୍ୟରେ କୃଷିର ବିକାଶ କ୍ଷେତ୍ରରେ ଉଠା ଜଳସେଚନ ନିଗମର ଭୂମିକା

**ଶ୍ରୀ ମଦନ ମୋହନ ମହାନ୍ତି**

ଗତ ବର୍ଷ (୧୯୮୭-୮୮) ର ଅନାବୃଷ୍ଟି ଜନିତ ପରିସ୍ଥିତି ଖାଲି ଆମ ରାଜ୍ୟର ନୁହେଁ ସାରା ଦେଶର ବହୁ ଅଂଚଳର କୃଷି କ୍ଷେତ୍ରରେ ଉତ୍ପାଦିତ ଶକ୍ତିକୁ ବହୁଳ ଭାବରେ ହ୍ରାସ କରି ଦେଇଛି । ରାଜ୍ୟର ବହୁଳ ଅଂଚଳରେ ବର୍ଷାକାଳୀନ ଫସଲ ଚରମ ବିପର୍ଯ୍ୟୟର ସମ୍ମୁଖୀନ ହୋଇଛି । ଯେତେବେଳେ ରାଜ୍ୟର ବ୍ୟାପକ ଅଂଚଳରେ ବିଶେଷତଃ ଗଞ୍ଜାମ ଜିଲ୍ଲା, କୋରାପୁଟ ଜିଲ୍ଲା, କଳାହାଣ୍ଡି ଜିଲ୍ଲା ଓ ବଲାଙ୍ଗୀର ଜିଲ୍ଲା ପ୍ରଭୃତି ଅଂଚଳରେ ବିସ୍ତୀର୍ଣ୍ଣ ସ୍ବସ ଜମି ଶୁଷ୍କ ହୋଇ ପଡିଥାଏ, ତନ୍ମଧ୍ୟରୁ କେତେକ ସ୍ଥାନରେ ସବୁଜିମା ଘେରା କୃଷିକ୍ଷେତ୍ରମାନ ମରୁଭୂମିରେ ଓଏସିସ୍ ଭଳି ପ୍ରତୀୟମାନ ହେଉଥାଏ । ଏଗୁଡିକ ଥିଲା ଉଠା ଜଳସେଚନ ଯୋଜନାର ସେଚ ଜମି, ଅନାବୃଷ୍ଟି ହେତୁ କ୍ଷୁଦ୍ର ଜଳ ସେଚନ ଯୋଜନା ଗୁଡିକ ଅଧିକାଂଶ କ୍ଷେତ୍ରରେ ପାଣି ଯୋଗାଇବାକୁ ସକ୍ଷମ ହୋଇ ପାରି ନଥିଲା । କେନାଲମାନଙ୍କ ମଧ୍ୟରୁ ପର୍ଯ୍ୟାପ୍ତ ପରିମାଣରେ ପାଣି ଯୋଗାଇ ଦିଆଯାଇ ପାରି ନଥିଲା । ଏହି ଦୁଃସ୍ଥିତି ସମୟରେ ଉଠା ଜଳସେଚନ ଯୋଜନାଗୁଡିକ କୃଷୀର ସହାୟ ରୂପରେ ଏକ ଗୁରୁତ୍ବପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ।

ଆମ ରାଜ୍ୟରେ ଉଠା ଜଳସେଚନ ବିକାଶ ମାତ୍ର ଗତ ୨୫ବର୍ଷ ମଧ୍ୟରେ ହୋଇଛି । ତୃତୀୟ ଯୋଜନା କାଳରେ ଉଠା ଜଳସେଚନ କାର୍ଯ୍ୟକ୍ରମ ଆନୁଷ୍ଠାନିକ ସ୍ତରରେ ପରୀକ୍ଷାମୂଳକ ଭାବେ ହାତକୁ ନିଆଯାଇଥିଲା । ଚତୁର୍ଥ ଯୋଜନା ଶେଷ ବେଳକୁ ରାଜ୍ୟରେ ମାତ୍ର ୧୩୮୦ଟି ଉଠା ଜଳସେଚନ ଯୋଜନା ସ୍ଥାପିତ ହୋଇଥିଲା ଓ ସେଗୁଡିକର ସେଚ ଜମି ପରିମାଣ ଥିଲା ୩୨,୧୦୦ହେକ୍ଟର । ପଂଚମ ଯୋଜନା କାଳରେ ଉଠା ଜଳସେଚନ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ପାଇଁ କେତେକ ନିର୍ଦ୍ଦିଷ୍ଟ ପଦକ୍ଷେପ ନିଆଯାଇଥିଲା । ଏହି କାର୍ଯ୍ୟକ୍ରମକୁ ସଂଗଠିତ କରିବା ପାଇଁ ୧୯୭୩ ମସିହା ଅକ୍ଟୋବର ମାସରେ ଉଠା ଜଳସେଚନ ନିଗମ ଗଠନ କରାଯାଇଥିଲା । ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ତତ୍କାଳୀନ ଏ.ଆର.ଡି.ସି.(ବର୍ତ୍ତମାନର ନାବାଡ) ଜରିଆରେ ଅର୍ଥ ବିନିଯୋଗ କରି ବ୍ୟାପକ ସଂଖ୍ୟାରେ ଉଠା ଜଳସେଚନ ଯୋଜନା ସ୍ଥାପନ କରିବା । ପଂଚମ ଯୋଜନା କାଳରେ ମଧ୍ୟ ଏ ଦିଗରେ ବିଶେଷ ଅଗ୍ରଗତି କରାଯାଇ ପାରି ନ ଥିଲା । ଉକ୍ତ ଯୋଜନା କାଳରେ ମାତ୍ର ୨୬୧୦ଟି ଉଠା ଜଳସେଚନ ଯୋଜନା ସ୍ଥାପିତ ହୋଇଥିଲା ଏବଂ ଉକ୍ତ ଯୋଜନାଗୁଡିକର ସେଚ ଜମିର ପରିମାଣ ଥିଲା ୫୫,୫୨୦ ହେକ୍ଟର । ଏହିପରି ଷଷ୍ଠ ଯୋଜନା ଆରମ୍ଭ ବେଳକୁ ରାଜ୍ୟରେ ୩୨୨୦ଟି ଉଠା ଜଳସେଚନ ସ୍ଥାପନ କରାଯାଇଥିଲା

ଏବଂ ଉକ୍ତ ଯୋଜନା ଗୁଡ଼ିକର ଜମିର ପରିମାଣ ପ୍ରାୟ ୮୭,୬୯୦ ହେକ୍ଟର ।

ଷଷ୍ଠ ଯୋଜନା କାଳରେ ହିଁ ଉଠା ଜଳସେଚନ କ୍ଷେତ୍ରରେ ବ୍ୟାପକ ପ୍ରସାର କରାଯାଇ ପାରିଥିଲା । ଉକ୍ତ ଯୋଜନା କାଳରେ 4253ଟି ନୂତନ ଉଠା ଜଳସେଚନ ଯୋଜନା ସ୍ଥାପିତ ହୋଇଥିଲା ଏବଂ ଏଗୁଡ଼ିକର ସେଚ ଜମିର ପରିମାଣ ଥିଲା ୯୯,7୯0 ହେକ୍ଟର । ଏହା ଫଳରେ ଷଷ୍ଠ ଯୋଜନା ଶେଷ ବେଳକୁ ରାଜ୍ୟରେ ଉଠା ଜଳସେଚନ ଯୋଜନାର ସଂଖ୍ୟା ୮243କୁ ବୃଦ୍ଧି ପାଇଥିଲା । ଏହି ବିକାଶ କ୍ଷେତ୍ରରେ ପ୍ରଧାନ ମନ୍ତ୍ରୀଙ୍କର ବ୍ୟାପକ ଜଳସେଚନ ପାଇଁ ବିଶେଷ କାର୍ଯ୍ୟକ୍ରମ ଉଠା ଜଳସେଚନ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବାରେ ସହାୟକ ହୋଇଥିଲା ।

ସମୟକ୍ରମେ ଉଠା ଜଳସେଚନ ପାଇଁ ଚାଷୀମାନଙ୍କର ବିଶେଷ ଆଗ୍ରହ ପ୍ରକାଶ ପାଇଛି । ଯାହାଫଳରେ ବିଭିନ୍ନ ଜିଲ୍ଲାର ଡି.ଆର.ଡି.ଏ. ଜଳସେଚନର ବିକାଶ ପାଇଁ ମିଳିଥିବା ଅର୍ଥକୁ ଉଠା ଜଳସେଚନ ଯୋଜନା ନିର୍ମାଣ କରିବାରେ ଖଟାଇବା ପାଇଁ ଇଚ୍ଛା ପ୍ରକାଶ କରୁଛନ୍ତି । ଏହି ସମସ୍ତ ବିଷୟ ବିଚାରକୁ ନେଇ ସପ୍ତମ ଯୋଜନା କାଳରେ 5000ଟି ନୂତନ ଉଠା ଜଳସେଚନ ଯୋଜନା ପ୍ରତିଷ୍ଠା କରିବା ପାଇଁ ଏବଂ ପୂର୍ବରୁ ସ୍ଥାପିତ ହୋଇଥିବା ଅସମ୍ପୂର୍ଣ୍ଣ ଯୋଜନା ଗୁଡ଼ିକ ସମ୍ପୂର୍ଣ୍ଣ କରିବା ପାଇଁ ଏକ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଥିଲା । ଏହାଦ୍ୱାରା 1,20,000 ହେକ୍ଟର ଅଧିକ ଜମି ଜଳସେଚିତ ହୋଇ ପାରିବ ବୋଲି ଅଟକଳ କରାଯାଇଥିଲା । ଯୋଜନା କାଳରେ ପ୍ରଥମ 2ବର୍ଷ ମଧ୍ୟରେ 1524ଟି ନୂତନ ଉଠା ଜଳସେଚନ ଯୋଜନା ସ୍ଥାପିତ ହୋଇ ପାରିଥିଲା ଏବଂ ୧୯୮୭-୮୮ ବର୍ଷ 700ରୁ ଅଧିକ ଯୋଜନା ସ୍ଥାପନ କରିବା ପାଇଁ କାର୍ଯ୍ୟକ୍ରମ ରଖାଯାଇଥିଲା ଏବଂ ଏହା ଆସନ୍ତା ଜୁନ୍ ମାସ ଶେଷ ସୁଦ୍ଧା କାର୍ଯ୍ୟକାରୀ ହେବ ବୋଲି ଆଶା କରାଯାଉଛି । ସପ୍ତମ ଯୋଜନା କାଳରେ ଶେଷ ଦୁଇ ବର୍ଷ ଯଥା: ୧୯୮୮–୮୯ ଓ ୧୯୮୯-୯୦କୁ ଜଳସେଚନ ବର୍ଷ ବୋଲି ଘୋଷଣା କରାଯାଇଛି । ଏହାର ପ୍ରଥମ ପଦକ୍ଷେପ ରୂପେ ରାଜ୍ୟର 5ଟି ଜିଲ୍ଲାରେ ଯଥା: କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ ଓ ସମ୍ବଲପୁର ଜିଲ୍ଲାରେ ଧାନ ଉତ୍ପାଦନ ବୃଦ୍ଧି କରିବା କାର୍ଯ୍ୟକ୍ରମ ଅନୁଯାୟୀ ୬୮0ଟି ନୂତନ ଉଠା ଜଳସେଚନ ଯୋଜନା ସ୍ଥାପନ କରିବା ଲାଗି ଏବଂ 3000ରୁ ଅଧିକ ସଂଖ୍ୟକ ଯୋଜନାରେ ସ୍ଥାୟୀ ବଣ୍ଟନ ପ୍ରଣାଳୀ ନିର୍ମାଣ କରିବା ପାଇଁ ଏକ ପ୍ରସ୍ତାବକୁ ମଞ୍ଜୁରୀ ଦେବା ପକାଶେ କେନ୍ଦ୍ର ସରକାର ବିଚାର କରୁଛନ୍ତି । ଉକ୍ତ ବିଶେଷ କାର୍ଯ୍ୟକ୍ରମ ବ୍ୟତୀତ ଡି.ଆର.ଡି.ଏ. ସହାୟତାକ୍ରମେ ଏବଂ ନାବାର୍ଡ ଦ୍ୱାରା ମଞ୍ଜୁରୀ ପ୍ରାପ୍ତ ଅର୍ଥକୁ ବିନିଯୋଗ କରି ଏହି 2 ବର୍ଷ ମଧ୍ୟରେ ଆହୁରି 1500ରୁ ଅଧିକ ଯୋଜନା ସ୍ଥାପିତ ହେବାର ସମ୍ଭାବନା ଅଛି ।

ମରୁଡ଼ି ପରିସ୍ଥିତିକୁ ମୁକାବିଲା କରିବାରେ ଉଠା ଜଳସେଚନ ଯୋଜନା ଗୁଡ଼ିକ ଏକ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିବାରୁ ମରୁଡ଼ି ରିଲିଫ୍ ଜରିଆରେ ମିଳିଥିବା ଅନୁଦାନକୁ ଉଠା ଜଳସେଚନ ଯୋଜନାର ବିକାଶ ପାଇଁ ଖଟାଯାଉଛି । ମୋଟ ମିଳିଥିବା 25.50 କୋଟି ଟଙ୍କାରୁ ଉଠା ଜଳସେଚନ ପାଇଁ 10.57 କୋଟି ଟଙ୍କା ମଞ୍ଜୁର କରାଯାଇଛି । ଉକ୍ତ ଅର୍ଥ ବିନିଯୋଗ କରି 22୮0ଟି ଯୋଜନାରେ ବଣ୍ଟନ ପ୍ରଣାଳୀ ନିର୍ମାଣ କରାଯାଉଛି । 13ଟି ବଡ଼, ବଡ଼, ଯୋଜନା ପୁନରୁଦ୍ଧାର କରାଯାଉଛି ଏବଂ ସଚଳ ହୋଇ ପାରିବା ପ୍ରାୟ 1500ଟି ଅଚଳ ଯୋଜନାକୁ କାର୍ଯ୍ୟକାରୀ କରାଯାଉଛି । ଏହା ବ୍ୟତୀତ ବହୁ ସଂଖ୍ୟକ ଯୋଜନାରେ ଭାଙ୍ଗି ଯାଇଥିବା ପାଣି ନାଳକୁ ମରାମତି କରାଯାଉଛି ।

ଗତ ବର୍ଷ ମରୁଡ଼ି ପରିସ୍ଥିତି ଯୋଗୁଁ ଖରିଫ୍ ଋତୁରେ ମଧ୍ୟ ଚାଷୀମାନେ ଉଠାଜଳ ସେଚନ ଯୋଜନାରୁ ଜଳ ଯୋଗାଇ ଦେବା ପାଇଁ ଚାହିଁ ଥିଲେ । ଗତ ବର୍ଷ ଆରମ୍ଭ ବେଳକୁ ସ୍ଥାପିତ ହୋଇଥିବା ୯767ଟି ଯୋଜନା ମଧ୍ୟରୁ ମାତ୍ର ୮045ଟି ଯୋଜନା କାର୍ଯ୍ୟକ୍ରମ ଅବସ୍ଥାରେ ଥିଲା । ଏଗୁଡ଼ିକ ଦ୍ୱାରା ୯5,420 ହେକ୍ଟର ଜମିକୁ ପାଣି ଯୋଗାଇ ଦେବାର କାର୍ଯ୍ୟକ୍ରମ ରଖାଯାଇଥିଲା । ଏହା ପ୍ରାୟ ଉକ୍ତ ଯୋଜନା ଗୁଡ଼ିକର ସେଚ ଜମିର 50% ଭାଗ । ଅବଶିଷ୍ଟ 50 ଭାଗ କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରାନଯିବାର ପ୍ରଧାନ କାରଣ ହେଲା ଅଧିକାଂଶ ଯୋଜନାରେ ବଣ୍ଟନ ପ୍ରଣାଳୀ ସମ୍ପୂର୍ଣ୍ଣ ହୋଇ ନ ଥିଲା । ମୋଟ ୯767 ଉଠା ଜଳସେଚନ ପ୍ରକଳ୍ପ

ମଧ୍ୟରୁ ପ୍ରାୟ ୬୦୦୦ରୁ ଅଧିକ ଯୋଜନାରେ ବଣ୍ଟନ ପ୍ରଣାଳୀ ସଂପୂର୍ଣ୍ଣ ହୋଇନାହିଁ । ଯୋଜନା ଗୁଡ଼ିକର ସଂଖ୍ୟା ବୃଦ୍ଧି ସଂଗେ ସଂଗେ ଏହାର ସେଚ ଜମିର ବିକାଶ କରିବା ଏକାନ୍ତ ପ୍ରୟୋଜନ । ଏହି ପରିପ୍ରେକ୍ଷୀରେ ବର୍ତ୍ତମାନ କାର୍ଯ୍ୟକ୍ରମରେ ବଣ୍ଟନ ପ୍ରଣାଳୀ ନିର୍ମାଣ ପାଇଁ ଯେଉଁ ଅଗ୍ରାଧିକାର ଏକ ସ୍ୱାଗତ ଯୋଗ୍ୟ ପଦକ୍ଷେପ ।

ଗତ ବର୍ଷ ଖରିଫ୍ ଋତୁରେ 7132ଟି ଯୋଜନା ଚଳାଯାଇ ପ୍ରାୟ 47000 ହେକ୍ଟର ଜମିରେ ଜଳଯୋଗାଇ ଦିଆଯାଇଥିଲା । ଚଳିତ ରବି ଋତୁରେ ବର୍ତ୍ତମାନ ସୁଦ୍ଧା ୫୦୪୯ଟି ଯୋଜନା କରାଯାଇ 75220 ହେକ୍ଟର ଜମିକୁ ଜଳ ଯୋଗାଇ ଦିଆ ଯାଉଛି । ଏହା କାର୍ଯ୍ୟକ୍ରମର ୨୩% ଅଟେ । ପୂର୍ବରୁ କୌଣସି ବର୍ଷ ଏତେ ସଂଖ୍ୟକ ଉଠା ଜଳସେଚନ ଯୋଜନା ସୃଷ୍ଟି ନ ଥିଲା କିମ୍ବା ଏତେ ପରିମାଣ ଜମିକୁ ଜଳ ଯୋଗାଯାଇ ନ ଥିଲା । ମରୁଡ଼ି ପରିସ୍ଥିତି ଦୃଷ୍ଟିରୁ କୃଷୀମାନଙ୍କୁ ସୁବିଧାରେ ଉଠା ଜଳସେଚନ ଯୋଜନାରୁ ପାଣି ଯୋଗାଇ ଦେବା ପାଇଁ କେତେକ ରିହାତି ଦିଆଯାଇଛି ଓ କେତେକ କଟକଣା କୋହଳ କରାଯାଇଛି ।

(1) ଜଳକର 50% ରିହାତି ଦିଆଯାଇଛି ।

(2) 200.00ରୁ ଅଧିକ ବକେୟା ଜଳକର ଅନୁଯାୟୀ ରହିଥିବା ଯୋଜନାଗୁଡ଼ିକୁ ଚାଲୁ ନ କରିବା ପାଇଁ ଥିବା କଟକଣା ଉଠାଇ ଦିଆ ଯାଇଛି ।

(3) ଯେଉଁ ଉଠା ଜଳସେଚନ ଯୋଜନାଗୁଡ଼ିକରୁ ବିଦ୍ୟୁତ୍ ତାର 2 ଥରରୁ ଅଧିକ ତାର ଚୋରି ହୋଇଥିଲା ସେଗୁଡ଼ିକର ଆଉ ବିଦ୍ୟୁତ୍ ତାର ନ ଲଗେଇବା ପାଇଁ ଆଗରୁ ଥିବା ନିଷ୍ପତ୍ତିକୁ ଉଠାଇ ନିଆଯାଇଛି । ଫଳରେ ବହୁବାର ତାର ଚୋରି ଯାଇ ଅଚଳ ଥିବା ଯୋଜନାଗୁଡ଼ିକୁ ମଧ୍ୟ ତାର ଯୋଗାଇ ସଚଳ କରାଯାଇଛି ।

(4) ଯୋଜନା ଚାଲୁ କରିବା ପୂର୍ବରୁ ଏକ ନିର୍ଦ୍ଦିଷ୍ଟ ପରିମାଣ ଜମିରେ ପାଣି ମଡାଇବା ପାଇଁ ଚୁକ୍ତିବଦ୍ଧ ହେବା ଏବଂ ଏକ ନିର୍ଦ୍ଦିଷ୍ଟ ପରିମାଣର ଅଗ୍ରୀମ ଜଳକର ଦାଖଲ କରିବା କଟକଣା ଉଠାଇ ଦିଆଯାଇଛି । ଏହା ଫଳରେ କୃଷୀ ଖୁବ୍ କମ ଜମି ପାଇଁ ମଧ୍ୟ ଯେ କୌଣସି ସମୟରେ ପାଇ ପାରୁଛି ।

(5) ଯୋଜନାଗୁଡ଼ିକୁ ନିର୍ଦ୍ଧାରିତ ସମୟଠାରୁ ଅଧିକ ସମୟ ଚାଲୁ କରାଯାଇ କୃଷୀମାନଙ୍କୁ ପାଣି ଯୋଗାଇ ଦିଆଯାଉଛି ।

ଉଠା ଜଳସେଚନ କ୍ଷେତ୍ରରେ ଯୋଜନାଗୁଡ଼ିକର ରକ୍ଷଣାବେକ୍ଷଣ ଏବଂ ଏଗୁଡ଼ିକରୁ ଜଳ ଯୋଗାଣ ପାଇଁ ଆବଶ୍ୟକ ହେଉଥିବା ଖର୍ଚ୍ଚ ଲାଗି ସରକାରୀ ବଜେଟ୍‌ରେ ପର୍ଯ୍ୟାପ୍ତ ବ୍ୟବସ୍ଥା ନ ଥିବାରୁ ନିଗମ ଆର୍ଥିକ ସଂକଟର ସମ୍ମୁଖୀନ ହୋଇଥିଲା । ଉଠା ଜଳସେଚନ ଯୋଜନାର ରକ୍ଷଣାବେକ୍ଷଣ ପାଇଁ ଯାହା ଅର୍ଥ ଆବଶ୍ୟକ ତାହା ବଜେଟ୍ ଜରିଆରେ ନିଗମକୁ ମିଳି ନଥାଏ ଏବଂ ଜଳକର ବାବଦ ଯେଉଁ ଅର୍ଥ ସଂଗ୍ରହ ହୁଏ ତାହା ସରକାରଙ୍କଠାରେ ଜମା କରାଯାଉଥିଲା । ଏହା ଫଳରେ ନିଗମ ଅନ୍ୟାନ୍ୟ କିଛି ଅର୍ଥ ଉଠା ଜଳସେଚନ ଯୋଜନା ଚଳାଇବା ପାଇଁ ବ୍ୟୟ କରୁଥିଲା । ଏ ସମସ୍ତ ବିଷୟକୁ ନେଇ ସରକାର ନିମ୍ନଲିଖିତ ପଦକ୍ଷେପମାନ ନେଇଛନ୍ତି ।

(1) ଗତବର୍ଷ ଉଠା ଜଳସେଚନ ରକ୍ଷଣାବେକ୍ଷଣ ବାବଦକୁ ଅଧିକ 5 କୋଟି ଟଙ୍କା ମଞ୍ଜୁର କରାଯାଇଛି ।

(2) ଚଳିତ ବର୍ଷ ଯୋଜନା ବ୍ୟୟ ବାବଦକୁ ଅଧିକ 6 କୋଟି ଟଙ୍କା ମଞ୍ଜୁର କରାଯାଇଛି ।

(3) ଉଠା ଜଳସେଚନ ଯୋଜନାରୁ ଜଳକର ବାବଦକୁ ଯେଉଁ ଟଙ୍କା ଆଦାୟ କରାଯାଉଛି ତାହା ସରକାରଙ୍କ ପାଖରେ ଜମା ନ ଦେଇ କର୍ପୋରେସନ୍ ନିଜେ ରଖିବେ ଓ ବ୍ୟୟ କରିବେ ।

ଏହାଫଳରେ ଉଠା ଜଳସେଚନ ନିଗମର ଆର୍ଥିକ ପରିସ୍ଥିତି ଅନେକାଂଶରେ ସୁଧୁରିଯିବ ବୋଲି ଆଶା କରାଯାଉଛି ।

ଏହା ବ୍ୟତୀତ ଉଠା ଜଳସେଚନ ନିଗମ ପଥୁରିଆ ଅଂଚଳରେ ନଳକୂପ ପ୍ରତିଷ୍ଠା କରିବା ପାଇଁ ପରୀକ୍ଷାମୂଳକ ଭାବେ ପଦକ୍ଷେପ ନେଇଛନ୍ତି । ସାଧାରଣତଃ ମାଳଅଂଚଳରେ ନଳକୂପ ପ୍ରତିଷ୍ଠା ପ୍ରାୟ ସମ୍ଭବ ହୋଇ ନଥାଏ । ତା ଛଡ଼ା ଯଦି ପାଖରେ ନଦୀ ନାଳ ନ ଥାଏ, ସେଠାରେ ନଦୀର

ପାଣି ଉଠାଇ ଜଳସେଚନ କରିବା ମଧ୍ୟ ସମ୍ଭବ ହୋଇ ନ ଥାଏ । ଏଣୁ ରାଜ୍ୟର ବହୁ ଅଂଚଳ ଉଠା ଜଳସେଚନ ବ୍ୟବସ୍ଥାରୁ ବଂଚିତ ହେଉଛି । ଏଣୁ ପଥୁରିଆ ଅଂଚଳରେ କିପରି ଜଳସେଚନ ବ୍ୟବସ୍ଥା କରାଯାଇ ପାରିବ ସେଥି ନିମନ୍ତେ ଏକ ପ୍ରକଳ୍ପ ପରୀକ୍ଷାମୂଳକ ଭାବେ ହାତକୁ ନିଆଯାଇଛି । ତଦନୁଯାୟୀ ଭୂତଳଜଳ ଅନୁସନ୍ଧାନ ଦ୍ୱାରା ଯେଉଁ ଅଂଚଳ ଭଗ୍ନ ଶିଳାଂଚଳ (Fractured Zone Area) ରୂପେ ନିର୍ଣ୍ଣୟ କରାଯାଇଛି , ଉକ୍ତ ଅଂଚଳରେ ନଳକୂପ ସ୍ଥାପନ କରାଯିବ । ବିଶେଷଜ୍ଞମାନଙ୍କ ମତାନୁସାରେ ଏହି ଅଂଚଳରେ ନଳକୂପ ଖନନ କରାଗଲେ ମାତ୍ର ଶତକଡା 40 ଭାଗ ତହିଁରୁ କମ୍ ଭାଗ ନଳକୂପ ଘଣ୍ଟାକେ 2000ରୁ 5000 ଗ୍ୟାଲେନ ପାଣି ବାହାରି ପାରେ । ଅନ୍ୟ ୬୦ ଭାଗରେ ଅତି ଅଳ୍ପ ପରିମାଣ ପାଣି ବାହାରି ପାରେ। ଏଣୁ ଏହି ୬୦ ଭାଗ ନଳକୂପକୁ ସେଚ ନଳକୂପ ରୂପେ ବ୍ୟବହାର କରାଯାଇ ପାରିବ ନାହିଁ । ବାକି 40 ଭାଗ ନଳକୂପକୁ ସେଚ ନଳକୂପରୂପେ ବ୍ୟବହାର କରାଯାଇ 5 ରୁ 10 ଏକର ପର୍ଯ୍ୟନ୍ତ ଜମିକୁ ସେଚିତ କରାଯାଇ ପାରେ । ଉପଯୁକ୍ତ ଫସଲ ଖସଡା ଅନୁସରଣ କଲେ ଏହି ନଳକୂପଗୁଡିକ ଚାଷୀମାନଙ୍କ ପାଇଁ ବେଶ୍ ଲାଭଦାୟକ ହେବ ।

ଏହି ପ୍ରକଳ୍ପ ଅନୁଯାୟୀ ଯେଉଁଠାରେ ନଳକୂପରୁ ଆଶାନୁରୂପେ ପାଣି ବାହାରିବ ନାହିଁ, ସେଗୁଡିକ ବସାଇବାର ସମସ୍ତ ଖର୍ଚ୍ଚ ସରକାର ବହନ କରିବେ । ତା ଛଡା ଯେଉଁ ନଳକୂପଗୁଡିକ ସେଚ ନଳକୂପ ହେବା ପାଇଁ ଉପଯୁକ୍ତ ବିବେଚିତ ହେବ, ସେଗୁଡିକ ବସାଇବା ଖର୍ଚ୍ଚର ଶତକଡା 50 ଭାଗ ଚାଷୀମାନେ ବ୍ୟାଙ୍କ ଋଣ ହିସାବରେ ପାଇ ପାରିବେ । ନଳକୂପ ବସାଇ ତାକୁ ବିଦ୍ୟୁତ୍କରଣ କରିସାରିଲା ପରେ ଏହା ଚାଷୀଙ୍କୁ ହସ୍ତାନ୍ତର କରାଯିବ । ଚାଷୀ ତାଂକ ନିଜ ଖର୍ଚ୍ଚରେ ଏହାର ରକ୍ଷଣାବେକ୍ଷଣ ବ୍ୟବସ୍ଥା କରିବେ । ପରୀକ୍ଷାମୂଳକ ଭାବେ ଏହି କାର୍ଯ୍ୟ ସମ୍ବଲପୁର ଜିଲ୍ଲାର ପଦ୍ମପୁର ଅଂଚଳରେ ଆରମ୍ଭ କରାଯିବା ପାଇଁ ଏକ ପରିକଳ୍ପନା ମଞ୍ଜୁର ହୋଇଛି ।

ଏ ତ ଗଲା ସାର୍ବଜନୀନ ଉଠା ଜଳସେଚନ ବ୍ୟବସ୍ଥା (Public Sector L.I. Programme) କଥା । ଚାଷୀମାନଙ୍କୁ ନିଜ ଜମିରେ ଘରୋଇ ଉଦ୍ୟମରେ ନଳକୂପ ଓ ଅନ୍ୟାନ୍ୟ ଉଠା ଜଳସେଚନ ଯୋଜନା ନିର୍ମାଣ କରିବା ପାଇଁ ପ୍ରୋତ୍ସାହନ ଦିଆ ଯାଇଛି । ଏଥି ପାଇଁ ସବ୍‌ସିଡ଼ିର ବ୍ୟବସ୍ଥା ରହିଛି । ଏହି ନିର୍ମାଣ କାର୍ଯ୍ୟ ସାଧାରଣଭାବେ ଓଡିଶା ଆଗ୍ରୋ ଇଣ୍ଡଷ୍ଟ୍ରିଜ୍ କର୍ପୋରେସନ୍ କରିଥାନ୍ତି । ମାତ୍ର ଉଠା ଜଳସେଚନ ନିଗମର ଭୂତଳ ଜଳ ଅନୁସନ୍ଧାନ ଶାଖା କେଉଁ ସ୍ଥାନରେ କେତେ ପରିମାଣ ଜଳ ମିଳି ପାରିବ କେଉଁ ସ୍ଥାନରେ କେଉଁ ପ୍ରକାର ସେଚ ନଳକୂପ ସ୍ଥାପନ କରାଯାଇ ପାରିବ, ସେ ସଂପର୍କରେ ଅନୁସନ୍ଧାନ କରି ସେମାନଙ୍କ ମତାମତ ଦେଇ ଥାଆନ୍ତି । ସେମାନଙ୍କ ବିବରଣୀ ଅନୁଯାୟୀ ଘରୋଇ ତଥା ସାର୍ବଜନୀନ ନଳକୂପ ସ୍ଥାପନ ପାଇଁ ନିଷ୍ପତ୍ତି ନିଆ ଯାଇଥାଏ । ଉଠା ଜଳସେଚନ କର୍ପୋରେସନ୍ ଅଧୀନରେ ଜଣେ ମୁଖ୍ୟ ଯନ୍ତ୍ରୀଙ୍କ ତତ୍ତ୍ୱାବଧାନରେ ଭୂତଳ ଜଳ ଅନୁସନ୍ଧାନ କାର୍ଯ୍ୟ ସମାହିତ ହେଉଛି । ଚାଷୀମାନେ ସେମାନଙ୍କ ଅଂଚଳ ବିଷୟରେ ବିଶେଷ ଅବଗତି ପାଇଁ ଉକ୍ତ ମୁଖ୍ୟ ଯନ୍ତ୍ରୀଙ୍କ ପରାମର୍ଶ ନେଇ ପାରନ୍ତି । ରାଜ୍ୟର ସମସ୍ତ ଅଂଚଳ ପାଇଁ ପ୍ରାରମ୍ଭିକ ଅନୁସନ୍ଧାନ କାର୍ଯ୍ୟ ଶେଷ ହୋଇ ସାରିଛି । ବିଶେଷ ଅନୁସନ୍ଧାନ କାର୍ଯ୍ୟ ଚାଲିଛି ।





## POSITION OF L.I.PROJECTS IN THE STATE OF ORISSA

| Plan Period | No.of L.I.Projects installed & energised during the plan period | | | Irrigation potential created (in hec.) | Cumulative No.of L.I. Projects installed and energised by end of the plan period | | | Irrigation potential created in hectares (CCA) |
|---|---|---|---|---|---|---|---|---|
| | T.W. | R.L. | Total | | T.W. | R.L. | Total | |
| (1) | (2) | (3) | (4) | (5) | (6) | (7) | (8) | (9) |
| 3rd Five Year Plan (1961-66) | 41 | 34 | 75 | 1,785 | 41 | 34 | 75 | 1,785 |
| 4th Five Year Plan (1969-74)including Annual Plan(1966-69) | 416 | 889 | 1,305 | 30,315 | 457 | 923 | 1,380 | 32,100 |
| 5th Five Year Plan (1974-78) including Annual Plan(1978-80) | 1,566 | 1,044 | 2,610 | 55,590 | 2,023 | 1,967 | 3,990 | 87,690 |
| 6th Five Year Plan (1980-85) | 1,932 | 2,321 | 4,253 | 99,790 | 3,955 | 4,288 | 8,243 | 1,87,480 |
| 1st.two years of 7th Five Year Plan(1985-90) i.e.1985-86 and 1986-87 | 429 | 1,095 | 1524 | 32,793 | 4,384 | 5383 | 9,767 | 2,20,273 |
| 1987-88(Programme) | 150 | 543 | 693 | 13,680 | - | - | - | - |
| 1988-89(Programme) 1989-90(Tentative) | | | | | | | | |
| Normal Programme | 600 | 900 | 1,500 | 36,000 | - | - | - | - |
| Crash Programme | 280 | 400 | 680 | 15,200 | - | - | - | - |

## UTILISATION OF L.I.POTENTIAL DURING LAST 8 YEARS

| Year | Khariff Season | | | | Rabi Season | | | |
|---|---|---|---|---|---|---|---|---|
| | Programme | | Achievement | | Programme | | Achievement | |
| | No.of L.I.Ps Programmed for operation | Area programmed for irrigation (in Hect.) | No.of L.I.Ps operated | Area irrigated in hect. | No.of L.I.Ps programmed for operation | Area programmed for irrigation | No.of L.I.Ps operated | Area irrigated in hect. |
| (1) | (2) | (3) | (4) | (5) | (6) | (7) | (8) | (9) |
| 1979-80 | 3,490 | 75,706 | 2,612 | 13,894 | 3,509 | 43,653 | 3,042 | 24,823 |
| 1980-81 | 3,990 | 63,820 | 1,539 | 6,779 | 3,893 | 47,053 | 3,337 | 24,054 |
| 1981-82 | 4,468 | 67,626 | 2,210 | 10,469 | 4,532 | 54,431 | 3,906 | 29,050 |
| 1982-83 | 5,175 | 1,00,000 | 4,284 | 35,309 | 5,481 | 65,880 | 5,355 | 54,364 |
| 1983-84 | 5,884 | 95,455 | 3,287 | 20,400 | 5,866 | 74,340 | 5,314 | 48,613 |
| 1984-85 | 6,047 | 91,125 | 4,191 | 27,016 | 6,717 | 79,950 | 5,829 | 69,410 |
| 1985-86 | 6,370 | 85,410 | 3,637 | 27,550 | 7,038 | 78,644 | 5,620 | 49,480 |
| 1986-87 | 7,269 | 91,250 | 3,746 | 25,878 | 7,486 | 76,297 | 6,197 | 49,582 |
| 1987-88 | 8,045 | 95,420 | 7,132 | 46,530 | 8,645 | 80,525 | 8,086 | 75,220 |

(Till 25-4-86) (Till 25-4-88)

ଚେୟାରମ୍ୟାନ୍,
ରାଜ୍ୟ ଉଠା ଜଳସେଚନ ନିଗମ, ଓଡ଼ିଶା ।

# ଓଡ଼ିଶାରେ ଆଦିବାସୀ ଓ ହରିଜନ କଲ୍ୟାଣ

ଶ୍ରୀ ଫଣୀ ଭୂଷଣ ଦାସ

୧୯୮୧ ମସିହାର ଜନଗଣନା ଅନୁଯାୟୀ ଓଡ଼ିଶାର ସମୁଦାୟ ଜନ ସଂଖ୍ୟା ୨୬,୩୭୦,୨୭୧ ରୁ ଶତକଡ଼ା ୨୨.୪୩ ଭାଗ ଆଦିବାସୀ ଏବଂ ୧୪.୬୮ ଭାଗ ହରିଜନ ଅଛନ୍ତି । ବର୍ତ୍ତମାନ ଓଡ଼ିଶାରେ ୬୨ଟି ଆଦିବାସୀ ଗୋଷ୍ଠୀ ଏବଂ ୯୩ଟି ହରିଜନ ଜାତିକୁ ଯଥାକ୍ରମେ ତଫସିଲଭୁକ୍ତ ଗୋଷ୍ଠୀ ଓ ତଫସିଲଭୁକ୍ତ ଜାତି ତାଲିକାରେ ଅନ୍ତର୍ଭୁକ୍ତ କରଯାଇଅଛି । ୩୮ ଗୋଟି ଅଧିକ ଗୋଷ୍ଠୀ ଏବଂ ୬୧ ଗୋଟି ଜାତିମାନଙ୍କୁ ତଫସିଲଭୁକ୍ତ କରିବା ପାଇଁ ଆମ ରାଜ୍ୟ ସରକାର ଗତ କେତେବର୍ଷ ହେଲା କେନ୍ଦ୍ର ସରକାରଙ୍କୁ ପ୍ରସ୍ତାବ ଦେଇ ଆସୁଛନ୍ତି । ଏହା ନିକଟ ଭବିଷ୍ୟତରେ ଫଳପ୍ରସୂ ହେବ ବୋଲି ଆଶା କରଯାଏ । ଆମ ସମ୍ବିଧାନର ୪୬ ଧାରାରେ ଅର୍ପିତ ହୋଇଥିବା ଦାୟିତ୍ୱ ଅନୁଯାୟୀ ରାଜ୍ୟସରକାର ଦୁର୍ବଳ ଶ୍ରେଣୀ ତଥା ଆଦିବାସୀ ଏବଂ ହରିଜନମାନଙ୍କ ସର୍ବବିଧ ବିକାଶ ନିମନ୍ତେ ସ୍ୱାଧୀନତା ନିରବଛିନ୍ନ ଭାବେ ଚେଷ୍ଟା କରି ଆସୁଅଛନ୍ତି । ଏ ଦିଗରେ ଗତ ୮ ବର୍ଷର ସାଫଲ୍ୟ ଉଲ୍ଲେଖନୀୟ ।

ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ତଥା ଆଦିବାସୀ ପରିବାରମାନଙ୍କର ଅର୍ଥନୈତିକ ଉନ୍ନତି ଲକ୍ଷ୍ୟରେ ଆଦିବାସୀ ଉପଯୋଜନା ଏକ ଅଭିମୁଖ୍ୟ ଭାବେ ଗୃହୀତ ହୋଇଅଛି । ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥାର ପ୍ରୋଜେକ୍ଟ ସ୍ତରୀୟ କମିଟିକୁ ମଧ୍ୟ ସକ୍ରିୟ କରଯାଇଅଛି । ନିର୍ବାଚିତ ଲୋକ ପ୍ରତିନିଧି ଓ ଅନ୍ୟାନ୍ୟ ସଂପୃକ୍ତ ଅଫିସର ବ୍ୟତୀତ ଜଣେ ଜଣେ ଆଦିବାସୀ ମହିଳାଙ୍କୁ ପ୍ରୋଜେକ୍ଟ ସ୍ତରୀୟ କମିଟିରେ ସଭ୍ୟ ଭାବେ ନିଆଯାଉଛି ।

## ଆଦିମ ଆଦିବାସୀମାନଙ୍କ ପାଇଁ ଅଣୁ ପ୍ରକଳ୍ପଯୋଜନା

ଓଡ଼ିଶାର ୧୨ଟି ଆଦିବାସୀ ଗୋଷ୍ଠୀ ଆଦିମ ଆଦିବାସୀ ରୂପେ ଭାରତ ସରକାରଙ୍କ ଦ୍ୱାରା ସ୍ୱୀକୃତି ଲାଭ କରିଅଛି । ସେଗୁଡ଼ିକ ହେଲେ (୧) ଜୁଆଙ୍ଗ, (୨) ବଣ୍ଡା, (୩) ଡଙ୍ଗରିଆ କନ୍ଧ, (୪) କୁଟିଆ କନ୍ଧ, (୫) ଲଞ୍ଜିଆ ସଉରା, (୬) ସଉରା, (୭) ପାଉଡ଼ି ଭୂୟାଁ, (୮) ଖଡ଼ିଆ (୯) ଦିଦାୟୀ, (୧୦) ଲୋଧା, (୧୧) ବିରହୋର, (୧୨) ମାଙ୍କଡ଼ିଆ ।

ଏହି ଆଦିମ ଆଦିବାସୀମାନଙ୍କର ସର୍ବବିଧ ଉନ୍ନତି କରିବା ନିମନ୍ତେ ୧୫ଟି ଅଣୁ ପରିଯୋଜନା ଓଡ଼ିଶାରେ କାର୍ଯ୍ୟକାରୀ ହେଉଅଛି ।

ମାଇକ୍ରୋ ପ୍ରୋଜେକ୍ଟ ଅଞ୍ଚଳରେ ବସବାସ କରୁଥିବା ଆଦିମ ଆଦିବାସୀମାନେ ପରିବାର ଆୟ ବୃଦ୍ଧି ପରିକଳ୍ପନାରେ ଶତକଡ଼ା ୧୦୦ ଭିହାତି ପାଉଛନ୍ତି ।

## ଆଦିବାସୀ ଉପଯୋଜନା ବାହାରେ ବଞ୍ଚିତ ହୋଇ ରହିଥିବା ଆଦିବାସୀମାନଙ୍କ ପାଇଁ ସ୍ୱତନ୍ତ୍ର ଆଭିମୁଖ୍ୟ

(କ) ସଂଶୋଧିତ ଅଞ୍ଚଳ ଉନ୍ନୟନ ଆଭିମୁଖ୍ୟ—ଓଡ଼ିଶାର ମୋଟ ଆଦିବାସୀ ଜନସଂଖ୍ୟାର ମାତ୍ର ୬୪.୯୫ ଶତାଂଶ ଆଦିବାସୀ ଉପଯୋଜନାର ଅନ୍ତର୍ଭୁକ୍ତ ହୋଇ ପାରିଲେ ଏବଂ ୩୫.୦୫ ଶତାଂଶ ଆଦିବାସୀ ଉପଯୋଜନା ବାହାରେ ରହିଗଲେ । ସେହି ଆଦିବାସୀମାନଙ୍କୁ ସ୍ୱତନ୍ତ୍ର କେନ୍ଦ୍ରୀୟ ସାହାଯ୍ୟ ଦ୍ୱାରା ଉପକୃତ କରାଇ, ସେହି ଆଦିବାସୀ ବହୁଳ ଅଞ୍ଚଳଗୁଡ଼ିକରେ ସମନ୍ୱିତ ଉନ୍ନୟନ ପରିକଳ୍ପନାକୁ କାର୍ଯ୍ୟକାରୀ କରାଇବା ନିମନ୍ତେ ସଂଶୋଧିତ ଅଞ୍ଚଳ ଉନ୍ନୟନ ଆଭିମୁଖ୍ୟ (Modified Area Dev. Approach)କୁ ସେହି ଅଞ୍ଚଳଗୁଡ଼ିକରେ ପ୍ରବର୍ତ୍ତନ କରାଗଲା । କୌଣସି ଅଞ୍ଚଳ ଏହି (ମାଡ଼ା) ଯୋଜନାରେ ଅନ୍ତର୍ଭୁକ୍ତ ହେବା ନିମନ୍ତେ ମୁଖ୍ୟତଃ ଦୁଇଟି ଉପାଦାନ ପ୍ରତି ଦୃଷ୍ଟି ଦିଆଯାଏ । (୧) ଏହି ଅଞ୍ଚଳଟି କୌଣସି ଗୋଟିଏ ବା ତତୋଧିକ ବ୍ଲକ୍ ଅଞ୍ଚଳର ଅଂଶ ହୋଇଥିବା ଆବଶ୍ୟକ

(୨) ଯେଉଁ ସମନ୍ୱିତ ଗ୍ରାମଗୁଡ଼ିକୁ ନେଇ ଏହି ଅଞ୍ଚଳଟି ଗଠିତ ହେବ ସେମାନଙ୍କର ମୋଟ ଜନସଂଖ୍ୟା ୧୦,୦୦୦ ବା ତଦୂର୍ଦ୍ଧ୍ୱ ହେବା ଆବଶ୍ୟକ ଏବଂ ତନ୍ମଧ୍ୟରୁ ଶତକଡ଼ା ୫୦ ଭାଗ ଆଦିବାସୀ ହୋଇଥିବା ଦରକାର । ଏହି ୨ଟି ଉପାଦାନ ପୂରଣ କରୁଥିବା ଅଞ୍ଚଳଗୁଡ଼ିକ ଚିହ୍ନଟ କରଯାଇ ସଂଶୋଧିତ ଅଞ୍ଚଳ ଉନ୍ନୟନ ଆଭିମୁଖ୍ୟଭିତ୍ତିକ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରଯାଇଅଛି । ୪୭ଟି ବ୍ଲକ୍‌ର ଅଂଶ ବିଶେଷ ନେଇ ୪୫ଟି ମାଡ଼ା (MADA) ଅଞ୍ଚଳ ଆଜି ସୁଦ୍ଧା ନିରୂପିତ କରଯାଇ ବ୍ଲକ୍ ଉନ୍ନୟନ ଅଧିକାରୀଙ୍କ ତତ୍ତ୍ୱାବଧାନରେ ଅତିରିକ୍ତ ମଂଡ଼ ସଂପ୍ରସାରଣ ପଦାଧିକାରୀଙ୍କ ସାହାଯ୍ୟରେ ମାଡ଼ା କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରଯାଉଅଛି ।

(ଖ) ପୁଞ୍ଜି (Cluster)—ସପ୍ତମ ପଞ୍ଚବାର୍ଷିକ ଯୋଜନାରେ ମାଡ଼ା ପକେଟ୍ ଚିହ୍ନଟ କରିବାର ମାନଦଣ୍ଡକୁ କୋହଳ କରଯାଇ ପୁଞ୍ଜି (Cluster) ଆଭିମୁଖ୍ୟର ପ୍ରବର୍ତ୍ତନ କରଯାଇଅଛି । ୧୦,୦୦୦ ସ୍ଥଳରେ ୫,୦୦୦

ଜନସଂଖ୍ୟା ବିଶିଷ୍ଟ କେତେଗୁଡ଼ିଏ ସନ୍ନିହିତ ଆଦିବାସୀ ବହୁଳ ଗ୍ରାମମାନଙ୍କୁ ନେଇ ନୂତନ ନୀତି ଅନୁସାରେ ପୁଞ୍ଜି (Cluster) ଚିହ୍ନଟ କରାଯାଇଅଛି । ପ୍ରତ୍ୟେକ ପୁଞ୍ଜିର ମୋଟ ଜନସଂଖ୍ୟାର ଶତକଡ଼ା ୫୦ ବା ତଦୂର୍ଦ୍ଧ୍ୱ ଆଦିବାସୀ ଅଛନ୍ତି । ଏହିପରି ୮ଟି ପୁଞ୍ଜି ଆଠଟି ବ୍ଲକ୍‌ରେ ଚିହ୍ନଟ କରାଯାଇ ପୁଞ୍ଜି କାର୍ଯ୍ୟକ୍ରମ ବ୍ଲକ୍ ଉନ୍ନୟନ ଅଧିକାରୀଙ୍କ ତତ୍ତ୍ୱାବଧାନରେ କାର୍ଯ୍ୟକାରୀ କରାଯାଉଅଛି ।

(ଗ) ବିଛୁରିତ ଆଦିବାସୀ ଉନ୍ନୟନ କାର୍ଯ୍ୟକ୍ରମ—ସ୍ୱତନ୍ତ୍ର ଆଦିବାସୀ ପରିଯୋଜନା ଯଥା :—ସମନ୍ୱିତ ଆଦିବାସୀ ଉନ୍ନୟନ ପରିଯୋଜନା, ସଂଶୋଧିତ ଅଞ୍ଚଳ ଉନ୍ନୟନ ଆଭିମୁଖ୍ୟ, ପୁଞ୍ଜି ଏବଂ ଅଣୁ ପରିଯୋଜନା କାର୍ଯ୍ୟକାରୀ ହେଉଥିବା ଅଞ୍ଚଳର ପ୍ରାୟ ୪୫.୦୯ ଲକ୍ଷ ଆଦିବାସୀଙ୍କୁ ବାଦ୍ ଦେଲେ, ଅନ୍ୟତ୍ର ବସବାସ କରୁଥିବା ଆଦିବାସୀମାନେ ସ୍ୱତନ୍ତ୍ର କେନ୍ଦ୍ରୀୟ ସାହାଯ୍ୟ ପରିସରଭୁକ୍ତ ହେବା ପାଇଁ ୧୯୮୬-୮୭ ବର୍ଷଠାରୁ ଓଡ଼ିଶାରେ ବିଛୁରିତ ଆଦିବାସୀ ଉନ୍ନୟନ କାର୍ଯ୍ୟକ୍ରମ ପ୍ରଚଳନ କରାଯାଉଛି ।

## ଆଦିବାସୀ ଅଞ୍ଚଳରେ ରାସ୍ତା ଉନ୍ନୟନ ପାଇଁ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଓ ସାହାଯ୍ୟ

ପୁନର୍ବାର ରାଜ୍ୟ ସରକାରଙ୍କ ଉଦ୍ୟମ ଫଳରେ ୧୯୮୭-୮୮ ବର୍ଷରେ ଆଦିବାସୀ କଲ୍ୟାଣ ମନ୍ତ୍ରଣାଳୟ ୧ କୋଟି ୬୮ ଲକ୍ଷ ୮୦ ହଜାର ଟଙ୍କା ସ୍ୱତନ୍ତ୍ର କେନ୍ଦ୍ରୀୟ ସାହାଯ୍ୟ ଓଡ଼ିଶାର ୯ କୋଟି ଆଦିମ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର ଗମନାଗମନର ଉନ୍ନତି ପାଇଁ ମଞ୍ଜୁର କରିଛନ୍ତି ।

## ଆଦିବାସୀମାନଙ୍କ ପାଇଁ ମିଶ୍ରିତ ଭୂମିଭିତ୍ତିକ କ୍ଷୁଦ୍ର ଜଳସେଚନ ପରିକଳ୍ପନା

ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥାଗୁଡ଼ିକର ମୂଲ୍ୟାୟନରୁ ଜଣାଗଲା ଯେ ଗୋଟିଏ କ୍ଷୁଦ୍ର ଆୟବୃଦ୍ଧି ପ୍ରକଳ୍ପ ଦ୍ୱାରା ଆଦିବାସୀ ପରିବାରର ଆର୍ଥିକ ଉନ୍ନତି ହେବା ସମ୍ଭବ ହୋଇନପାରେ । ଏଣୁ ପ୍ରତ୍ୟେକ ଆଦିବାସୀ ପରିବାରକୁ ତାର ଶକ୍ତି, ସାମର୍ଥ୍ୟ, ଆଗ୍ରହ ଇତ୍ୟାଦିକୁ ବିଚାରକୁ ନେଇ ଏକାଧିକ ପ୍ରକଳ୍ପ (Multiple Schemes) ଦେଇ ସାହାଯ୍ୟ କରିବା ପାଇଁ ନିର୍ଦ୍ଦେଶନାମା ପଠା ଯାଇଅଛି । ଉଦାହରଣ ସ୍ୱରୂପ ମିଶ୍ରିତ କୃଷିଭିତ୍ତିକ କ୍ଷୁଦ୍ର ଜଳସେଚନ ପରିକଳ୍ପନାର ପ୍ରବର୍ତ୍ତନ ୧୯୮୭-୮୮ରୁ ଆରମ୍ଭ କରାଯାଇଅଛି । ଏ ବାବଦ ଖର୍ଚ୍ଚ ପରିବାର ଆୟବୃଦ୍ଧି ପରିକଳ୍ପନା ପାଇଁ ଉଦ୍ଦିଷ୍ଟ ଅର୍ଥରୁ ଭରଣା କରାଯାଇପାରିବ । ଏକାଧିକ ଆଦିବାସୀ ଗୋଷ୍ଠୀଙ୍କୁ ସ୍ଥାୟୀ ବନ୍ଧ, ଜଳ ଅମଳ ପ୍ରକଳ୍ପ ଇତ୍ୟାଦି କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ମାଧ୍ୟମରେ ଜଳସେଚନ ଯୋଗାଇ ଦିଆଯାଇ ପାରିବ । ଏହି ପରିକଳ୍ପନାଟି ୩ଟି ଉପାଦାନ ଯଥା :—(୧) ଜଳସେଚନ, (୨) ଜମି ଉନ୍ନୟନ, (୩) କୃଷି ସାମଗ୍ରୀ ଯୋଗାଣ ନେଇ ଗଠିତ । ଜଳସେଚନ ଉପାଦାନଟି ଉପକୃତ ହେଉଥିବା ପ୍ରତି ପରିବାର ପିଛା ୫୦୦୦ ଟଙ୍କା ଯାଏଁ ପୂରା ରିହାତିରେ କରାଯାଇପାରିବ । ଅନ୍ୟାନ୍ୟ ଉପାଦାନଗୁଡ଼ିକ ଶତକଡ଼ା ୫୦ ଭାଗ ରିହାତି ଓ ୫୦ ଭାଗ ଋଣରେ ପରିବାରକୁ ଯୋଗାଇ ଦିଆଯାଇ ପାରିବ ।

## ଆଦିବାସୀ ଉପଯୋଜନା ଅଞ୍ଚଳର ସ୍ୱଳ୍ପ ଋଣ ଥିବା ଆଦିବାସୀ ଋଣୀ ଖିଲାପକାରୀମାନଙ୍କ ପାଇଁ ଋଣ ପରିଶୋଧ କରିଦେବାର ବ୍ୟବସ୍ଥା

ପ୍ରଥମ ପର୍ଯ୍ୟାୟରେ ୩୦-୬-୧୯୮୫ ସୁଦ୍ଧା ଯେଉଁ ଆଦିବାସୀ ଋଣୀ ପରିବାରଙ୍କ ଖିଲାପ ମୂଳ ଓ ସୁଧ ମିଶି ଟ ୨୫୦ ରେ ସୀମିତ ଥିବ, ସେମାନଙ୍କୁ ଋଣମୁକ୍ତ କରିବା ନିମନ୍ତେ ୧୯୮୭-୮୮ରୁ ଏକ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । [illegible] ୬୪୦୦୦ ଆଦିବାସୀ ଉପକୃତ ହେବେ ବୋଲି ଏକ ପ୍ରାଥମିକ ସର୍ବେକ୍ଷଣରୁ ଜଣାଯାଇଛି ଓ ସେମାନେ ପୁଣି ଋଣ ପାଇବାକୁ ହକଦାର ହେବେ ।

## ପୋଡୁଚାଷ କରୁଥିବା ଆଦିବାସୀ ପରିବାରଙ୍କୁ ପୋଡୁଚାଷରୁ ନିବୃତ୍ତ କରି ଥଇଥାନ କରିବାର ନିମନ୍ତେ ସ୍ୱତନ୍ତ୍ର ପରିଯୋଜନା

ପୋଡୁଚାଷ କରୁଥିବା ଆଦିବାସୀ ପରିବାରଙ୍କୁ ପୋଡୁଚାଷରୁ ନିବୃତ୍ତ କରି ଅନ୍ୟାନ୍ୟ ଉପାର୍ଜନକ୍ଷମ ବୃତ୍ତିରେ ଥଇଥାନ କରିବା ନିମନ୍ତେ ରାଜ୍ୟ ସରକାର ସଦାସର୍ବଦା ଉଦ୍ୟମ କରି ଆସୁଛନ୍ତି । କେତେକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ପୋଡୁଚାଷୀମାନଙ୍କୁ ପୋଡୁଚାଷରୁ ନିବୃତ୍ତ କରାଇ ଥଇଥାନ କରିବାର ବ୍ୟବସ୍ଥା କରିବା ନିମନ୍ତେ ୧୭ କୋଟି ଟଙ୍କାର ୧୦ଟି ନିର୍ଦ୍ଦିଷ୍ଟ ପ୍ରକଳ୍ପ ଭାରତ ସରକାରଙ୍କ ଅନୁମୋଦନ ଲାଭ କରିଛି । ଏହି ଯୋଜନା ଦ୍ୱାରା ପ୍ରାୟ ୨୧୦ଟି ଗ୍ରାମର ୬୦୦୦ ଆଦିବାସୀ ପରିବାରଙ୍କୁ ଉପକୃତ କରିବ ବୋଲି ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ପ୍ରାୟ ପ୍ରତି ଆଦିବାସୀ ପରିବାର ପିଛା ୩୦ ହଜାର ଟଙ୍କା ୫ ବର୍ଷ ମଧ୍ୟରେ ଖର୍ଚ୍ଚ କରାଯିବାର ପରିକଳ୍ପନା ଅଛି ।

## କାଶୀପୁର ବ୍ଲକ ଉନ୍ନୟନ ନିମନ୍ତେ ସ୍ୱତନ୍ତ୍ର ପରିଯୋଜନା

କୋରାପୁଟ ଜିଲ୍ଲାର କାଶୀପୁର ବ୍ଲକର ସମୂହ ଉନ୍ନୟନ ନିମନ୍ତେ ପ୍ରାୟ ୩୧ କୋଟି ଟଙ୍କାର ବ୍ୟୟ ଅଟକଳ କରାଯାଇ ଏକ ସ୍ୱତନ୍ତ୍ର ପରିଯୋଜନା ୧୯୮୮-୮୯ ଆର୍ଥିକ ବର୍ଷଠାରୁ କାର୍ଯ୍ୟକାରୀ କରାଯିବ । ଏହି ସ୍ୱତନ୍ତ୍ର ପରିଯୋଜନା ପାଇଁ Inter natonral Fund for Agricultural Dev., କଲ୍ୟାଣ ମନ୍ତ୍ରଣାଳୟ ଓ ରାଜ୍ୟ ସରକାର ମିଳିତ ଭାବରେ ଅର୍ଥ ସହାୟତା କରିବେ । କୃଷି ଉତ୍ପାଦନ; ପ୍ରାକୃତିକ ସମ୍ବଳର ଉନ୍ନୟନ, ମାନବ ସମ୍ବଳର ବିକାଶ, ଗ୍ରାମ୍ୟ ଭିତ୍ତିଭୂମି ନିର୍ମାଣ, ବାଣିଜ୍ୟିକ ଉନ୍ନୟନ, ଭୂ-ସର୍ବେକ୍ଷଣ ଓ କାର୍ଯ୍ୟାନୁଷ୍ଠାନକୁ ପରିଯୋଜନାର କାର୍ଯ୍ୟକ୍ରମ ମଧ୍ୟରେ ଅନ୍ତର୍ଭୁକ୍ତ କରାଯାଇଛି ।

## ଅଷ୍ଟମ ଅର୍ଥ କମିଶନଙ୍କ ଅନୁଦାନ ବାବଦ ପରିକଳ୍ପନା

ଅଷ୍ଟମ ଅର୍ଥ କମିଶନଙ୍କ ସୁପାରିଶ୍ ଅନୁଯାୟୀ ଆଦିବାସୀ ଉପଯୋଜନା ଅଞ୍ଚଳରେ କାର୍ଯ୍ୟକରୁଥିବା କର୍ମଚାରୀମାନଙ୍କ ନିମନ୍ତେ ୭୩୬.୮୦ ଲକ୍ଷ ଟଙ୍କା ବ୍ୟୟରେ ୧୮୪୭ଟି ବାସଗୃହ ୧୯୮୮-୮୯ ଶେଷସୁଦ୍ଧା ନିର୍ମାଣ କରିବା ପାଇଁ ସମୁଚିତ ପଦକ୍ଷେପ ନିଆଯାଉଅଛି । ସେହିପରି ଗ୍ରାମ ପିଛା ୫ ଲକ୍ଷ ଟଙ୍କା ବ୍ୟୟ କରାଯାଇ ୧୮୪ଟି ଆଦର୍ଶ ଗ୍ରାମ ପ୍ରତିଷ୍ଠା କରିବା ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ଯଥା—ଶିକ୍ଷା ଅନୁଷ୍ଠାନର ଅଭିବୃଦ୍ଧି, ପାନୀୟ ଜଳ ଯୋଗାଣ, ରାସ୍ତାର ଉନ୍ନତି ବିଧାନ, ସମାଜୀୟ ଭିତ୍ତିଭୂମିର ଉନ୍ନୟନ ହାତକୁ ନିଆଯାଉଅଛି । ୧୮୪ଟି ଗ୍ରାମ ମଧ୍ୟରୁ ୧୧୮ଟିରେ (ପ୍ରତି ଆଦିବାସୀ ଉପଯୋଜନା ବ୍ଲକରେ ଗୋଟିଏ ଲେଖାଏଁ) ଅତିରିକ୍ତ ସ୍ୱାସ୍ଥ୍ୟକେନ୍ଦ୍ର ପ୍ରତିଷ୍ଠା କରିବା ପାଇଁ ନିଷ୍ପତ୍ତି ନିଆଯାଇ ଅର୍ଥ ମଞ୍ଜୁର କରାଯାଇଅଛି ।

## ତଫସିଲଭୁକ୍ତ ଜାତିଙ୍କ ପାଇଁ ସ୍ୱତନ୍ତ୍ର ଉପାଂଶ ଯୋଜନା

ତଫସିଲଭୁକ୍ତ ଜାତି ଲୋକଙ୍କର ଦ୍ରୁତ ଉନ୍ନତି ଉଦ୍ଦେଶ୍ୟରେ ସ୍ୱତନ୍ତ୍ର ଉପାଂଶ ଯୋଜନା ଷଷ୍ଠ ପଞ୍ଚବାର୍ଷିକ ଯୋଜନା ପ୍ରାରମ୍ଭରୁ ପ୍ରତିବର୍ଷ ପ୍ରସ୍ତୁତ କରାଯାଇ କାର୍ଯ୍ୟକାରୀ ହୋଇଆସୁଅଛି । ହରିଜନମାନଙ୍କ ଅର୍ଥନୈତିକ ବିକାଶ ସକାଶେ ବିଶେଷ ଧ୍ୟାନ ଦେବା ସଙ୍ଗେ ସଙ୍ଗେ ଶିକ୍ଷାଗତ ଉନ୍ନତି ସହ ବିଭିନ୍ନ ଅତ୍ୟାବଶ୍ୟକୀୟ ସୁବିଧାମାନ ଯୋଗାଇ ସେମାନଙ୍କର ଜୀବନ ଶୈଳୀର ମାନରେ ଉନ୍ନତି ଆଣିବା ପାଇଁ ନିର୍ଦ୍ଦିଷ୍ଟ ପଦକ୍ଷେପମାନ ନିଆଯାଉଅଛି । ସ୍ୱତନ୍ତ୍ର ଉପାଂଶ ଯୋଜନାରେ ମିଳୁଥିବା ସ୍ୱତନ୍ତ୍ର କେନ୍ଦ୍ରୀୟ ସାହାଯ୍ୟର ପ୍ରାୟ ଶତକଡ଼ା ୧୦ ଭାଗ ହରିଜନମାନଙ୍କ ମଧ୍ୟରେ ଥିବା ଅତି ଅନୁନ୍ନତ ସଂପ୍ରଦାୟର ପରିବାରମାନଙ୍କ ଉନ୍ନତି ସକାଶେ ବ୍ୟୟ କରିବାପାଇଁ ବ୍ୟବସ୍ଥା କରାଯାଉଅଛି । ଆର୍ଥିକ ବିକାଶ ସକାଶେ ତଫସିଲଭୁକ୍ତ ଜାତିମାନଙ୍କ ମଧ୍ୟରେ ପ୍ରଧାନ ପ୍ରଧାନ ଜୀବିକାରେ ବ୍ୟାପୃତ ପରିବାର ଯଥା:—ଚମଡ଼ା ଶିଳ୍ପୀ, ମତ୍ସ୍ୟଜୀବୀ, କୃଷକ, ରେଶମଶିଳ୍ପୀ, ହସ୍ତତନ୍ତ ବୁଣାଳୀ ଇତ୍ୟାଦିମାନଙ୍କର ବିକାଶପାଇଁ ଦରକାର ମୁତାବକ ସ୍ୱତନ୍ତ୍ର ବିକାଶମୂଳକ ଯୋଜନା ସମୂହ କାର୍ଯ୍ୟକାରୀ କରାଯାଉଅଛି ।

## ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ

ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାଳରୁ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ ପ୍ରତି ବିଶେଷ ଗୁରୁତ୍ୱ ଦିଆଯାଇଅଛି । ଷଷ୍ଠ ପଞ୍ଚବାର୍ଷିକ ଯୋଜନା କାଳରେ ୫.୫୦ ଆଦିବାସୀ ପରିବାରକୁ ଓ ୪ ଲକ୍ଷ ହରିଜନ ପରିବାରକୁ ଉପକୃତ କରିବା ପାଇଁ ଲକ୍ଷ୍ୟ ରଖାଯାଇଥିଲା । କିନ୍ତୁ ୪.୯୮ ଲକ୍ଷ ଆଦିବାସୀ ପରିବାର ଓ ୪.୬୪ ଲକ୍ଷ ହରିଜନ ପରିବାର ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମରେ ସାହାଯ୍ୟ ପାଇଥିଲେ ।

ସପ୍ତମ ଯୋଜନାର ପ୍ରଥମ ତିନି ବର୍ଷମଧ୍ୟ ବତନ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ କରିଆରେ ଉପକୃତ ହୋଇଥିବା ଆଦିବାସୀ ଓ ହରିଜନ ପରିବାରଙ୍କ ସଂଖ୍ୟା ନିମ୍ନରେ ଦିଆଗଲା ।

| ବର୍ଷ | ଆଦିବାସୀ ପରିବାର | | ହରିଜନ ପରିବାର | |
|---|---|---|---|---|
| | ଲକ୍ଷ | ସଂପାଦିତ | ଲକ୍ଷ | ସଂପାଦିତ |
| (୧) | (୨) | (୩) | (୪) | (୫) |
| ୧୯୮୫-୮୬ | ୯୮,୦୦୦ | ୧,୨୩,୨୭୮ | ୫୫,୦୦୦ | ୮୦,୬୨୪ |
| ୧୯୮୬-୮୭ | ୯୮,୦୦୦ | ୧,୪୩,୦୦୦ | ୬୩,୦୦୦ | ୧,୦୩,୫୧୧ |
| ୧୯୮୭-୮୮ | ୧,୦୦,୦୦୦ | ୧,୮୩,୭୦୩ | ୬୫,୦୦୦ | ୧,୫୩,୫୬୯ |

## ଆଦିବାସୀ ଓ ହରିଜନମାନଙ୍କର ଶିକ୍ଷାର ବିକାଶ

ତପସିଲଭୁକ୍ତ ଜାତି ଓ ତପସିଲଭୁକ୍ତ ଗୋଷ୍ଠୀ ଲୋକମାନଙ୍କର ସମସ୍ତ ପ୍ରକାର ପ୍ରଗତି ପାଇଁ ଶିକ୍ଷାର ପ୍ରସାର ଅତ୍ୟନ୍ତ ଆବଶ୍ୟକ । ଏଣୁ ହରିଜନ ଓ ଆଦିବାସୀ ମଙ୍ଗଳ ବିଭାଗର ଯୋଜନା ପାଣ୍ଠିର ଯଥେଷ୍ଟ ଅର୍ଥ ସେମାନଙ୍କର ଶିକ୍ଷାଦିଗରେ ଖର୍ଚ୍ଚ କରାଯାଇଥାଏ । ଏହି ଉଦ୍ୟମ ଫଳରେ ଆଦିବାସୀ ଓ ହରିଜନଙ୍କ ମଧ୍ୟରେ ସ୍ୱାକ୍ଷରର ଅନୁପାତ ୧୯୬୧ରେ ଯଥାକ୍ରମେ ଶତକଡ଼ା ୭.୪ ଓ ୧୧.୬ରୁ ୧୯୮୧ ବେଳକୁ ଶତକଡ଼ା ୧୩.୯୬ ଓ ୨୨.୪୧ ହୋଇପାରିଛି ।

ସେବାଶ୍ରମ, ଆବାସିକ ସେବାଶ୍ରମ, ଆଶ୍ରମସ୍କୁଲ, କନ୍ୟାଶ୍ରମ, ହାଇସ୍କୁଲ ଖୋଲିବା ଏବଂ ସେଗୁଡ଼ିକ ଉନ୍ନତ କରିବା, ପ୍ରାକ୍ ପ୍ରବେଶିକା ଛାତ୍ରବୃତ୍ତି ପ୍ରଦାନ, ପ୍ରବେଶିକୋତ୍ତର ଛାତ୍ରବୃତ୍ତି ପ୍ରଦାନ ପାଠ୍ୟ ପୁସ୍ତକ ଓ ଲିଖନ ସାମଗ୍ରୀ ବଣ୍ଟନ, ପରିଚ୍ଛଦ ବଣ୍ଟନ, ସ୍ୱତନ୍ତ୍ର ଶିକ୍ଷାଦାନ, ହଷ୍ଟେଲର ବ୍ୟବସ୍ଥା ବୈଷୟିକ ଶିକ୍ଷାନୁଷ୍ଠାନ ପାଇଁ ପୁସ୍ତକ ବ୍ୟାଙ୍କ ସାହାଯ୍ୟ ପ୍ରଦାନ ଇତ୍ୟାଦି ହରିଜନ ଓ ଆଦିବାସୀ ମଙ୍ଗଳ ଶିକ୍ଷା କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ଅଟେ । ଏହି ବିଭାଗ ଆଜିସୁଦ୍ଧା ବାଳିକାମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ୩୦ଟିକୁ ମିଶାଇ ୧୩୯ଟି ମାଧ୍ୟମିକ ବିଦ୍ୟାଳୟ, ୬୧ଟି ଆଶ୍ରମ ସ୍କୁଲ ଏବଂ ୧୮ଟି କନ୍ୟାଶ୍ରମ (ମଧ୍ୟ ଇଂରାଜୀ ସ୍ତରର) ୩୮ଟି ଆବାସିକ ସେବାଶ୍ରମ, (ଅପର ପ୍ରାଇମେରୀ ସ୍ତର ପର୍ଯ୍ୟନ୍ତ ଓ ୧୧୧୩ଟି ସେବାଶ୍ରମ ସ୍ଥାପନ କରି ଚଳାଉଅଛି । ଏହି ସ୍କୁଲମାନଙ୍କରେ ୭୦୮୬ ଆଦିବାସୀ ଓ ୨୨୧୮୭ ହରିଜନ ମିଶାଇ ୧୩୪୦୬୬ ଜଣ ଛାତ୍ର ଓ ଛାତ୍ରୀ ପଢ଼ୁଅଛନ୍ତି । ୧୦୧୩୨ ଆଦିବାସୀ ଓ ୧୬୧,୫୭ ହରିଜନ ଛାତ୍ର ଓ ଛାତ୍ରୀ ପ୍ରବେଶିକୋତ୍ତର ବୃତ୍ତି ପ୍ରକଳ୍ପରେ ଓ ୯୮,୦୦୦ ଆଦିବାସୀ ଓ ୧,୩୪୦,୦୦ ହରିଜନ ଛାତ୍ର ଓ ଛାତ୍ରୀ ପ୍ରାକ୍-ପ୍ରବେଶିକା ଛାତ୍ରବୃତ୍ତି ପ୍ରକଳ୍ପରେ ଉପକୃତ ହୋଇଅଛନ୍ତି । ବୃତ୍ତି ତଥା ଆବାସିକଭତ୍ତାର ହାର ୧-୧୨-୮୬ରୁ ବୃଦ୍ଧି କରାଯାଇଛି । ବିଦ୍ୟାଳୟ ପରିତ୍ୟାଗ କରିବା ମନୋବୃତ୍ତିର ନିରାକରଣ ତଥା ପ୍ରାଥମିକ ଶିକ୍ଷାପ୍ରତି ଆଗ୍ରହ ସୃଷ୍ଟି କରିବା ଉଦ୍ଦେଶ୍ୟରେ ପ୍ରାଇମେରୀ ସ୍କୁଲ ସ୍ତରରେ ହଷ୍ଟେଲର ବ୍ୟବସ୍ଥା କରିବାପାଇଁ ନୀତି ଧାର୍ଯ୍ୟ କରାଯାଇଛି । ପ୍ରଥମ ପର୍ଯ୍ୟାୟରେ ପ୍ରତି ଗ୍ରାମ ପଞ୍ଚାୟତରେ ଗୋଟିଏ ଲେଖାଏଁ ହଷ୍ଟେଲ ବ୍ୟବସ୍ଥା କରିବାପାଇଁ ସ୍ଥିର ନିଆଯାଇ ୧୯୮୧-୮୨ ମସିହାଠାରୁ କାର୍ଯ୍ୟ ଆରମ୍ଭ କରାଯାଇଅଛି । ବର୍ତ୍ତମାନ ପ୍ରାୟ ୯୧୧ଟି ଛାତ୍ରାବାସ ଖୋଲୁହେଲାଣି ଏବଂ ଅବଶିଷ୍ଟ ଛାତ୍ରାବାସଗୁଡ଼ିକ ଆସନ୍ତା ବର୍ଷସୁଦ୍ଧା ଖୋଲିବ । ଏହିପରି ଛାତ୍ରାବାସ ହରିଜନ ଅଧ୍ୟୁଷିତ ଅଞ୍ଚଳରେ ମଧ୍ୟ ଆରମ୍ଭ କରିବା ପାଇଁ ନୀତିଗତ ନିଷ୍ପତ୍ତି ନିଆଯାଇଅଛି ।

## ଶୋଷଣ ରକ୍ଷାକାରୀ ବ୍ୟବସ୍ଥା

ତପସିଲଭୁକ୍ତ ଗୋଷ୍ଠୀ ଓ ତପସିଲଭୁକ୍ତ ଜାତି ଲୋକମାନଙ୍କୁ ସମସ୍ତ ପ୍ରକାର ଶୋଷଣରୁ ରକ୍ଷା କରି ସେମାନଙ୍କର ସ୍ୱାର୍ଥରକ୍ଷା କରିବା ସଙ୍ଗେ ସଙ୍ଗେ ସାମାଜିକ ନ୍ୟାୟ ପ୍ରଦାନ କରିବା ନିମନ୍ତେ କେତେକ ସ୍ୱତନ୍ତ୍ର ବିନିୟମ ଓ ଆଇନ୍ ପ୍ରଣୟନ କରାଯାଇ କାର୍ଯ୍ୟକାରୀ ହେଉଅଛି । ଏତଦ୍‌ବ୍ୟତୀତ ସରକାରଙ୍କର ଜଙ୍ଗଲ ନୀତି, ଶ୍ରମିକ ନୀତି, ଆଦିବାସୀ ଓ ହରିଜନମାନଙ୍କୁ ଶୋଷଣରୁ ରକ୍ଷା କରିବାରେ ବିଶେଷ ସହାୟକ ହୋଇଅଛି । ଆଦିବାସୀ ଉପଯୋଜନା ଅଞ୍ଚଳରେ ଦେଶୀ ମଦ ଦୋକାନଗୁଡ଼ିକ ପର୍ଯ୍ୟାୟକ୍ରମେ ବନ୍ଦ କରିବା ପାଇଁ ନିଷ୍ପତ୍ତି ହୋଇସାରିଅଛି ।

## ଚାକିରିରେ ସ୍ଥାନ ସଂରକ୍ଷଣ ନୀତି

ସରକାରୀ ଚାକିରୀରେ ଆଦିବାସୀ ଓ ହରିଜନଙ୍କ ପାଇଁ ସ୍ଥାନ ସଂରକ୍ଷଣ ସଂପର୍କରେ ପ୍ରଣୀତ ଆଇନ୍ ଓ ନିୟମ ୧-୭-୧୯୭୬ରୁ କାର୍ଯ୍ୟକାରୀ ହୋଇଅଛି । ଏହି ଆଇନ୍ ୧୯୮୨ରେ ପରିବର୍ତ୍ତିତ ହୋଇ ଆଇନର ପରିସର ବୃଦ୍ଧି କରାଯାଇଥିଲା ପୁନର୍ବାର ଏହି ୧୯୮୭ରେ ପରିବର୍ତ୍ତିତ ହୋଇ ଅତ୍ୟନ୍ତ ପ୍ରଗତିଶୀଳ ଓ ଯୁଗୋପଯୋଗୀ ହୋଇପାରିଛି । ଯେଉଁ ନିଯୁକ୍ତିକାରୀ ପଦାଧିକାରୀ ଏହି ଆଇନ୍‌ର ଖିଲାପ କରି ନିଯୁକ୍ତି ଦେବେ, ସେଇ ଖିଲାପକାରୀଙ୍କୁ ଦଣ୍ଡବିଧାନର ବ୍ୟବସ୍ଥା ଆଇନ୍‌ରେ ରଖାଯାଇଛି ।

## ଆନ୍ତଃଜାତି ବିବାହ

ହରିଜନ ହିଂଦୁ ଓ ସବର୍ଣ୍ଣ ହିଂଦୁମାନଂକ ମଧ୍ୟରେ ସୁସଂଗତି ପ୍ରତିଷ୍ଠା କରିବା ଲକ୍ଷ୍ୟରେ ପ୍ରତ୍ୟେକ ଦଂପତିଂକପାଇଁ ୩୦୦୦ ଟଂକା ଲେଖାଏଁ ଆର୍ଥିକ ପ୍ରୋତ୍ସାହନ ଦିଆଯାଇ ସେମାନଂକ ମଧ୍ୟରେ ଆନ୍ତର୍ଜାତି ବିବାହ ( intercaste marriage ) ପ୍ରୋତ୍ସାହିତ କରଯାଉଅଛି ।

ନାଗରିକ ସୁରକ୍ଷା ଆଇନ୍ ଆଦିବାସୀ ଓ ହରିଜନଂଙ୍କ ଉପରେ ହେଉଥିବା ଅତ୍ୟାଚାର ବିରୁଦ୍ଧରେ ବିଭିନ୍ନ ପଦକ୍ଷେପ ନିଆଯାଇଛି । ନାଗରିକ ସୁରକ୍ଷା ଆଇନକୁ କାର୍ଯ୍ୟକାରୀ କରିବା ଲକ୍ଷ୍ୟରେ ଓ ବିଭିନ୍ନ ପଦକ୍ଷେପ ନିଆଯାଇଛି । ଅସ୍ପୃଶ୍ୟତା ଓ ଅତ୍ୟାଚାର ଜନିତ ଘଟଣାରେ ତୁରନ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାପାଇଁ ପୋଲିସ୍ ସଂସ୍ଥାକୁ ସୁଦୃଢ଼ କରଯାଇଅଛି ଓ ନିର୍ଦ୍ଦିଷ୍ଟ ନିର୍ଦ୍ଦେଶନାମାନ ଦିଆଯାଇଅଛି । ବିଧାନ ସଭା ସଦସ୍ୟ, ବେସରକାରୀ ସଂସ୍ଥାର କର୍ମକର୍ତ୍ତା, ଉଚ୍ଚସ୍ତରୀୟ ସରକାରୀ ପଦାଧିକାରୀଂକୁ ନେଇ ଏକ କମିଟି ଗଠନ କରଯାଇଛି । କମିଟି ଅତ୍ୟାଚାର ସମ୍ବଂଧରେ ସ୍ଥାନ ପରିଦର୍ଶନକରି ତଦନ୍ତ କରିବା ସଂଗେ ସଂଗେ ବିହିତ କାର୍ଯ୍ୟାନୁଷ୍ଠାନପାଇଁ ସୁପାରିଶ୍ କରିଥାଏ । ବିଶେଷତଃ ଏହି ଅତ୍ୟାଚାରର ଯେପରି ପୁନରାବୃତ୍ତି ନଘଟେ ସେଥିନିମନ୍ତେ ନିର୍ଦ୍ଦିଷ୍ଟ କାର୍ଯ୍ୟପନ୍ଥାର ସୂଚନା ଦେଇଥାଏ । ଅତ୍ୟାଚାରିତ ପରିବାରକୁ ଆର୍ଥିକ ସାହାଯ୍ୟ ଦିଆଯାଇଥାଏ । ଏହି ଆର୍ଥିକ ସାହାଯ୍ୟର ପରିମାଣ ତା-୨୯-୧୧-୧୯୮୫ ତାରିଖଠାରୁ ବୃଦ୍ଧି କରଯାଇଥିଲା । ପୁନର୍ବାର ଅତ୍ୟାଚାରଜନିତ ମୃତ୍ୟୁ ଓ ସ୍ଥାୟୀ ଅକ୍ଷମତା ସ୍ଥଳରେ ଏହି ଆର୍ଥିକ ସାହାଯ୍ୟର ପରିମାଣ ଟ୧୦,୦୦୦ ପରିବର୍ତ୍ତେ ୨-୨-୧୯୮୮ ତାରିଖଠାରୁ ଟ୨୦,୦୦୦କୁ ବୃଦ୍ଧି କରଯାଇଛି ।

## ଆଇନଗତ ସାହାଯ୍ୟ

ନାଗରିକ ସୁରକ୍ଷା ଆଇନ ସଂପର୍କୀୟ ମକଦ୍ଦମା ଅସ୍ପୃଶ୍ୟତାଜନିତ ମାମଲା ଓ କେତେକ ନିର୍ଦ୍ଦିଷ୍ଟ ଜମିଜମା ସଂପର୍କୀୟ ମକଦ୍ଦମାରେ ହରିଜନ ଓ ଆଦିବାସୀ ପକ୍ଷରୁ ଆଇନଗତ ସାହାଯ୍ୟ ମଧ୍ୟ ଦିଆଯାଇଥାଏ ।

---

ନିର୍ଦ୍ଦେଶକ ତଥା ଅତିରିକ୍ତ ଶାସନ ସଚିବ,
ଆଦିବାସୀ ଓ ହରିଜନ କଲ୍ୟାଣ ବିଭାଗ ।

# ବିଦ୍ୟୁତ୍ ଶକ୍ତିର ସୁପରିଚ୍ଛାଳନା

ଶ୍ରୀ ପ୍ରଶାନ୍ତ କୁମାର କର

ଦେଶର ଅର୍ଥନୈତିକ ଅଭିବୃଦ୍ଧି ଓ ସାମାଜିକ ଉନ୍ନତି ପାଇଁ ଯେତେପ୍ରକାର ପ୍ରୟୋଜନୀୟ ବ୍ୟବସାୟିକ ଶକ୍ତି ବ୍ୟବହୃତ ହୁଏ ସେଥିମଧ୍ୟରୁ ବିଦ୍ୟୁତ୍ ଶକ୍ତିର ବ୍ୟବହାର ସର୍ବାଧିକ । ୧୯୫୩ ରୁ ୧୯୮୫ ମସିହା ମଧ୍ୟରେ ବିଦ୍ୟୁତ୍ ଶକ୍ତି ବ୍ୟବହାରର ଅଭିବୃଦ୍ଧି ଶତକଡା ୯.୪ ହାରରେ ବଢ଼ିବାର ଲକ୍ଷ କରାଯାଇଛି । ମାତ୍ର ଉକ୍ତ ସମୟ ସୀମା ମଧ୍ୟରେ କୋଇଲା ଓ ତୈଳ ବ୍ୟବହାରର ଅଭିବୃଦ୍ଧି ହାର ଯଥାକ୍ରମେ ଶତକଡା ୩.୩ ଓ ୬.୫ ଥିଲା ।

ବର୍ତ୍ତମାନ ଓଡ଼ିଶାରେ ବିଦ୍ୟୁତ୍ ଶକ୍ତିର ଚାହିଦା, ଯୋଗାଣଠାରୁ ଯଥେଷ୍ଟ ଅଧିକ । ରାଜ୍ୟ ଏକ ନିଅଣ୍ଟିଆ ପରିସ୍ଥିତି ମଧ୍ୟ ଦେଇ ଗତି କରୁଥିବାରୁ, ବିଦ୍ୟୁତ୍ ଶକ୍ତିର ସୁପରିଚ୍ଛାଳନା ଦ୍ବାରା ଆବଶ୍ୟକୀୟ ଶକ୍ତି ଯୋଗାଣ କର୍ତ୍ତୃପକ୍ଷଙ୍କ ନିକଟରେ ଏକ ସମସ୍ୟା ରୂପେ ଦେଖାଦେଇଛି ।

ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର, ସରବରାହ ଓ ବଣ୍ଟନ ପ୍ରଣାଳୀ ଏବଂ ବିଭିନ୍ନ ଶ୍ରେଣୀର ସଂଯୋଜିତ ଲୋଡ୍ ବିଦ୍ୟୁତ୍ ଯୋଗାଣ ପଦ୍ଧତିକୁ ବୁଝାଯାଏ । ଉତ୍ପାଦିତ ବିଦ୍ୟୁତ୍ ଶକ୍ତି ବିଦ୍ୟୁତ୍ କେନ୍ଦ୍ରମାନଙ୍କରୁ ସରବରାହ ଓ ବଣ୍ଟନ ପ୍ରଣାଳୀ ମଧ୍ୟଦେଇ ନିରବଚ୍ଛିନ୍ନ ଭାବରେ ନିୟନ୍ତ୍ରିତ ହୋଇ ଗ୍ରାହକମାନଙ୍କ ନିକଟରେ ପହଞ୍ଚିବା ଆବଶ୍ୟକ । ବିଦ୍ୟୁତ୍ ଶକ୍ତି ଏକ ବିଚିତ୍ର ସାମଗ୍ରୀ । ଏହା ଉତ୍ପାଦନ ମାତ୍ରେ ବ୍ୟବହାର ହୋଇଥାଏ ଏବଂ ବ୍ୟବହାରର ପରିମାଣ ଗ୍ରାହକମାନଙ୍କ ନିୟନ୍ତ୍ରଣାଧୀନ । ଏହି ପରିପ୍ରେକ୍ଷୀରେ ବିଦ୍ୟୁତ୍ ଶକ୍ତିର ସୁପରିଚ୍ଛାଳନା ନିର୍ଦ୍ଦିଷ୍ଟ ପଦ୍ଧତି ଅନୁସାରେ ବିଦ୍ୟୁତ୍ ଉତ୍ପାଦନ ଓ ପରିବହନ ଉପରେ ନିର୍ଭରଶୀଳ । କିନ୍ତୁ ଏକ ସଠିକ ପଦ୍ଧତି ଅନୁସରଣ ଏକାଧିକ କାରଣ ଯୋଗୁଁ ସହଜ ସାଧ୍ୟ ନୁହେଁ ।

ପାୱାର ସିଷ୍ଟମ ସୁପରିଚ୍ଛାଳନା ପାଇଁ କୌଣସି ସମୟରେ ହଠାତ୍ ଲୋଡ୍ ବୃଦ୍ଧି ପାଇଲେ ଚାଲୁଥିବା ୟୁନିଟ୍ ମାନଙ୍କର କ୍ଷମତା ତାହା ବହନ କରିବା ଦରକାର । ଏଥିପାଇଁ "ସ୍ପିନିଂ ରିଜର୍ଭ" ପାୱାର ହାଉସମାନଙ୍କରେ ରହିବା ଆବଶ୍ୟକ । ଏହାର ଅଭାବ ଥିଲେ ଲୋଡ୍ ବଢ଼ିବା ଦ୍ବାରା ବା ହଠାତ୍ କୌଣସି ୟୁନିଟ୍ ଅଚଳ ହେଲେ ସିଷ୍ଟମ ଆବୃତ୍ତି କମିଯିବ ଓ ବିଦ୍ୟୁତ୍ ସରବରାହରେ ବ୍ୟାଘାତ ଘଟିବ । ଓଡ଼ିଶାରେ ସଂଚୟ ପ୍ରଣାଳୀର ଜଳ ବିଦ୍ୟୁତ୍ କେନ୍ଦ୍ରମାନ ରହିଥିବାରୁ ଜୁଲାଇଠାରୁ ଡିସେମ୍ବର ପର୍ଯ୍ୟନ୍ତ ବିଦ୍ୟୁତ୍ ଶକ୍ତି ଉତ୍ପାଦନର ନିର୍ଦ୍ଧାରିତ ପରିମାଣ କିଛି ଅଂଶରେ ନିୟନ୍ତ୍ରଣ କରାଯାଇପାରେ । କିନ୍ତୁ ଯେତେବେଳେ ଜଳ ଭଣ୍ଡାରର ଜଳ ପତ୍ତନ ନିମ୍ନକୁ ଖସିଆସେ ସେତେବେଳେ ଶକ୍ତି ଉତ୍ପାଦନର ପରିମାଣ ଓ ଯୋଗାଣ ମଧ୍ୟରେ ଭାରସାମ୍ୟ ରକ୍ଷିବା କଷ୍ଟକର ହୁଏ ।

ଯଦିଓ ୧୯୬୧-୬୨ ମସିହାରୁ ୧୯୮୭-୮୮ ମଧ୍ୟରେ ରାଜ୍ୟ ବିଦ୍ୟୁତ୍ କେନ୍ଦ୍ରମାନଙ୍କ ସ୍ଥାପିତ ଶକ୍ତି ୧୫୭ ମେଗାୱାଟରୁ ୧,୩୯୪ ମେଗାୱାଟକୁ ବୃଦ୍ଧି ପାଇଅଛି, ତଥାପି କେନ୍ଦ୍ରମାନଙ୍କର ପ୍ରକୃତ ସାମର୍ଥ୍ୟ ୬୫୫ ମେଗାୱାଟ ହୋଇଥିବାରୁ ତାହା ଚାହିଦା ଅପେକ୍ଷା କମ୍ । ଅନିୟମିତ ବୃଷ୍ଟିପାତ ଯୋଗୁଁ ଜଳ ବିଦ୍ୟୁତ୍ କେନ୍ଦ୍ରମାନଙ୍କର ଉତ୍ପାଦନ ଶକ୍ତି ହ୍ରାସ ପାଇଲେ ଓ ତାଳଚେର ତାପଜ ବିଦ୍ୟୁତ୍ କେନ୍ଦ୍ର ଆଶାନୁରୂପ ବିଦ୍ୟୁତ୍ ଉତ୍ପାଦନ ନ ହେଲେ ରାଜ୍ୟରେ ପ୍ରକୃତ ଶକ୍ତି ଉତ୍ପାଦନ କେନ୍ଦ୍ରମାନଙ୍କ ସାମର୍ଥ୍ୟଠାରୁ କମିଯାଏ । ଏପରି ପରିସ୍ଥିତିରେ ବୃହତ ଶିଳ୍ପମାନଙ୍କ ଉପରେ ବିଦ୍ୟୁତ୍ ବ୍ୟବହାର କଟକଣା ଜାରିଥିବା ସତ୍ତ୍ବେ ବିଦ୍ୟୁତ୍ ଶକ୍ତି ବହୁଳ ପରିମାଣରେ ପଡୋଶୀ ରାଜ୍ୟ ମାନଙ୍କରୁ ଆମଦାନି କରିବାକୁ ପଡ଼ିଥାଏ ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଏପ୍ରିଲ୍ ଠାରୁ ଜୁନ୍ ୧୯୮୮ ମଧ୍ୟରେ ରାଜ୍ୟ କେନ୍ଦ୍ରମାନଙ୍କରୁ ହାରାହାରି ୪୫୦ ମେଗାୱାଟ୍ ଓ ପୂର୍ବାଞ୍ଚଳ ଗ୍ରୀଡ୍, ମଧ୍ୟପ୍ରଦେଶ ଓ ନାଲ୍କୋ କ୍ୟାପ୍ଟିଭ୍ ପ୍ଲାଣ୍ଟରୁ ହାରାହାରି ୨୦୦ ମେଗାୱାଟ୍ ଏହିପରି ମୋଟ ୬୫୦ ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ମିଳିପାରେ । ମାତ୍ର ୬୫୦ ମେଗାୱାଟ ଶକ୍ତି ମିଳିଲେ ତାହା ସୁଚାରୁରୂପେ ବଣ୍ଟନ କରିବା କଷ୍ଟସାଧ୍ୟ । କାରଣ ଏହି ସମୟରେ ନିୟନ୍ତ୍ରିତ ଚାହିଦା ପ୍ରାୟ ୭୬୦ ମେଗାୱାଟରୁ ୭୯୦ ମେଗାୱାଟ୍ ମଧ୍ୟରେ ରହିବ । ତାପଜ ବିଦ୍ୟୁତ୍ କେନ୍ଦ୍ରର ଉତ୍ପାଦନ ବଢ଼ାଇ ଯେତେଦୂର ସମ୍ଭବ ଅଭାବ ପୂରଣ କରିବାର ଯୋଜନା ହୋଇଅଛି । ୩୫.୬୨ କୋଟି ଟଙ୍କା ବ୍ୟୟରେ ତାଳଚେର କେନ୍ଦ୍ରର ସଂସ୍କାର ଓ ନବିକରଣ କାର୍ଯ୍ୟ ଆଗେଇ ଚାଲିଛି । ଏହି କାର୍ଯ୍ୟର ସମାପ୍ତିପରେ ୧୯୯୦ ମସିହାଠାରୁ ଉତ୍ପାଦନ ହାରାହାରି ୫୦ ମେଗାୱାଟ ବଢ଼ିପାରେ । ମାତ୍ର ଏହା ନିୟନ୍ତ୍ରିତ ଶକ୍ତି ଚାହିଦା ମେଣ୍ଟାଇବା ପାଇଁ ମଧ୍ୟ ଯଥେଷ୍ଟ ନୁହେଁ ।

ଓଡ଼ିଶା ପାୱାର ସିଷ୍ଟମ ବର୍ତ୍ତମାନ ପୂର୍ବାଞ୍ଚଳ ବିଦ୍ୟୁତ୍ ଗ୍ରୀଡ୍ ସହ ସଂଯୁକ୍ତ ହୋଇ ଶକ୍ତି ସରବରାହ ହେଉଅଛି । କେନ୍ଦ୍ରୀୟ ପ୍ରକଳ୍ପ-ଫାରାକ୍କା ଓ ଚୁଖକାରୁ ଓଡ଼ିଶା ପ୍ରାପ୍ୟ ଅଂଶ ଆହରଣ କରା ହେଉଅଛି । ଏତଦ୍ବ୍ୟତୀତ

ପୂର୍ବଭାରତ ଗ୍ରୀଡ୍‌ରେ ସଂଯୁକ୍ତ ଥିବା ପାୱାର ସିଷ୍ଟମମାନଙ୍କରୁ ମଧ୍ୟ ପ୍ରଦେଶରୁ ବଳକା ଶକ୍ତି ଆମଦାନି ହେଉଅଛି । ଅନୁଗୁଳ ନିକଟସ୍ଥ ନାଲ୍‌କୋ କ୍ୟାପ୍‌ଟିଭ୍‌ପ୍ଲାଣ୍ଟରୁ ମଧ୍ୟ ବିଦ୍ୟୁତ୍ ଶକ୍ତି କିଣାଯାଇ ରାଜ୍ୟ ଗ୍ରୀଡ୍ ଜରିଆରେ ବଣ୍ଟନ କରାହେଉଛି । ପ୍ରତିଦିନ ଏହି ପରିଭାବରେ ପ୍ରାୟ ୨୦୦ ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ବାହାରୁ ରାଜ୍ୟ ଗ୍ରୀଡ୍‌ରେ ପ୍ରବାହିତ ହେଉଅଛି । କିନ୍ତୁ ଆମଦାନି ଶକ୍ତି ଯୋଗାଣର ପରିମାଣରେ ସ୍ଥିତିର ସ୍ଥିରତା ନାହିଁ । ଫଳରେ ବିଶେଷ କରି ଏପ୍ରିଲ୍‌ଠାରୁ ଜୁନ୍‌ମାସ ମଧ୍ୟରେ ଅର୍ଥାତ୍ ଯେତେବେଳେ ରାଜ୍ୟରେ ଜଳ ବିଦ୍ୟୁତ୍ କେନ୍ଦ୍ରର ଉତ୍ପାଦନ ଶକ୍ତି କମିଯାଉଛି ସେତେବେଳେ ବିଦ୍ୟୁତ୍ ଶକ୍ତିର ଉପଯୁକ୍ତ ବଣ୍ଟନ କରିବାରେ ଅସୁବିଧା ଦେଖାଦେଉଛି । ଚାହିଦା ଓ ଯୋଗାଣ ସମତୁଲ କରିବା ପାଇଁ ସାମୟିକ ବିଦ୍ୟୁତ୍ କଟକଣା ଅପରିହାର୍ଯ୍ୟ ହୋଇପଡ଼ିଛି । ଏହି ସମୟରେ ବିଦ୍ୟୁତ୍ ଯୋଗାଣରେ ଅନିୟମିତତା ଯୋଗୁଁ ଗ୍ରାହକମାନେ ନାନା ପ୍ରକାର ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି । ମାତ୍ର ଏହାକୁ ଏକତ୍ରୁଟି ପୂର୍ଣ୍ଣ ବିଦ୍ୟୁତ୍ ଶକ୍ତି ପରିଚାଳନା କାରଣ ବୋଲି ମନେ କରିବା ଠିକ୍ ନୁହେଁ ।

ମନେ ରଖିବାକୁ ହେବ ଯେ, ବିଦ୍ୟୁତ୍ ଯୋଗାଣ ପଦ୍ଧତିର ସୁପରିଚାଳନା ପାଇଁ ରାଜ୍ୟରେ ବିଦ୍ୟୁତ୍ କେନ୍ଦ୍ର, ଚାହିଦା ଅନୁଯାୟୀ ପ୍ରତିଷ୍ଠା କରିବା ଆବଶ୍ୟକ । କିନ୍ତୁ ଏହା ଖର୍ଚ୍ଚ ସାପେକ୍ଷ ହୋଇଥିବାରୁ ଯଥେଷ୍ଟ ୟୁନିଟ୍ ସ୍ଥାପନ ନିର୍ଦ୍ଧାରିତ ସମୟ ମଧ୍ୟରେ ସମ୍ଭବ ହେଉ ନାହିଁ । ଅନ୍ୟ ପକ୍ଷରେ କେନ୍ଦ୍ରୀୟ ପ୍ରକଳ୍ପରୁ ଉତ୍ପାଦିତ ଯେଉଁ ଅଂଶ ରାଜ୍ୟମାନଙ୍କୁ ଦିଆଯାଏ, ତାହା ମଧ୍ୟ ଅନେକାଂଶରେ ରାଜ୍ୟର ଯୋଜନା ଖର୍ଚ୍ଚ ପରିମାଣ ଉପରେ ନିର୍ଭର କରେ । ସୁତରାଂ ଯେଉଁ ରାଜ୍ୟରେ ଅର୍ଥାଭାବ ରହିଛି, ସେଠାରେ ବିଦ୍ୟୁତ ଶକ୍ତି ଯୋଗାଣର ଅଭିବୃଦ୍ଧି ପଡୋଶୀ ରାଜ୍ୟର ବଳକା ଶକ୍ତି ଆମଦାନୀ ଉପରେ ନିର୍ଭର କରିବ । କିନ୍ତୁ ବିଦ୍ୟୁତ ଶକ୍ତି ଚାହିଦାର ଅଭିବୃଦ୍ଧି ଏହିପରି ନିଅଣ୍ଟିଆ ରାଜ୍ୟରେ ଅଧିକ ହୋଇପାରେ । ଫଳରେ କ୍ରମାଗତଭାବେ ଆର୍ଥିକ ସ୍ୱଚ୍ଛଳତା ନଥିବା ରାଜ୍ୟ ଏକ ନିଅଣ୍ଟିଆ ପରିସ୍ଥିତି ମଧ୍ୟଦେଇ ଗତି କରିବ। ରାଜ୍ୟ କର୍ତ୍ତୃପକ୍ଷ କେନ୍ଦ୍ରୀୟ ପ୍ରକଳ୍ପରୁ ଅଧିକ ବିଦ୍ୟୁତ ଶକ୍ତି ମିଳିବା ପାଇଁ ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରିଛନ୍ତି । କେନ୍ଦ୍ର ସରକାର ଏ ବିଷୟ ମଧ୍ୟ ଅନୁଧ୍ୟାନ କରୁଛନ୍ତି ।

ସଂପ୍ରତି ପୂର୍ବାଞ୍ଚଳ ଗ୍ରୀଡ୍ ସୁପରିଚାଳନା ପାଇଁ କଲିକତାଠାରେ ଆଞ୍ଚଳିକ ଲୋଡ୍ ଡେସ୍‌ପାଚ କେନ୍ଦ୍ର ପ୍ରତିଷ୍ଠା ହୋଇଅଛି । ଏହି କେନ୍ଦ୍ରଟି ଭୁବନେଶ୍ୱରସ୍ଥିତ ରାଜ୍ୟ ଲୋଡ୍ ଡେସ୍‌ପାଚ କେନ୍ଦ୍ର ସହ ମାଇକ୍ରୋ ୱେଭ୍ ଦ୍ୱାରା ସଂଯୁକ୍ତ । ରାଜ୍ୟ ଲୋର୍ଡ ଡେସ୍‌ପାଚ କେନ୍ଦ୍ରଠାରେ ପ୍ରତିଦିନ ବିଦ୍ୟୁତ୍ କେନ୍ଦ୍ରମାନଙ୍କ ଶକ୍ତି ଉତ୍ପାଦନ ଓ ମୁଖ୍ୟ ଲାଇନ ଗୁଡ଼ିକରେ ପ୍ରବାହିତ ହେଉଥିବା ଶକ୍ତି ସମ୍ବନ୍ଧରେ ଆବଶ୍ୟକୀୟ ତଥ୍ୟ ସଂଗ୍ରହ ହୋଇଥାଏ । ଏହି ଗ୍ରୀଡ୍ ଅପରେସନ୍ ସଂସ୍ଥା ନିୟମିତଭାବରେ ତନଖି କରି ପ୍ରତିଦିନ କେଉଁ କେନ୍ଦ୍ରରୁ କେତେ ଶକ୍ତି ଉତ୍ପାଦିତ ହୋଇ କିପରି ବଣ୍ଟନ ହେବ ତାହା ସ୍ଥିର କରନ୍ତି । ଏହି କେନ୍ଦ୍ରଟିର କାର୍ଯ୍ୟ କମ୍ପ୍ୟୁଟର ମାଧ୍ୟମରେ ପରିଚାଳନା କରିବା ପାଇଁ ୧୩ କୋଟି ଟଙ୍କାର ଏକ ଯୋଜନା ପ୍ରସ୍ତୁତ ହୋଇଅଛି । ଏହା ୮ମ ଯୋଜନା ସମୟରେ (୧୯୯୦-୯୫) ସମାପ୍ତ ହେବାର ଲକ୍ଷ୍ୟ ରହିଛି । ୮ମ ଯୋଜନା କାଳରେ ରାଜ୍ୟ ମଧ୍ୟରେ ୪୦୦ କେ.ଭି. ଅତିଉଚ୍ଚ କ୍ଷମତା ସଂପନ୍ନ ଲାଇନ ଓ ସବ୍‌ଷ୍ଟେସନ କାର୍ଯ୍ୟକାରୀ ହେବ । ରାଜ୍ୟର ସର୍ବୋଚ୍ଚ ଚାହିଦା ୧୯୯୪-୯୫ ମସିହାରେ ୩,୨୮୩ ମେଗାୱାଟକୁ ବୃଦ୍ଧି ପାଇବାର ଅଟକଳ ହୋଇଅଛି । ଏହି କାରଣରୁ ୮ମ ଯୋଜନାରେ ପାୱାର ସିଷ୍ଟମ ପରିଚାଳନାରେ ଜଟିଳତା ଦେଖାଦେବ । ଏହାର ମୁକାବିଲା ପାଇଁ ଲୋର୍ଡ ଡେସପାଚ କମ୍ପ୍ୟୁଟର ମାଧ୍ୟମରେ ନିୟନ୍ତ୍ରଣ କରିବା ଆବଶ୍ୟକ ପଡୁଛି । କମ୍ପ୍ୟୁଟର ଦ୍ୱାରା ପରିଚାଳିତ କେନ୍ଦ୍ର ଜରିଆରେ ବିଦ୍ୟୁତ୍ ଶକ୍ତିର ସୁପରିଚାଳନା ଅନେକାଂଶରେ ସମ୍ଭବ ହେବ ।

ବିଦ୍ୟୁତ୍ ଶକ୍ତି ଉତ୍ପାଦନରେ ପରିବର୍ତ୍ତନ ଜନିତ ଅସୁବିଧା ସହିତ ଆଉ କେତେକ ବିଷୟ ବିଚାର କରିବାକୁ ପଡ଼ିବ । ରାଜ୍ୟର ବିଦ୍ୟୁତ୍ ଗ୍ରାହକ ସଂଖ୍ୟା ୧୯୬୧-୬୨ ମସିହାରେ ପ୍ରାୟ ୩୦ ହଜାର ଥିବା ସ୍ଥଳେ ୧୯୮୭-୮୮ରେ ୮ ଲକ୍ଷ ୩୨ ହଜାରକୁ ବୃଦ୍ଧି ପାଇଅଛି । ଉକ୍ତ ସମୟ ମଧ୍ୟରେ ଗ୍ରାମ ବିଦ୍ୟୁତ୍ କରଣର ସଂଖ୍ୟା ୮୧ ରୁ ୨୭ ହଜାର ୬ ଶହ ୮୨ ହୋଇଅଛି । ସେହିପରି ୧୯୬୬ ମାର୍ଚ୍ଚ ବେଳକୁ ୨୪୧ଟି ପମ୍ପସେଟ୍ ବିଦ୍ୟୁତ୍ କରଣ ହୋଇଥିବା ବେଳେ ବର୍ତ୍ତମାନ ତାହାର ସଂଖ୍ୟା ୩୯ ହଜାରରୁ ଊର୍ଦ୍ଧ୍ୱ । ୧୯୬୧-୬୨ ମସିହାରେ ମାତ୍ର ୬୯୦ଟି ଶିଳ୍ପ ପ୍ରତିଷ୍ଠାନ ବିଦ୍ୟୁତ୍ ଶକ୍ତି ବ୍ୟବହାର କରୁଥିଲେ । ଏମାନଙ୍କ ସଂଖ୍ୟା ଏପ୍ରିଲ୍ ୧୯୮୭ ସୁଦ୍ଧା ୨୦ ହଜାର ୭ ଶହ ୨୭କୁ ବୃଦ୍ଧି ପାଇଥିଲା । ଏହି ପରି ଭାବରେ ବିଦ୍ୟୁତ୍ ଗ୍ରାହକଙ୍କ ସଂଖ୍ୟା ବଢ଼ିବା ସଙ୍ଗେସଙ୍ଗେ ଶକ୍ତି ବ୍ୟବହାରରେ ମଧ୍ୟ କ୍ରମାଗତ ପରିବର୍ତ୍ତନ ହେଉଅଛି । ଏହାର ମୁକାବିଲା କରିବା ପାଇଁ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ଓ ସରବରାହ ପଦ୍ଧତି ମଧ୍ୟ ବଦଳାଇବାକୁ ପଡୁଛି । ଗ୍ରାମ ବିଦ୍ୟୁତ୍ କରଣ ଦ୍ୱାରା ଅର୍ଥନୈତିକ ଓ ସାମାଜିକ ଉନ୍ନତି ପରିଲକ୍ଷିତ ହେଉଅଛି ସତ, ମାତ୍ର ଏ କାର୍ଯ୍ୟ ଯୋଗୁଁ ବିଦ୍ୟୁତ୍ ପରିଷଦର କ୍ଷତି ବଢ଼ିବାରେ ଲାଗିଛି । ଗ୍ରାମାଞ୍ଚଳରେ ବିନିଯୋଗ ହୋଇଥିବା ଅର୍ଥ ଉପରେ ଉପଯୁକ୍ତ ଆୟ ହେଉ ନାହିଁ । ସରବରାହ ଓ ବଣ୍ଟନ ଜନିତ କ୍ଷତି ବୃଦ୍ଧି ପାଉଅଛି । ସହରାଞ୍ଚଳରେ ମଧ୍ୟ କ୍ରମାଗତ ଗ୍ରାହକ ସଂଖ୍ୟା ବଢ଼ିବାରୁ ବଣ୍ଟନ ପ୍ରଣାଳୀ ଅତ୍ୟଧିକ ଭାରାକ୍ରାନ୍ତ ହୋଇ ପିକ୍ ଲୋର୍ଡ ସମୟରେ ଭୋଲ୍‌ଟେଜ୍ କମିଯାଉଅଛି ଓ ବଣ୍ଟନ ପ୍ରଣାଳୀରେ କ୍ଷତିର ପରିମାଣ ବଢୁଅଛି । ଏହା କମାଇବା ପାଇଁ ରାଜ୍ୟ ବିଦ୍ୟୁତ୍ ପରିଷଦ ସିଷ୍ଟମ ଇଂପ୍ରୁଭ୍‌ମେଣ୍ଟ ଯୋଜନା କାର୍ଯ୍ୟକାରୀ କରାଉଛନ୍ତି । ବେନିୟମଭାବେ ଚୋରି ଓ ମିଟର ଅକାମୀ କରିବା ଯୋଗୁଁ ମଧ୍ୟ ବିଦ୍ୟୁତ୍ ପରିଷଦର କ୍ଷତି ବଢୁଅଛି । ଭ୍ରାମ୍ୟମାଣ ଅଦାଲତ ମାଧ୍ୟମରେ ଘନଘନ ଅନୁସଂଧାନ ଚଳାଇ ଦୋଷୀମାନଙ୍କୁ ଦଣ୍ଡ ଦେବାର ବ୍ୟବସ୍ଥା ହୋଇଅଛି ସତ କିନ୍ତୁ ଏ ଦିଗରେ ଜନ ସଚେତନତା ଏକାନ୍ତ ଆବଶ୍ୟକ । ବେନିୟମ ଭାବେ ବିଦ୍ୟୁତ୍ ବ୍ୟବହାର କରିବା ଫଳରେ ଟ୍ରାନସ୍‌ଫରମର ଗୁଡ଼ିକ ଅତ୍ୟଧିକ ଭାରାକ୍ରାନ୍ତ ହୋଇ ଅକାମୀ ହୋଇପଡୁଛି । ଟ୍ରାନସ୍‌ଫରମର ପୋଡ଼ିଯୋଗୁଁ ବର୍ଷକୁ ପ୍ରାୟ ୨ କୋଟି ଟଙ୍କାର ଆର୍ଥିକ କ୍ଷତି ହେଉଅଛି । ଏହାଛଡା ତାର ଓ ଅନ୍ୟାନ୍ୟ ସରଞ୍ଜାମ ଚୋରି ବାବଦ ହାରାହାରି ୫୦ ଲକ୍ଷ ଟଙ୍କା କ୍ଷତି ସହିବାକୁ ପଡୁଛି । ଆର୍ଥିକ କ୍ଷତି ସଙ୍ଗେସଙ୍ଗେ ଏହି କାରଣରୁ କେତେକ ଅଞ୍ଚଳରେ ବିଦ୍ୟୁତ୍ ଯୋଗାଣ ବାଧାପ୍ରାପ୍ତ ହେଉଅଛି । ରାଜ୍ୟ ବିଦ୍ୟୁତ୍ ପରିଷଦର କ୍ଷତି କମି ଆୟ ନ ବଢ଼ିଲେ ଉପଯୁକ୍ତ ରକ୍ଷଣାବେକ୍ଷଣ ଦ୍ୱାରା ପାୱାର ସିଷ୍ଟମ ସୁପରିଚାଳନା ସମ୍ଭବ ପର ନୁହେଁ ।

ସାଧାରଣତଃ ପ୍ରତିଦିନ ସଂଧ୍ୟା ୬ ଘଣ୍ଟା ୩୦ ମିନିଟରୁ ରାତି ୯.୩୦ ମିନିଟ୍ ମଧ୍ୟରେ ବିଦ୍ୟୁତ୍ ଶକ୍ତିର ଚାହିଦା ଅନ୍ୟ ସମୟ ଅପେକ୍ଷା ପ୍ରାୟ ଦେଢ଼ଗୁଣ ବଢ଼ିଥାଏ । ଏଥିପାଇଁ ପାୱାର ସିଷ୍ଟମର ପିକ୍ ଲୋର୍ଡ ଜନିତ କ୍ଷତି ବେଶୀ ହୁଏ ଓ ଭୋଲ୍‌ଟେଜରେ ସ୍ଥିରତା ଆଣିବା କଷ୍ଟକର ହୋଇପଡେ । ଏହାର ସୁପରିଚାଳନା ପାଇଁ ଗ୍ରାହକମାନେ କେତେକ ପଦକ୍ଷେପ ଗ୍ରହଣ କରିବା ଆବଶ୍ୟକ ।

(୧) ଚାଉଳ କଳ, କରତ କଳ, ବରଫ କଳ ଇତ୍ୟାଦି କାରଖାନାମାନ ରାତି ୧୦ ଘଣ୍ଟାଠାରୁ ସକାଳ ସାଢେ ୭ ଘଣ୍ଟା ମଧ୍ୟରେ ଚଳାଇବା ଆବଶ୍ୟକ ।

(୨) ଯେଉଁ ସବୁ ଶିଳ୍ପ ପ୍ରତିଷ୍ଠାନମାନଙ୍କରେ ଚୁଲ୍ଲୀ ରହିଛି ପିକ୍ ଲୋର୍ଡ ସମୟରେ ଯେପରି ତରଳାଇବା କାର୍ଯ୍ୟ ନ କରାଯାଏ ତାହା ଦେଖିବାକୁ ହେବ ।

(୩) ପାନୀୟ ଜଳ ଯୋଗାଣ ପମ୍ପଗୁଡ଼ିକ ପିକ୍ ଲୋର୍ଡ ସମୟରେ ଚଳାଇବା ଉଚିତ୍ ନୁହେଁ ତାହା ପୂର୍ବରୁ ଉପରେ ଥିବା ଜଳ ମଞ୍ଚ ଓ ଷ୍ଟୋରେଜ ଟ୍ୟାଙ୍କ ଗୁଡ଼ିକରେ ପମ୍ପ ଚଳାଇ ଜଳ ଭର୍ତ୍ତି କରିବା ଆବଶ୍ୟକ ।

(୪) ୧୦୦ କିଲୋ ୱାଟ ପର୍ଯ୍ୟନ୍ତ ଚୁକ୍ତି ଥିବା କାରଖାନାମାନେ ବ୍ୟବହୃତ ୟୁନିଟ୍ ହିସାବରେ ଶୁଳ୍କ ଦିଅନ୍ତି । ଚାହିଦା ପ୍ରାପ୍ୟ ନ

ଦେଇଥିବାରୁ ଅନେକେ ଇଚ୍ଛା ଅନୁସାରେ ବିଦ୍ୟୁତ୍ ଶକ୍ତି ବ୍ୟବହାର କରିଥାନ୍ତି । ପିକ୍ ଲୋର୍ଡ ସମୟରେ ଚାହିଦା ସବୁଠାରୁ କମ୍ ରଖିବା ଆବଶ୍ୟକ ।

ବିଦ୍ୟୁତ୍ ଶକ୍ତିର ଅଭାବ ହେତୁ ସବୁପ୍ରକାର ଶିଳ୍ପ ପ୍ରତିଷ୍ଠାନ ଉପରେ ପିକ୍ ଲୋର୍ଡ ସମୟରେ କଟକଣା ବର୍ତ୍ତମାନ ଲାଗୁ କରାଯାଇଛି । ସେଥିପାଇଁ ଉପରୋକ୍ତ ନିୟମମାନ ପାଳନ କରିବା ଅତ୍ୟନ୍ତ ଜରୁରୀ । ଗ୍ରାହକମାନଙ୍କ ସାହାଯ୍ୟ ଓ ସହଯୋଗ ମିଳିଲେ ଏହି ଅସୁବିଧା ଦୂର କରାଯାଇ ବିଦ୍ୟୁତ୍ ଶକ୍ତିର ସୁପରିଚାଳନା ଅନେକାଂଶରେ ସମ୍ଭବ ହୁଅନ୍ତା ।

ରାଜ୍ୟର ୨୦,୭୨୭ରୁ ଉର୍ଦ୍ଧ୍ୱ ଶିଳ୍ପ ସଂସ୍ଥା ଓ ୩୯ ହଜାରରୁ ଉର୍ଦ୍ଧ୍ୱ ପମ୍ପ ସେଟ୍ ମିଳୁଥିବା ବିଦ୍ୟୁତ୍ ଶକ୍ତିର ଶତକଡା ୭୫ ଭାଗ ବ୍ୟବହାର କରନ୍ତି ଏବଂ ଘରୋଇ ବ୍ୟବହାରର ପରିମାଣ ସମଗ୍ର ବ୍ୟବହୃତ ଶକ୍ତିର ଶତକଡା ୧୧ ଭାଗ ଅଟେ । ଶକ୍ତି ସଂରକ୍ଷଣ ପ୍ରଣାଳୀ ଅବଲମ୍ବନ କରି ଏମାନଙ୍କର ବିଦ୍ୟୁତ୍ ଚାହିଦା କମ୍ କରାଯାଇପାରେ । ଗୋଟିଏ ୟୁନିଟ୍ ସଞ୍ଚୟ କରିବା ପ୍ରାୟ ୧.୨୫ ୟୁନିଟ୍ ଉତ୍ପାଦନ କରିବା ସଙ୍ଗେ ସମାନ । ଶିଳ୍ପ ପ୍ରତିଷ୍ଠାନରେ, ପମ୍ପସେଟ୍ ପରିଚାଳନାରେ ଓ ଘରୋଇ ବ୍ୟବହାରରେ ଶକ୍ତି ସଂରକ୍ଷଣ ଦ୍ୱାରା ବିଦ୍ୟୁତ୍ ଶକ୍ତିର ଅଯଥା ଖର୍ଚ୍ଚ କମ୍ କରିହେବ । ଶକ୍ତି ସଂରକ୍ଷଣ ଦ୍ୱାରା ଯେଉଁ ଶକ୍ତି ସଞ୍ଚୟ ହୋଇ ପାରିବ ତାହା ଆବଶ୍ୟକ ମତେ ବ୍ୟବହାର କଲେ ରାଜ୍ୟ ବିଦ୍ୟୁତ୍ ପରିଷଦ, ଗ୍ରାହକ ତଥା ରାଜ୍ୟ ସରକାର ଲାଭବାନ ହୋଇ ପାରିବେ । ନିଅଣ୍ଟିଆ ପରିସ୍ଥିତିରେ ମଧ୍ୟ ଉନ୍ନତି ଦେଖାଦେବ ।

ସୁତରାଂ ଦେଖାଯାଏ ଯେ, ବିଦ୍ୟୁତ୍ ଶକ୍ତିର ସୁପରିଚାଳନା ପାଇଁ ଆବଶ୍ୟକମତେ ଶକ୍ତି ଉତ୍ପାଦନ, ବାଧାହୀନ ପରିବହନ ପ୍ରଣାଳୀ, ଉପଯୁକ୍ତ ଲୋର୍ଡ ଡେସ୍‌ପାଚ ସେଣ୍ଟର ଉପରେ ହିଁ କେବଳ ନିର୍ଭରଶୀଳ ନୁହେଁ । ବିଶେଷ କରି ବିଦ୍ୟୁତ୍ ଅଭାବ ଥିବାବେଳେ ପ୍ରତ୍ୟେକ ଗ୍ରାହକ ବିଦ୍ୟୁତ୍ ଶକ୍ତିର ଉପଯୁକ୍ତ ବ୍ୟବହାର କରିବା ଆବଶ୍ୟକ ଏବଂ ସମସ୍ତ ପ୍ରକାର ଶକ୍ତି ଅପଚୟ ବନ୍ଦ କରିବା ପ୍ରୟୋଜନ । ରାଜ୍ୟବାସୀ ମଧ୍ୟ ବିଦ୍ୟୁତ୍ ଶକ୍ତିକୁ ରାଷ୍ଟ୍ରୀୟ ସମ୍ପଦ ଭାବି ଏହାର ଚୋରି ବନ୍ଦ କରିବା ପାଇଁ ସର୍ବୋତ୍ତଭାବେ ଚେଷ୍ଟା କରି ଦୂର ଦୃଷ୍ଟିର ପରିଚୟ ଦେବା ଏକାନ୍ତ ଜରୁରୀ ।

---

ଅଧ୍ୟକ୍ଷ, ଓଡ଼ିଶା ରାଜ୍ୟ ବିଦ୍ୟୁତ୍ ପରିଷଦ,
ଭୁବନେଶ୍ୱର ।



ଉଲ୍ଲେଖନୀୟ ସେବା କାର୍ଯ୍ୟ ପାଇଁ ରାଷ୍ଟ୍ରପତିଙ୍କ ପୋଲିସ୍
ପଦକ ପ୍ରାପ୍ତ ଅଫିସରମାନଙ୍କ ସହ ପ୍ରଧାନମନ୍ତ୍ରୀ

# ଓଡ଼ିଶାରେ କ୍ଷୁଦ୍ର ଶିଳ୍ପର ବିକାଶ

**ଶ୍ରୀ ଅନନ୍ତ ନାରାୟଣ ଦାସ**

ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ଶିଳ୍ପର ଦ୍ରୁତ ବିକାଶ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଓଡ଼ିଶା ଏକ ଖଣିଜ ତଥା ପ୍ରାକୃତିକ ସଂପଦ ପରିପୂର୍ଣ୍ଣ ରାଜ୍ୟ ହୋଇଥିଲେ ହେଁ ୧୯୮୦ ମସିହା ପର୍ଯ୍ୟନ୍ତ ରାଜ୍ୟରେ ଶିଳ୍ପର ଉପଯୁକ୍ତ ବିକାଶ ହୋଇପାରିନଥିଲା । ଶିଳ୍ପ ପାଇଁ ଭିତ୍ତିଭୂମି ଉନ୍ନୟନ, ବିଦ୍ୟୁତ୍‌ଶକ୍ତି ତଥା କଞ୍ଚାମାଲର ଅଭାବ ଦ୍ରୁତ ଶିଳ୍ପାୟନ ପଥରେ ବାଧା ସୃଷ୍ଟି କରିଥିଲା । ଷଷ୍ଠ ପଞ୍ଚବାର୍ଷିକ ଯୋଜନା ଆରମ୍ଭ ପୂର୍ବରୁ ୧୯୭୯-୮୦ ମସିହା ଶେଷ ସୁଦ୍ଧା ରାଜ୍ୟରେ ୫୭ଟି ବୃହତ୍ ଓ ମଧ୍ୟମ ଶିଳ୍ପ ଏବଂ ୯୧୧୯ ଟି କ୍ଷୁଦ୍ରଶିଳ୍ପ ଥିଲା । ଦ୍ରୁତ ଶିଳ୍ପ ପ୍ରସାରଣ ନିମନ୍ତେ ରାଜ୍ୟ ସରକାର ଶିଳ୍ପୋଦ୍ୟୋଗୀମାନଙ୍କୁ ବିଭିନ୍ନ ପ୍ରୋତ୍ସାହନ ମାଧ୍ୟମରେ ଉତ୍ସାହିତ କରିବାପାଇଁ ୧୯୮୦ ମସିହାଠାରୁ ଏକ ବୈପ୍ଳବିକ ଶିଳ୍ପନୀତି ଘୋଷଣା କରିଥିଲେ । ଉପରୋକ୍ତ ନୂତନ ଶିଳ୍ପନୀତି ପ୍ରଣୟନ ହେବାଦ୍ୱାରା ଶିଳ୍ପୋଦ୍ୟୋଗୀମାନେ ଶିଳ୍ପ ପ୍ରତିଷ୍ଠା ନିମନ୍ତେ ବିଶେଷ ଭାବେ ଆଗ୍ରହୀ ହୋଇଥିଲେ । ଏହି ଶିଳ୍ପନୀତିରେ ବିଶେଷକରି ନିମ୍ନଲିଖିତ ସୁବିଧାଗୁଡ଼ିକ ଶିଳ୍ପୋଦ୍ୟୋଗୀମାନଙ୍କୁ ଦିଆଯାଇଥିଲା :—

୧ । ଉତ୍ପାଦିତ ବସ୍ତୁ ଉପରେ ବିକ୍ରୀକର ଛାଡ

୨ । କ୍ଷୁଦ୍ରଶିଳ୍ପ ପାଇଁ ବିଦ୍ୟୁତ୍‌କରରେ ରିହାତି

୩ । ତଫସିଲଭୁକ୍ତ ଜାତି ଓ ଉପଜାତିର ଶିଳ୍ପୋଦ୍ୟୋଗୀ, ମହିଳା ସମବାୟ ସଂସ୍ଥା ତଥା କାରିଗରୀଭିତ୍ତିକ ସମବାୟ ସମିତିକୁ ଅଧିକ ପ୍ରୋତ୍ସାହନ ।

୪ । ପ୍ରଦୂଷଣ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ନିମନ୍ତେ ସବ୍‌ସିଡ଼ି

୫ । ବିଦ୍ୟୁତ୍ ଉତ୍ପାଦକ ଯନ୍ତ୍ର ବସାଇବା ନିମନ୍ତେ ପ୍ରୋତ୍ସାହନ

୬ । ହୋଟେଲ ଓ ସିନେମାକୁ ସବ୍‌ସିଡ଼ି ତଥା ଅଧିକ ସାହାଯ୍ୟ

ଏହାଛଡ଼ା ରାଜ୍ୟକୁ ୩ ଗୋଟି ଭାଗରେ (ଜୋନ୍) ବିଭକ୍ତ କରି ଅନଗ୍ରସର ଜିଲ୍ଲାମାନଙ୍କରେ ଶିଳ୍ପ ପ୍ରତିଷ୍ଠା କରିବା ନିମନ୍ତେ ଅଧିକ ପ୍ରୋତ୍ସାହନ ଦେବାପାଇଁ ନିଷ୍ପତ୍ତି ନିଆଯାଇଥିଲା । ଏତଦ୍‌ବ୍ୟତୀତ ରାଜ୍ୟରେ ୩ ଗୋଟି ଜିଲ୍ଲାକୁ 'ଶିଳ୍ପବିହୀନ ଜିଲ୍ଲା' (ନୋ ଇଣ୍ଡଷ୍ଟ୍ରୀ ଡିଷ୍ଟ୍ରିକ୍ଟ) ଭାବେ ଚିହ୍ନଟ କରାଯାଇ ଉକ୍ତ ଜିଲ୍ଲାରେ ଶିଳ୍ପ ପ୍ରତିଷ୍ଠା ପାଇଁ ସ୍ୱତନ୍ତ୍ର ପଦକ୍ଷେପ ନିଆଯାଇଛି ।

ରାଜ୍ୟ ସରକାରଙ୍କର ଉପରୋକ୍ତ ନୂତନ ଶିଳ୍ପନୀତି ଫଳରେ ରାଜ୍ୟରେ ଶିଳ୍ପର ଉନ୍ନତି ନିମନ୍ତେ ଏକ ନୂତନ ବାତାବରଣ ଦେଖାଦେଲା, ଯାହା ଫଳରେ ରାଜ୍ୟରେ ଦ୍ରୁତଗତିରେ ଶିଳ୍ପ ପ୍ରତିଷ୍ଠା ସମ୍ଭବ ହୋଇ ପାରିଛି । ୧୯୮୦–୮୮ ବିଗତ ୮ବର୍ଷ ସମୟ ମଧ୍ୟରେ ରାଜ୍ୟରେ ୧୨୮ ଗୋଟି ନୂତନ, ମଧ୍ୟମ ତଥା ବୃହତ୍ ଶିଳ୍ପ ପ୍ରତିଷ୍ଠା କରାଯାଇପାରିଛି । ବିଶେଷ କରି ଏହି ସମୟ ମଧ୍ୟରେ ୨୨,୬୩୭ ଟି ନୂତନ କ୍ଷୁଦ୍ରଶିଳ୍ପ ମଧ୍ୟ ପ୍ରତିଷ୍ଠା କରାଯାଇଛି ।

୧୯୮୬ ମସିହାରୁ ରାଜ୍ୟ ସରକାର ତାଙ୍କର ଶିଳ୍ପନୀତିକୁ ପୁନର୍ବାର ସଂଶୋଧନ କରିଛନ୍ତି, ଯାହାଫଳରେ କି ଶିଳ୍ପ ପ୍ରତିଷ୍ଠା କ୍ଷେତ୍ରରେ ଅନେକ ଅସୁବିଧା ଦୂର ହୋଇପାରିଛି । ଶିଳ୍ପନୀତି, ୧୯୮୬ ଅନୁଯାୟୀ ଅତ୍ୟାଧୁନିକ କ୍ଷୁଦ୍ରଶିଳ୍ପର ବିକାଶ ନିମନ୍ତେ ଓଡ଼ିଶାର ବିଭିନ୍ନ ସ୍ଥାନରେ ବିଭିନ୍ନ ପ୍ରକାର ଶିଳ୍ପ ସଂଗ୍ରଥନ (ଇଣ୍ଡଷ୍ଟ୍ରିଆଲ୍ କଂପ୍ଲେକ୍ସ) ସ୍ଥାପନ କରିବା ପାଇଁ ପ୍ରକଳ୍ପ ବିବରଣୀ (ପ୍ରୋଜେକ୍ଟ ରିପୋର୍ଟ) ପ୍ରସ୍ତୁତ କରାଯାଇଛି, ଯଥା:—ଗ୍ଲାସ୍ ଏବଂ ସିରାମିକ୍ସ କଂପ୍ଲେକସ, ଝାରସୁଗୁଡ଼ା; ପଲିମର କଂପ୍ଲେକ୍‌ସ, ଭୁବନେଶ୍ୱର; ବିଦ୍ୟୁତ୍ ବ୍ୟାବହାରିକ ଘରୋଇ ସାମଗ୍ରୀ କଂପ୍ଲେକ୍‌ସ, ଛତ୍ରପୁର;ଅଟୋମୋବାଇଲ କଂପ୍ଲେକ୍ସ, ବ୍ରହ୍ମପୁର ଏବଂ ଡ୍ରଗ୍‌ସ୍ ଏବଂ ଫାରମାସ୍ୟୁଟିକାଲସ୍, ଭୁବନେଶ୍ୱର । ଏସବୁର ଉନ୍ନତି ନିମନ୍ତେ ବିହିତ ପଦକ୍ଷେପ ନିଆଯାଉଛି ।

୧୯୮୦ ମସିହା ପୂର୍ବରୁ ରାଜ୍ୟରେ ଶିଳ୍ପ ପ୍ରତିଷ୍ଠା ନିମନ୍ତେ ବିଶେଷ ଭିତ୍ତିଭୂମିକ ସୁବିଧା ନଥିଲା । ୧୯୮୧ ମସିହାରେ କ୍ଷୁଦ୍ରଶିଳ୍ପୋଦ୍ୟୋଗୀ ତଥା ଅନ୍ୟାନ୍ୟ ଶିଳ୍ପୋଦ୍ୟୋଗୀମାନଙ୍କୁ ଭିତ୍ତିଭୂମିକ ସୁବିଧା ଯୋଗାଇଦେବା ପାଇଁ ରାଜ୍ୟ ସରକାର ଏକ ଶିଳ୍ପ ଭିତ୍ତିଭୂମିକ ନିଗମ ପ୍ରତିଷ୍ଠା କରିଥିଲେ । ଉକ୍ତ ନିଗମ ପ୍ରତିଷ୍ଠା ହେବା ପୂର୍ବରୁ ୨୭ ଟି ଶିଳ୍ପାଞ୍ଚଳ ତଥା ୬୯୨ ଟି ଛାତଗୃହ (ଇଣ୍ଡଷ୍ଟ୍ରିଅଲ୍ ସେଡ୍) ଥିଲା । ଷଷ୍ଠ ପଞ୍ଚବାର୍ଷିକ ଯୋଜନାରେ ୬୭୩ ଟି ଅଧିକ ଛାତଗୃହ ୪୪ ଟି ଶିଳ୍ପାଞ୍ଚଳରେ ନିର୍ମାଣ କରାଯାଉ ଥିଲା ଏବଂ ୧୫୮୬ ଏକର ଜମି ବିଭିନ୍ନ ଶିଳ୍ପୋଦ୍ୟୋଗୀମାନଙ୍କୁ ଦେବା ନିମନ୍ତେ ଉନ୍ନତ କରାଯାଇଥିଲା । ଏହି ସମୟରେ ୧୯.୫୭ କୋଟି ଟଙ୍କା ବିନିଯୋଗ କରାଯାଇଥିଲା । ସପ୍ତମ ପଞ୍ଚବାର୍ଷିକ ଯୋଜନା କାଳରେ ଏପର୍ଯ୍ୟନ୍ତ ୨୩୩ ଟି ଛାତଗୃହର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହୋଇଛି ଓ ୩୧ଟିର ନିର୍ମାଣ କାର୍ଯ୍ୟ ଚାଲିଛି । ଏହାଛଡ଼ା ୪୨୯ ଏକର ଜାଗା ଉନ୍ନତ କରାଯାଇଛି ଏବଂ ୧୬୮ ଟି ଛାତଗୃହ ନିର୍ମାଣ କରାଯାଇଛି । ଏ ସଂଖ୍ୟାରେ ୨୫୫.୬୧ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇଛି । ସମୁଦାୟ ନିର୍ମାଣ କରାଯାଇଥିବା ୧୬୯୮ ଟି ଛାତଗୃହ ମଧ୍ୟରୁ ୧୩୫୭ ଟି ଛାତଗୃହ ବିଭିନ୍ନ ଶିଳ୍ପୋଦ୍ୟୋଗୀମାନଙ୍କୁ ଦିଆଯାଇଛି ।

ଉପରେ ଆଲୋଚିତ ହୋଇଥିବା ରାଜ୍ୟ ସରକାରଙ୍କ ପ୍ରୋତ୍ସାହନ ଭିତ୍ତିକ ଶିଳ୍ପନୀତି ହେତୁ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କ୍ଷେତ୍ରରେ ଦ୍ରୁତ ଉନ୍ନତି ଦେଖାଯାଉଛି ।

ଷଷ୍ଠ ତଥା ସପ୍ତମ ପଞ୍ଚବାର୍ଷିକ ଯୋଜନାରେ କେତେ ପରିମାଣର କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କରାଯାଇପାରିଥିଲା, କେତେ ଟଙ୍କା ବିନିଯୋଗ କରାଯାଇଥିଲା ଏବଂ କେତେ ଲୋକ ନିଯୁକ୍ତି ପାଇଥିଲେ ତାହାର ଏକ ବିବରଣୀ ନିମ୍ନରେ ଦିଆଗଲା :

| | କ୍ଷୁଦ୍ରଶିଳ୍ପର ସଂଖ୍ୟା | ଆର୍ଥିକ ବିନିଯୋଗ (ଲକ୍ଷରେ) | କର୍ମନିଯୁକ୍ତି |
|---|---|---|---|
| ୧୯୮୦ ପର୍ଯ୍ୟନ୍ତ | ୯,୧୧୯ | ୬,୮୯୫.୫୪ | ୭୫,୬୯୮ |
| ୧୯୮୦-୮୫ | ୧୪,୩୧୮ | ୧୩,୩୫୨.୧୧ | ୧୦୬,୨୩୯ |
| ୧୯୮୫-୮୮ | ୮,୩୧୯ | ୧୩,୬୦୭.୧୯ | ୫୫,୧୯୨ |

କେତେକ କ୍ଷୁଦ୍ରଶିଳ୍ପ, ଉତ୍ପାଦିତ ଦ୍ରବ୍ୟର ବିକ୍ରୀଜନିତ ସମସ୍ୟା, ଆର୍ଥିକ ଦୁରବସ୍ଥା ଏବଂ ପରିଚାଳନାଗତ ତ୍ରୁଟି ଯୋଗୁଁ ରୁଗ୍ଣ ଶିଳ୍ପ ହିସାବରେ ଚିହ୍ନିତ କରାଯାଇଛି । ଏହି ଶିଳ୍ପଗୁଡ଼ିକର ପୁନଃ ପ୍ରତିଷ୍ଠା ପାଇଁ ଓଡ଼ିଶା ସରକାର ଗୋଟିଏ ରାଜ୍ୟ ସ୍ତରୀୟ ଆନ୍ତଃ-ଅନୁଷ୍ଠାନିକ କମିଟି (ଏସ୍. ଏଲ୍. ଆଇ. ଆଇ. ସି.) ଗଠନ କରିଛନ୍ତି । କମିଟିର ସୁପାରିଶଗୁଡ଼ିକୁ ସରକାର ଅନୁଧ୍ୟାନ କରି ବିଭିନ୍ନ ପ୍ରକାର ସୁବିଧା ସୁଯୋଗ ଦେଇ ରୁଗ୍ଣ ଶିଳ୍ପର ପୁନରୁଦ୍ଧାର କରନ୍ତି । ବର୍ତ୍ତମାନ ସୁଦ୍ଧା ବିଭିନ୍ନ ସୁବିଧା ସୁଯୋଗ ପାଇ ୧୫୫ ଗୋଟି ରୁଗ୍ଣ କ୍ଷୁଦ୍ର-ଶିଳ୍ପର ପୁନରୁଦ୍ଧାର ହୋଇପାରିଛି ।

ରାଜ୍ୟର କ୍ଷୁଦ୍ରଶିଳ୍ପୋଦ୍ୟୋଗୀମାନଙ୍କୁ ଉତ୍ସାହିତ କରିବାପାଇଁ ରାଜ୍ୟ ସରକାର ଉତ୍କୃଷ୍ଟ ବିବେଚିତ ହେଉଥିବା ଶିଳ୍ପୋଦ୍ୟୋଗୀମାନଙ୍କୁ ପୁରସ୍କାର ଦେଉଛନ୍ତି ।

ଉପରେ ଆଲୋଚିତ ହୋଇଥିବା ବିଷୟବସ୍ତୁଗୁଡ଼ିକରୁ ସ୍ପଷ୍ଟ ଜଣାଯାଏ ଯେ ବିଗତ ୮ ବର୍ଷ ମଧ୍ୟରେ ପ୍ରକୃତପକ୍ଷେ ଓଡ଼ିଶାରେ କ୍ଷୁଦ୍ରଶିଳ୍ପର ଦ୍ରୁତ ବିକାଶ ଘଟିଛି ଏବଂ ଓଡ଼ିଶା ଭବିଷ୍ୟତରେ ସାରା ଭାରତବର୍ଷରେ ଶିଳ୍ପକ୍ଷେତ୍ରରେ ଏକ ଅଗ୍ରଗଣ୍ୟ ରାଜ୍ୟଭାବେ ପରିଗଣିତ ହେବ ଏଥିରେ ସନ୍ଦେହ ନାହିଁ ।

ଯୁଗ୍ମ ଶାସନ ସଚିବ,
ଶିଳ୍ପ ବିଭାଗ, ଓଡ଼ିଶା ସରକାର ।



ଫ୍ରାନ୍ସର ସି.ଏଫ୍.ସି.ଏଫ୍. ସଂସ୍ଥାର କର୍ମକର୍ତ୍ତା ଓ ପ୍ରଫେସର ପି. ଆମାତୋଙ୍କ ସହ ଗୋପାଳପୁରରେ ପ୍ରତିଷ୍ଠିତ ସୌରଶକ୍ତି ଚାଳିତ ପାଣିପମ୍ପ ଉଦ୍‌ଘାଟନ ଉତ୍ସବରେ ରାଜ୍ୟ ଶିଳ୍ପମନ୍ତ୍ରୀ ଶ୍ରୀ ପଟ୍ଟନାୟକ



# ଗୁଣ ବୃଦ୍ଧି ନିମନ୍ତେ ପଦକ୍ଷେପ

ଶ୍ରୀ ଗୋପୀନାଥ ପରିଡ଼ା

ଆମ୍ବ ଓଡ଼ିଶାର ଅତି ଉପାଦେୟ ଫଳ, ଫଳବୃକ୍ଷହୋଇଥିବା ୨,୧୦,୬୪୮ ହେକ୍ଟର ଜମିରୁ ୯୦,୪୯୮ ହେକ୍ଟର ଜମିରେ କେବଳ ଆମ୍ବ ଲଗାଯାଇଛି । ଏଥିରୁ ଆମଦାନୀ କରଯାଉଥିବା ଫଳର ପରିମାଣ ଆନୁମାନିକ ୮,୪୧,୬୩୧ ଟନ୍ । ଏକରପ୍ରତି ଅଧିକା ଉତ୍ପାଦନ ସତ୍ତ୍ୱେ ଟାକୁଆରୁ ହେଉଥିବା ଗଛ ଉଚ୍ଚଜାତିର ଫଳ ଦେଇପାରୁନାହିଁ । ସୁସ୍ୱାଦୁ ଆମ୍ବ ତଥା ରାଜ୍ୟରେ ଏହାର ଚାହିଦା ଅଧିକା ଥିବାରୁ ସରକାର ଆମ୍ବ ଲଗାଇବାପାଇଁ ଅଧିକା ଜାଗା ତଥା ଫଳ ବଗିଚା ବୃଦ୍ଧି ପାଇଁ ଚେଷ୍ଟା କରିଛନ୍ତି । ବାରମ୍ବାର ଉଦ୍ୟମ ସତ୍ତ୍ୱେ ଗତ ଦଶବର୍ଷ ହେଲା ଆମ୍ବର ଉତ୍ପାଦନ କିଛିଟା ବଢ଼ିଛି । ଏଥିନିମନ୍ତେ ନିର୍ଦ୍ଦିଷ୍ଟ ହୋଇଥିବା ଲକ୍ଷ୍ୟ ଶତକଡ଼ା ୫୦ଭାଗ ବଢ଼ିଛି । ଗଛରେ ଫଳ ଆସିବା ସମୟ ଆସିଗଲେ ରାଜ୍ୟରେ ଆମ୍ବର ଉତ୍ପାଦନ ଆଶାତୀତଭାବେ ବଢ଼ିବ ।

ଆମ୍ବର ଚାହିଦା ବଢ଼ିବା ପାଇଁ ଭଲ ଜାତିର ଫଳଗଛ ଦରକାର । ଏହା ଯେ ଖାଲି ଭଲ ଜାତିର ଆମ୍ବ ଦେବ ତା' ନୁହେଁ, ପ୍ରଚୁର ପରିମାଣର ଫଳ ମଧ୍ୟ ଦେବ । ଗତ ଦଶନ୍ଧିରେ କେତେକ ନିର୍ଦ୍ଦିଷ୍ଟ ପଦକ୍ଷେପ ନେଇ ସରକାର ବଂଶ ବୃଦ୍ଧିକାରୀ ଫଳ ବଗିଚା ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଲୋକଙ୍କ ଚାହିଦା ପୂରଣ ନିମନ୍ତେ ଭଲ କଲମି ଗଛ ମଧ୍ୟ ପ୍ରସ୍ତୁତ କରିଛନ୍ତି ।

୧୯୬୭-୬୮ ମସିହାରେ ଆମ୍ବର ଉତ୍ପାଦନ ଖୁବ୍ ସୀମିତଥିଲା । ରାଜ୍ୟରେ ଏହାର ଚାହିଦା ପୂରଣ ନିମନ୍ତେ ପଡ଼ୋଶୀ ରାଜ୍ୟ ଉପରେ ନିର୍ଭର କରିବାକୁ ପଡୁଥିଲା । ଷଷ୍ଠପଞ୍ଚବାର୍ଷିକ ଯୋଜନା ଶେଷରେ କଲମି ଆମ୍ବର ଉତ୍ପାଦନ ୫୦,୦୦୦ରୁ ବୃଦ୍ଧି ହେଲା ଏବଂ ଗତ ୩ ବର୍ଷ ତଳେ ଏଇ ପରିମାଣ ଅନେକ ବୃଦ୍ଧି ପାଇଛି । ବର୍ତ୍ତମାନ ହର୍ଟିକଲଚର ନିର୍ଦ୍ଦେଶାଳୟ ବର୍ଷକୁ ପ୍ରସ୍ତୁତ କରୁଥିବା ୩ଲକ୍ଷ ବିଭିନ୍ନ କଲମି ଫଳଗଛ ମଧ୍ୟରେ ୨ଲକ୍ଷ କଲମି ଆମ୍ବ ଅନ୍ତର୍ଭୁକ୍ତ । କେବଳ ସଂଖ୍ୟା ବୃଦ୍ଧିରୁ ନୁହେଁ ଗୁଣାତ୍ମକ ବୃଦ୍ଧିରୁ ଏହି ଅଭିବୃଦ୍ଧି ଉଲ୍ଲେଖନୀୟ । ବର୍ଷାଦିନେ ଯୋଡ଼ କଲମିଦ୍ୱାରା ଯେଉଁ ବଂଶବୃଦ୍ଧି କରଯାଉଥିଲା, ଏହା ବିଶେଷ ସାଫଲ୍ୟ ଅର୍ଜନ କରିଛି । ବର୍ତ୍ତମାନ ଅନେକ ନୂଆ ପଦ୍ଧତି ପ୍ରୟୋଗ କରଯାଉଛି । ଯଦିଓ ଆଗରୁ ଯୋଡ଼ କଲମି ଦ୍ୱାରା ବଂଶବିସ୍ତାର କରଯାଉଥିଲା, ଏବେ ନାନାବିଧ ଉପାୟରେ କଲମି ଦ୍ୱାରା ବଂଶବିସ୍ତାର କରଯାଉଛି । ଭଲ କଲମି ପାଇବାକୁ ହେଲେ ଚାରା ଗଛର ବୟସ ଏବଂ ଉଚ୍ଚତା ଓ "ସିଅନ" ଡାଳର ଉମ୍ବର ପରିମାଣ ଉପରେ ବିଶେଷ ଦୃଷ୍ଟି ଦେବାକୁ ପଡ଼ିଥାଏ । ୪୦ରୁ ୫୦ ସେ: ମି: ଉଚ୍ଚତା ଭିତରେ ଏବଂ ଭଲଭାବରେ ବଢ଼ୁଥିବା କଲମିଗଛ ଜମିରେ ଲଗାଇବା ପାଇଁ ଉପଯୁକ୍ତ ବିବେଚିତ ହୁଏ ।

ଓଡ଼ିଶାର ପାଞ୍ଚଭାଗରୁ ଭାଗେ ଜମିରେ ଜଳସେଚନର ସୁବିଧା ଅଛି । ଜମିମାନ ଖରିଫ୍ ଋତୁରେ ଜଳସେଚିତ ହୋଇଥାଏ । ସବୁଦିନିଆ ଜଳସେଚନ ଯଥା ଶୀତଦିନ ଏବଂ ଖରାଦିନରେ ଆଖିଆଗରେ ରଖି କୃଷକମାନେ ଜଳସେଚିତ ଜମିରେ ପନିପରିବା ଏବଂ ଅନ୍ୟାନ୍ୟ ଫସଲ କରିବା ଲକ୍ଷ୍ୟରେ କିପ ଜମିରେ ଆମ୍ବଗଛ କରିବାର ଏକ ଉନ୍ନତ ପ୍ରଣାଳୀ ବାହାର କରଯାଇଅଛି ଯେଉଁଥିରେକି ଉପଯୋଗୀ ବଳିଷ୍ଠ ଦେଶୀ ଆମ୍ବଗଛରୁ ଆମ୍ବ ଟାକୁଆ ସଂଗ୍ରହକରି ପୂର୍ବରୁ ପ୍ରସ୍ତୁତ ହୋଇରହିଥିବା ଖାତରେ ପୋତାଯାଏ । ଯେତେବେଳେ ଚାରା ଉଲଗବରେ ବଢ଼େ ତାଦେହରେ ଯୋଡ଼ କଲମି ଦ୍ୱାରା ଅଧିକ ଉନ୍ନତମାନର ଆମ୍ବଡାଳ ଯୋଡ଼ା ଯାଇଥାଏ । ଉପରୋକ୍ତ ପ୍ରଣାଳୀରେ ଆମ ରାଜ୍ୟରେ ଏଗାର ଲକ୍ଷ ଆମ୍ବଗଛ ଉତ୍ପନ୍ନ ଯାଇଅଛି । ଏହିପ୍ରଣାଳୀ ପ୍ରଥମେ ସମସ୍ତଙ୍କ ଦ୍ୱାରା ଆଦୃତ ହେଉନଥିଲା । କିନ୍ତୁ ଯେତେବେଳେ ଏହି ପ୍ରଣାଳୀ ଦ୍ୱାରା ଗଛରେ ଫଳ ଧରିଲା ଏହା କୃଷକମାନଙ୍କ ମଧ୍ୟରେ ଆଦୃତହେଲା । ବର୍ତ୍ତମାନ ଅଗ୍ରଣୀ ଚାଷୀମାନେ ନିଜ ଜମିରେ ଖାଉଥିବା ଆମ୍ବର ଟାକୁଆମାନ ପୋତି ଉଦ୍ୟାନ ବିଭାଗର କର୍ମକର୍ତ୍ତାଙ୍କୁ ସେଥିରେ ଉନ୍ନତ ଧରଣର ଯୋଡ଼କଲମି କରିବାପାଇଁ ଅନୁରୋଧ କରୁଛନ୍ତି । ଗତ ଦୁଇବର୍ଷରେ ଏହିପରି ୧୦ ହଜାରଗଛ ଯୋଡ଼କଲମି କରଯାଇଅଛି ।

ଗଂଜାମ ଜିଲ୍ଲାର ଦୁଗୁଡ଼ା, କୋରାପୁଟ ଜିଲ୍ଲାର ଜୟପୁର, ନବରଙ୍ଗପୁର, ଢେଙ୍କାନାଳ ଜିଲ୍ଲାର ଗଞ୍ଜର, ବ୍ରାହ୍ମଣବିଲ, କେନ୍ଦୁଝର ଜିଲ୍ଲାର ଟେଲକୋଇ, ପୁରୀର କୁମାଣ୍ଡା ଓ ଖଣ୍ଡପଡ଼ାରେ ଏହି ପ୍ରଣାଳୀରେ ଚାରା ପ୍ରସ୍ତୁତ କରଯାଇଛି। ଉପରୋକ୍ତ ଜାଗାଗୁଡ଼ିକର ଚାଷୀମାନେ ବହୁତ ଲାଭବାନ ହୋଇଥିବାର ଖବର ମିଳିଛି ।

ଏହି ଗୁଣ ସଂପର୍କରେ ବଂଶବୃଦ୍ଧିକାରୀ ବଗିଚାର ପରୀକ୍ଷା ପରିଚାଳନା କରଯାଇ ଅନୁଗୁଳଠାରେ ବହୁତ ପ୍ରକାରର ସିଅନ ଏବଂ ସିଅନ ଡାଳର ବିଭିନ୍ନ ପ୍ରକାରର ଉମ୍ବର ପରିମାଣକୁ ଆଖି ଆଗରେ ରଖି ଗବେଷଣା ଚାଲିଛି । ଅଣ୍ଡା ମାସରେ ୧୦ ସେମି ହୋଇଥିବା ସିଅନ ଡାଳକୁ ନେଇ ଯୋଡ଼ କଲମି କଲେ ଭଲ ଫଳ ମିଳିଥାଏ ଆମ୍ବ ମୂଳରେ ଖାଦ୍ୟ ସଂଗ୍ରହ କରିବା ସାଙ୍ଗରେ ଫଳ ଉତ୍ପାଦନର ସାମଞ୍ଜସ୍ୟତାକୁ ଆଖି ଆଗରେ ରଖି ଭୁବନେଶ୍ୱରରେ ଏକାମ୍ରକାନନଠାରେ ଗବେଷଣା ଚାଲିଛି । ଲକ୍ଷ୍ୟକରଯାଇଅଛି ଯେ ଅନେକ ଖାଦ୍ୟ ସଂଗ୍ରହ କରା ଚେର ଏକ ଚତୁର୍ଥାଂଶରୁ ଚେର ଏରିଆ ମଧ୍ୟରେ ଏବଂ ୩୦ ସେ. ମି. ମାଟି ତଳ ଯାଏ ରହିଥାନ୍ତି । ଗଛରେ ସାର ଦେବା ଓ ପାଣି ଦେବା

ଉପରେ ଏହା ଏକ ସରକାରୀ ପରୀକ୍ଷା । ବର୍ତ୍ତମାନ ଆମ୍ବ ଚାଷରେ ହେକ୍ଟର ପିଛା କେତେ ଅଧିକା ପରିମାଣର ଗଛ ଲଗାଯାଇ ପାରିବ ତା'ଉପରେ ଭୁବନେଶ୍ୱର ଏକାମ୍ରକାନନଠାରେ ଗତ ୩ ବର୍ଷ ଧରି ଗବେଷଣା ଚାଲିଅଛି । ଗବେଷକମାନଙ୍କ ରିପୋର୍ଟରୁ ଜଣାଯାଏ ଯେ ଆମ୍ରପଲ୍ଲୀ କିସମର ଆମ୍ବ ଏକ ହେକ୍ଟରରେ ୧୬୦୦ଟି ଲଗାଯାଇ ପାରିବ । ନିଲମ କିସମର ଆମ୍ବ ଯାହାକି ସବୁ ବର୍ଷରେ ଫଳ ଧରିଥାଏ ସେଥିରୁ ୩୦୦ ଗୋଟି ଗଛ ହେକ୍ଟର ପିଛା ଲଗାଯାଇ ପାରିବ, ଏହା ପୂର୍ବରୁ ନିଲମ କିସମର ଆମ୍ବର ୧୨୦ଟି ଗଛ ହେକ୍ଟର ପିଛା ଲଗାଯାଉ ଥିଲା । ଅଳ୍ପ ଜାଗାରେ ବହୁତ ଗଛ ଲଗାଇ ଉତ୍ପାଦନର ପରିମାଣର ସୀମା ବୃଦ୍ଧି ଘଟାଇବା, ଏହି ପରୀକ୍ଷାର ଲକ୍ଷ୍ୟ ।

ଓଡ଼ିଶା ତଥା ଭାରତର ଅନ୍ୟାନ୍ୟ ପ୍ରଦେଶରେ ରଜା ମହାରଜା ଓ ନବାବ୍‌ମାନଙ୍କର ପୃଷ୍ଠପୋଷକତାରେ ବିଭିନ୍ନ କିସମର ଉନ୍ନତ ମାନର ଆମ୍ବ ଚାଷ କରାଯାଉଥିଲା । ଆମ୍ବମାନଙ୍କର ନାମକରଣ ଯଥା :- ଫଜିଲ୍, ଇମାମପସନ୍ଦ, ବେଗୁମ ପସନ୍ଦ ଜାହାଙ୍ଗୀର ସେମାନଙ୍କର ପୃଷ୍ଠପୋଷକତାକୁ ପ୍ରମାଣିତ କରେ । ଯଦିଓ ଏହା ଆମ୍ବ ଟାକୁଆରୁ ଉତ୍ପନ୍ନ କରାଯାଉଥିଲା ତାହା ଉନ୍ନତ ଗୁଣ ସମ୍ପନ୍ନ ଏବଂ ଅଧିକଉତ୍ପାଦନକ୍ଷମ ଥିଲା । ସେଗୁଡ଼ିକ ବଂଶବୃଦ୍ଧି ପାଇଁ ବଛା ଯାଇଥିଲା ଏବଂ ବର୍ତ୍ତମାନ ସୁଦ୍ଧା ଦେଶରେ ପ୍ରଥମ ଶ୍ରେଣୀ କିସମର ସ୍ଥାନ ଅଧିକାର କରିଛି । ବର୍ତ୍ତମାନ ଅପ୍ରତିଦ୍ୱନ୍ଦ୍ୱୀ ଭାବରେ ଲୋକପ୍ରିୟତା ଲାଭ କରିଥିବା ଆଲ୍‌ଫାନ୍‌ସୋ, ବାଗନ୍‌ପଲ୍ଲୀ, ଦଶହରୀ କିସମର ଗଛଗୁଡ଼ିକ ଆମ୍ବ ଟାକୁଆରୁ ଉତ୍ପନ୍ନ କରାଯାଉଥିଲା ।

ବର୍ତ୍ତମାନ ଲକ୍ଷ୍ୟ କରାଯାଉଅଛିଯେ ଆମ ରାଜ୍ୟରେ ମିଳୁଥିବା ଉନ୍ନତ ମାନସଂପନ୍ନ ବହୁତ କିସମର ଦେଶୀ ଆମ୍ବ ମିଳୁଅଛି । ବିଗତ ବହୁ ବର୍ଷ ଧରି ରାଜ୍ୟ ଉଦ୍ୟାନ ବିଭାଗ ପ୍ରଦର୍ଶନୀ ମାଧ୍ୟମରେ ଦେଶୀ ଉନ୍ନତ ଧରଣର ଆମ୍ବକୁ ବ୍ୟବସାୟିକ ଦୃଷ୍ଟିକୋଣରୁ ଲୋକପ୍ରିୟ କରିବା ପାଇଁ ପ୍ରଚେଷ୍ଟା କରି ଆସୁଅଛନ୍ତି । ଏହି ସମୟ ମଧ୍ୟରେ ବହୁତ ଆମ୍ବଟାକୁଆରୁ ଉତ୍ପନ୍ନ ହୋଇଥିବା ଦେଶୀ ଗଛ ଚିହ୍ନଟ କରାଯାଇଅଛି, ଯାହାକି ଆମ୍ବ ମାନଚିତ୍ରରେ ସ୍ଥାନ ପାଇବ । ସପ୍ତଶଯ୍ୟା, ଏକାମ୍ରକାନନ, ତଥା ଅନ୍ୟାନ୍ୟ ଜାଗାରେ ଥିବା "ପ୍ରୋଜେନି" ଫଳବଗିଚାମାନଙ୍କରେ କେତେକ ବଛାଯାଇଥିବା ଦେଶୀଗଛକୁ ଧ୍ୱଂସ ମୁଖରୁ ରକ୍ଷା କରିବା ଏବଂ ତା' ଉପରେ କାର୍ଯ୍ୟକାରିତାକୁ ସମୀକ୍ଷା କରିବା ପାଇଁ ଲଗା ଯାଇଅଛି । ଏହା କହିବା ବାହୁଲ୍ୟ ଯେ ଏହିଭଳି ପରିସ୍ଥିତି ମାଧ୍ୟମରେ ବହୁତ ଆମ୍ବ ବଗିଚା ଜନସାଧାରଣଙ୍କୁ ହସ୍ତାନ୍ତର କରାଯାଇଥିବା ସତ୍ତ୍ୱେ ସେଥିରୁ ଆମ୍ବ ଗଛଗୁଡ଼ିକ କଟାଯାଇଅଛି ଏହାଦ୍ୱାରା ଉନ୍ନତ କିସମର ଆମ୍ବ ଗଛ ଚିରଦିନପାଇଁ ଲୋପପାଇଛି । ବର୍ତ୍ତମାନ ଆଞ୍ଚଳିକ ଉନ୍ନତ କିସମରେ ଆମ୍ବ ପ୍ରଦର୍ଶନୀର ଆଭିମୁଖ୍ୟ ହେଉଛି ଏଭଳି ଅନ୍ତର୍ନିହିତ ଉନ୍ନତ ଧରଣର ଦେଶୀ ଆମ୍ବଗଛ ଚିହ୍ନଟ କରିବା । ଫଳଗୁଡ଼ିକ ସଂଗ୍ରହ କରାପରେ ଏବଂ ତାହା ବୈଷୟିକ ଯୋଗ୍ୟତା ସଂପନ୍ନ ବ୍ୟକ୍ତିଙ୍କ ଦ୍ୱାରା ପରୀକ୍ଷା କରାଗଲାପରେ ଉନ୍ନତମାନର ଆମ୍ବ କିସମ ସ୍ଥିର ଆମ ରାଜ୍ୟରେ ଥିବା ବିଭିନ୍ନ "ପ୍ରୋଜେନି" ଅର୍ଚ୍ଚାର୍ଡ଼ମାନଙ୍କରେ ଚାଷ କରାଯିବ । ଶ୍ରୀଯୁକ୍ତ ସତ୍ୟାନନ୍ଦ ଚମ୍ପତିରାୟଙ୍କ ସୀତାପତି ଆଶ୍ରମରେ ଥିବା ଗୋଟିଏ ଦେଶୀ ଆମ୍ବଗଛକୁ ୩ ବର୍ଷଧରି ପରୀକ୍ଷା କଲାପରେ ଏହାର ଅନୁସନ୍ଧିକ ଗୁଣକୁ ଲକ୍ଷ କରି ତାଙ୍କ ଦ୍ୱାରା ଜାନକୀ ପସନ୍ଦ ହିସାବରେ ନାମକରଣ କରାଯାଇଅଛି । ଅର୍ଥଲଗାଣ ସଂସ୍ଥାରୁ ଋଣ ନେଇ ଆମ୍ବ ଚାଷ କରିବା ପାଇଁ ଯୋଜନା ପ୍ରସ୍ତୁତ କରାଯାଇଅଛି । ବ୍ୟାଙ୍କ କର୍ତ୍ତୃପକ୍ଷଙ୍କ ସହିତ ପରାମର୍ଶ କରି ଋଣ ପରିଶୋଧର ସହଜ କିସ୍ତି ସ୍ଥିରୀକୃତ ହୋଇଛି ସୀମିତ ଜମି ଥିବା କ୍ଷୁଦ୍ର ଓ ନାମମାତ୍ର ଚାଷୀମାନଙ୍କ ଆମ୍ବ ଚାଷ ନିମନ୍ତେ ପ୍ରୋତ୍ସାହନ କରିବାର ବ୍ୟବସ୍ଥା ରହିଛି । ସେମାନେ ଯେପରି ଆମ୍ବ ବାଟିକା କରିପାରିବେ ସେଥିପାଇଁ ପଦକ୍ଷେପ ନିଆଯାଇଛି । ବିଦ୍ୟାଳୟ ବାଟିକା ଓ ପଞ୍ଚାୟତ ଫଳ ବଗିଚା ବ୍ୟତୀତ ଏଇ ଯୋଜନାରେ ଅନେକ ଫଳୋଦ୍ୟାନ ଆରମ୍ଭ କରାଯାଇଛି ।

ବାଇଗଣପଲ୍ଲୀ ଆମ୍ବ ଆମ ରାଜ୍ୟରେ ବିଶେଷ ଆଦୃତ ହୁଏ । ସେହିପରି ପଶ୍ଚିମବଙ୍ଗରେ ହେମସାଗରର ସୁଖ୍ୟାତି ରହିଛି । ଉତ୍ତର ଭାରତରେ ଫଜିଲି ଓ ଲେଙ୍ଗଡ଼ା , ଦକ୍ଷିଣ ଭାରତରେ ତୋତାପୁରୀ ଓ ନୀଲିପୁରସମ୍ର ଉତ୍ପାଦନ କୃଷକମାନଙ୍କର ବିଶେଷ ଦୃଷ୍ଟି ଆକର୍ଷଣ କରିଛି । ବାଣିଜ୍ୟ ଉତ୍ପାଦନ କ୍ଷେତ୍ରରେ ସୁବର୍ଣ୍ଣରେଖା ଓ ବନେଶ୍ରୀନ୍ ଅନେକଙ୍କର ପୃଷ୍ଠପୋଷକତା ଲାଭ କରିଛି । ଜନସାଧାରଣ ତଥା କୃଷକମାନଙ୍କ ମଧ୍ୟରେ ଜନପ୍ରିୟ କିସମର ଆମ୍ବ ଉତ୍ପାଦନ ପ୍ରତି ବିଶେଷ ଆଗ୍ରହ ରହିଛି । ଖାଉଟିମାନେ ଏଇ ପ୍ରିୟ କିସମର ଆମ୍ବ ବିଶେଷ ପସନ୍ଦ କରୁଛନ୍ତି । "ମଲ୍ଲିକା" ଓ ଆମ୍ରପଲ୍ଲି ଭଳି ଆମ୍ବ ଉତ୍ପାଦିତ ହୋଇ କୃଷକମାନଙ୍କୁ ଆବଶ୍ୟକୀୟ ପରିମାଣରେ ଯୋଗାଇ ଦିଆଯାଉଛି । ସ୍ଥାନୀୟ ସୁବିଧା ଅନୁଯାୟୀ ବିଭିନ୍ନ କିସମର ଆମ୍ବଚାରା କୃଷକମାନଙ୍କୁ ଦିଆଯିବ । ଆଞ୍ଚଳିକ ଭିତ୍ତିରେ ଏଇ ନିର୍ଦ୍ଦିଷ୍ଟ ଚାରା ଗୁଡ଼ିକ ଏକ ସମୟରେ ଆଦୃତ ହେବ ଏବଂ ନିର୍ଦ୍ଦିଷ୍ଟ କିସମର ଗଛ ପ୍ରସ୍ତୁତ ହୋଇପାରିବ ।

ଉତ୍ପାଦନ ଦୃଷ୍ଟିରୁ ବ୍ୟୟ ବହୁଳ ହେଉଥିବା କେତେକ ପୁରୁଣା ଚାରା ଭବିଷ୍ୟତରେ ଆଉ ଉତ୍ପନ୍ନ ନ କରିବା ଆବଶ୍ୟକ ହୋଇପାରେ । ଆମ୍ବ ଉତ୍ପାଦକମାନଙ୍କୁ ବିଶେଷ ପ୍ରୋତ୍ସାହନ ପ୍ରଦାନ କରି ଉତ୍ପାଦନ ବୃଦ୍ଧି ନିମନ୍ତେ ନାନାବିଧ ପଦକ୍ଷେପ ନିଆଯିବା ଆବଶ୍ୟକ । ପର୍ଯ୍ୟାୟକ୍ରମିକ ଫଳ ଉତ୍ପାଦନ ଓ ବିକୃତ ଫଳ ଉତ୍ପାଦନ ଭଳି ସମସ୍ୟା ମଧ୍ୟ ମୁଣ୍ଡ ଟେକିଛି । ଏଇ ବ୍ୟାଧି-ଗୁଡ଼ିକ ନିୟନ୍ତ୍ରିତ କରିବା ପାଇଁ ପଦକ୍ଷେପ ନିଆଯିବା ଆବଶ୍ୟକ । ତା ହେଲେ ଆମ୍ବ ଗଛର ଭବିଷ୍ୟତ ବିପନ୍ନ ହେବନାହିଁ, ଆଉ କେତେକ ଆମ୍ବ ଗଛରେ ପ୍ରଚୁର ହୁଏ । ମାତ୍ର ଫଳ ରହେ ନାହିଁ । କୀଟ ଆକ୍ରମଣ ହେତୁ ଏପରି ହୋଇଥାଏ । ରାସ୍ତାପାର୍ଶ୍ୱରେ ଏବଂ ଜଙ୍ଗଲରେ ଏଭଳି ଗଛମାନ ଦେଖାଯାଏ । ଏଗୁଡ଼ିକ ପ୍ରତି ବିଶେଷ ଯତ୍ନ ନେଲେ ରାସାୟନିକ ଔଷଧମାନ ଏହିସବୁ ଗଛରେ ପ୍ରୟୋଗ କଲେ ଫଳଗୁଚ୍ଛ ସୁରକ୍ଷିତ ହେବ । ଅଧିକ ପରିମାଣର ଫଳ ମଧ୍ୟ ହୋଇ ପାରିବ । ପୁରୁଣା ଗଛମାନଙ୍କରେ ମଲଙ୍ଗ ମଧ୍ୟ ପ୍ରକୃତଭାବେ ଦେଖାଯାଏ । ବୃକ୍ଷର ପୁନଃ ପୁଷ୍ଟି ନିମନ୍ତେ ପଦକ୍ଷେପ ନିଆଯିବା ଉଚିତ୍ । ଏହାଦ୍ୱାରା ଆମ୍ବ ବଗିଚାର ଉତ୍ପାଦନ ବୃଦ୍ଧି ପାଇବ ।

ଏହା ଅତ୍ୟନ୍ତ ହୃଦୟ ଉଲ୍ଲାସକାରୀ ଘଟଣା ଯେ ମୁଖ୍ୟମନ୍ତ୍ରୀ ଗତ ମଇ ୨୭ ତାରିଖରେ ଫଳ ପ୍ରଦର୍ଶନୀ ଉଦ୍‌ଘାଟନ କରି ଆମ୍ବ ବିକାଶ ଯୋଜନାକୁ ପୂର୍ଣ୍ଣ ସମର୍ଥନ ଜଣାଇଛନ୍ତି । କଳାହାଣ୍ଡି ଓ ମୟୂରଭଞ୍ଜରେ ଦୁଇଟି ବଡ଼-ଧରଣର ଆମ୍ବ ବଗିଚା ନିର୍ମାଣ ପାଇଁ ସେ ପ୍ରସ୍ତାବ ଦେଇଛନ୍ତି । ଆମ୍ବର ଶିଳ୍ପଗତ ବ୍ୟବହାର ସଂପର୍କରେ ଅଧିକ ଅନୁଧ୍ୟାନ କରିବା ପାଇଁ ସେ ପରାମର୍ଶ ଦେଇଛନ୍ତି । ଆମ୍ବ ଚାଷକୁ ଉତ୍ସାହିତ କରିବା ପାଇଁ କୁଟୀର-ଶିଳ୍ପ ମଧ୍ୟ ପ୍ରତିଷ୍ଠିତ ହେବା ଉଚିତ୍ ।

ଉପସଂହାରରେ କୁହାଯାଇପାରେ ଯେ ରାଜ୍ୟ ସରକାରଙ୍କ ପୃଷ୍ଠ-ପୋଷକତା ଲାଭ କଲେ ଆମ୍ବଚାଷ କ୍ଷେତ୍ରରେ ଭବିଷ୍ୟତରେ ବିଶେଷ ସମୃଦ୍ଧି ସମ୍ଭବ ହେବ ।

ନିର୍ଦ୍ଦେଶକ ଫଳୋଦ୍ୟାନ ବିଭାଗ,
ଓଡ଼ିଶା, ଭୁବନେଶ୍ୱର

ଶିକ୍ଷା ହେଉଛି ନାରୀମାନଙ୍କର ମୁକ୍ତିର ଏକମାତ୍ର ବାଟ । ସାର୍ବଜନୀନ ଶିକ୍ଷାର ପ୍ରସାର ଘଟାଇବା ସମସ୍ତଙ୍କର କର୍ତ୍ତବ୍ୟ । ସେଥିପାଇଁ ଭାରତବର୍ଷରେ ପ୍ରଥମ କରି ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ସ୍ତର ପର୍ଯ୍ୟନ୍ତ ବିନା ଦରମାରେ ପାଠ ପଢ଼ିବା ପାଇଁ ମହିଳାମାନଙ୍କୁ ସୁଯୋଗ ଦିଆଯାଇଛି ।



# ଓଡ଼ିଶାରେ ଡାଲିଜାତୀୟ ଶସ୍ୟ ଉତ୍ପାଦନ

ଡକ୍ଟର ଦାମୋଦର ଲେଙ୍କା

ଜୀବନଧାରଣ ପାଇଁ ଶର୍କରା, ପୁଷ୍ଟିସାର (ପ୍ରୋଟିନ) ସ୍ନେହସାର ଧାତବ ଲବଣ ଓ ଭିଟାମିନ୍ ଆବଶ୍ୟକ । ଭାତ ଓ ଡାଲି ପ୍ରତ୍ୟେକ ଭାରତୀୟ ତଥା ଓଡ଼ିଆଙ୍କର ଦୈନନ୍ଦିନ ମୁଖ୍ୟ ଖାଦ୍ୟ । ତଥାପି ଆବଶ୍ୟକ ଅନୁଯାୟୀ ସମସ୍ତଙ୍କୁ ଡାଲି ଓ ଭାତ ମିଳୁନାହିଁ । କିନ୍ତୁ କ୍ରମେ ଏ ଅବସ୍ଥାର ଉନ୍ନତି ହେଉଛି । ବିଶେଷତଃ ବିଗତ ୭/୮ ବର୍ଷ ମଧ୍ୟରେ ଏ ଦିଗରେ ଉଲ୍ଲେଖନୀୟ ଅଗ୍ରଗତି ସାଧିତ ହୋଇଛି । ଡାଲି ଭାରତୀୟମାନଙ୍କର ପୁଷ୍ଟିସାରର ପ୍ରଧାନ ଉତ୍ସ । ଓଡ଼ିଶାର ଲୋକ ସଂଖ୍ୟା ବର୍ତ୍ତମାନ ୨.୯ କୋଟି ଏବଂ ଖ୍ରୀ: ଅ. ୨,୦୦୦ ବେଳକୁ ଏହା ୩.୨୨୫ କୋଟି ହୋଇଥିବ ବୋଲି କଳନା କରାଯାଉଛି । ସେତେବେଳେ ଖାଇବା ପାଇଁ ୧.୦୧୪ ଟନ ମଞ୍ଜି ଆଦି ଅନ୍ୟାନ୍ୟ ଖର୍ଚ୍ଚକୁ ମିଶାଇ ମୋଟ ୧.୧୪୩ ଟନ ଡାଲି ଆବଶ୍ୟକ । ଏହି ହିସାବ ଜଣେ ପୋଢ଼ ପାଇଁ ବର୍ଷକୁ ୩୧ କି: ଗ୍ରା: ଡାଲି ହିସାବରେ ଧରାଯାଇଛି ।

ଆମର ଏହି କ୍ରମବର୍ଦ୍ଧିଷ୍ଣୁ ଆବଶ୍ୟକତା ପୂରଣ ପାଇଁ ସ୍ୱାଧୀନତା ପରେ ବିଶେଷତଃ ଗତ ୭/୮ ବର୍ଷ ଭିତରେ ବିଶେଷ ଧ୍ୟାନ ଦିଆଯାଉଛି । ଓଡ଼ିଶାର ମୋଟ ଚାଷ ଜମିର ଶତକଡ଼ା ୪୨ ଭାଗ ଉଚ୍ଚ ବା ଡିପଜମି, ୩୩ଭାଗ ମଧ୍ୟମ କିସମର ଜମି ଓ ଅବଶିଷ୍ଟ ୨୫ଭାଗ ନୀଚ ବା ଖାଲ ଜମି । ସବୁ ଉଚ୍ଚ ଜମିରେ ଧାନ କରିବା ଅନୁଚିତ । ଉଚ୍ଚ ଜମିର ଜଳଧାରଣ ଶକ୍ତି, ଉତ୍ପାଦିକତା ଉର୍ବରତା ଓ ଜଳଧାରଣ ଶକ୍ତି କମ । ବର୍ଷା ଛିନିଛିଟିଆ ହେଲେ ଏପରି ବିଲରେ ଧାନ ଆଗ କ୍ଷତିଗ୍ରସ୍ତ ହୁଏ ; ଅମଳ କମିଯାଏ ବା ମିଳେ ନାହିଁ । ଏଣୁ ଏପରି ଜମିରେ ଧାନ ଫସଲ ନକରି ଅଳ୍ପ ଦିନରେ ଅମଳ ହେଉଥିବା ଡାଲି ଜାତୀୟ ଫସଲ ଓ ତୈଳବୀଜ ଜାତୀୟ ଫସଲ ଚାଷ କରିବା ଆବଶ୍ୟକ । ଏହି ମୂଳକଥାଟିକୁ କାର୍ଯ୍ୟକାରୀ କରିବା ପାଇଁ ଅନେକ ଗବେଷଣା କରାଯାଇଛି ଓ ଯାଉଛି ମଧ୍ୟ । ଏତତ୍ ସମ୍ବନ୍ଧୀୟ ଫଳାଫଳକୁ କାର୍ଯ୍ୟକାରୀ କରିବା ପାଇଁ ସଂପୃକ୍ତ ବିଭାଗ ଅନେକ ଉଲ୍ଲେଖନୀୟ ପଦକ୍ଷେପ ନେଇଛନ୍ତି । ବର୍ତ୍ତମାନ ସୁଦ୍ଧା ଧାନ ଚାଷ ହେଉଥିବା ଜମିରୁ ପ୍ରାୟ ୩.୫ ଲକ୍ଷ ହେକ୍ଟର ଉଚ୍ଚା ଓ ଡିପା ଜମିରେ ଡାଲି ଓ ତୈଳବୀଜ ଜାତୀୟ ଫସଲ ଚାଷ ହେଉଛି । ହରଡ଼, ମୁଗ, ବିରି, କୁଟ, ଚଣା, ଖେସାରି, କୋଳଥ, ବରଗୁଡି ଓ ମଟର ଆମର ମୁଖ୍ୟ ଡାଲି ଜାତୀୟ ଫସଲ । ମୁଗ, ବିରି ଓ ହରଡ଼ ବର୍ଷାଦିନେ ଡିପ ଜମିରେ ଖାଲି ବା ମିଶ୍ରିତ ଫସଲ ଭାବେ ଚାଷ କରାଯାଇ ଧାନ ଓ ଅନ୍ୟାନ୍ୟ ଖରିଫ ଫସଲ ଅମଳପରେ କୋଳଥ, ବିରି, ମୁଗ, କୁଟ, ମଟର, ଚଣା ବୁଣାଯାଇ ରବି ଫସଲ ରୂପେ ଚାଷ କରାଯାଉଛି । ଏ ଦିଗରେ ଆବଶ୍ୟକୀୟ ଦୃଷ୍ଟି ଦିଆଯାଉଥିବାରୁ ଡାଲିଜାତୀୟ ଫସଲର ଆମଦାନୀ ବୃଦ୍ଧି ପାଇ ପାରିଛି (ସାରଣୀ-୧) ।

ସାରଣୀ-୧ ଡାଲି ଜାତୀୟ ଫସଲର ଉନ୍ନତି (୧୯୭୫—୧୯୮୬)

| ବର୍ଷ | | ଚାଷ ଜମି (ଲକ୍ଷ ହେକ୍ଟର) | ହେକ୍ଟରପ୍ରତି ଆମଦାନୀ (କ୍ୱିଣ୍ଟାଲ) | ବର୍ଷ | ଚାଷଜମି (ଲକ୍ଷହେକ୍ଟର) | ହେକ୍ଟର ପ୍ରତି ଆମଦାନୀ (କ୍ୱିଣ୍ଟାଲ) |
|---|---|---|---|---|---|---|
| ୧୯୭୪-୭୫ | .. | ୧୦.୦୨ | ୪.୩ | ୧୯୭୮-୭୯ | ୧୫.୬୬ | ୫.୦୫ |
| ୧୯୭୬-୭୭ | .. | ୯.୭୭ | ୪.୨ | ୧୯୮୩-୮୪ | ୨୦.୩୭ | ୫.୨ |
| ୧୯୭୭-୭୮ | .. | ୧୩.୭୦ | ୪.୯ | ୧୯୮୫-୮୬ | ୧୯.୩୨ | ୫.୫ |

୧୯୭୨-୭୩ ମସିହାରେ ମୋଟ ୯·୪ ଲକ୍ଷ ହେକ୍ଟର ଜମିରେ ବିଭିନ୍ନ ପ୍ରକାର ଡାଲିଜାତୀୟ ଫସଲ ଚାଷ ହେଉଥିଲା । ୧୯୮୫-୮୬ ହେଲେ ଏହିସବୁ ଫସଲ ୧୯·୩୨ ଲକ୍ଷ ହେକ୍ଟର ଜମିରେ ଚାଷ ହେଲା । ଏହି ସମୟରେ କ୍ଷେତ୍ରଫଳ ୨·୦୫ ଗୁଣ ଓ ଉତ୍ପାଦିକତା ୧·୦୬ ଗୁଣ ବୃଦ୍ଧି ପାଇଛି । ବେଶୀ ଜମିରେ ଚାଷ ହେଉଥିବାରୁ ମୋଟ ଆମଦାନି ବୃଦ୍ଧି ପାଇଛି । କିନ୍ତୁ ଉତ୍ପାଦିକତା ତଦନୁରୂପ ବୃଦ୍ଧି ପାଇନାହିଁ । ଏଣୁ ଏ ଦିଗରେ ବିଶେଷ ଗବେଷଣା ଆବଶ୍ୟକ ।

ହରଡ଼, ମୁଗ, ବିରି, କୋଳଥର ମୋଟ ଅମଳ ଯଥେଷ୍ଟ ବୃଦ୍ଧି ପାଇଛି (ସାରଣୀ ୨) । ୧୯୭୨-୭୩ ଠାରୁ ୧୯୮୫-୮୬ ମଧ୍ୟରେ ହରଡ,

୧୯୮୮-୮୯ରେ ଅମଳକୁ ୨·୫ ନିୟୁତଟନ ଖାଦ୍ୟଶସ୍ୟ ଓ ୦·୯୨ ନିୟୁତ ଟନ ଡାଲିଜାତୀୟ ଫସଲ ଉତ୍ପାଦନ କରିବାକୁ ପଡ଼ିବ । ଏଥିପାଇଁ ଜାତୀୟ ଡାଲି ଚାଷ ଯୋଜନା ବାଲେଶ୍ୱର, ଗଞ୍ଜାମ, କଟକ, ପୁରୀ, ଢେଙ୍କାନାଳ, ବଲାଙ୍ଗୀର ଓ କୋରାପୁଟ ଜିଲ୍ଲାରେ କାର୍ଯ୍ୟକାରୀ କରାଯାଇଛି । ଉନ୍ନତ ଜାତୀୟ ବିହନ, ସାର, ବିଶେଷକରି ଫସଫେଟସାର, ଯବକ୍ଷାରଯାନ ସ୍ଥିରିକରଣ ଶକ୍ତି ବୃଦ୍ଧିଲାଗି ଉପଯୁକ୍ତ ବୀଜାଣୁଯୁକ୍ତ ମୃତ୍ତିକା ଯୋଗାଇ ଦିଆଯାଉଛି । ଜଳସେଚିତ ବିଶେଷତଃ ଉଠାଜଳ ସେଚିତ ଅଞ୍ଚଳରେ ବର୍ଷା, ରବି ଓ ଗ୍ରୀଷ୍ମ ଋତୁରେ ଡାଲିଜାତୀୟ ଫସଲର ବହୁଳ ଚାଷ ପାଇଁ ପ୍ରୋତ୍ସାହନ ଦିଆଯାଉଛି । କ୍ଷେତ୍ର ପ୍ରଦର୍ଶନ ଦ୍ୱାରା ଉନ୍ନତ ବୈଜ୍ଞାନିକ ପ୍ରଣାଳୀ ଶିକ୍ଷା ଦିଆଯାଉଛି ।

ସାରଣୀ ୨. ଓଡ଼ିଶାରେ ବିଭିନ୍ନ ଡାଲି ଜାତୀୟ ଫସଲ ଉତ୍ପାଦନରେ ଉନ୍ନତି

| ବିବରଣୀ .. | ୧୯୭୨-୭୩ | | ୧୯୭୪-୭୫ | | ୧୯୭୭-୭୮ | | ୧୯୮୩-୮୪ | | ୧୯୮୫-୮୬ | |
|---|---|---|---|---|---|---|---|---|---|---|
| | ଚାଷଜମି | ଉତ୍ପାଦିକତା | ଚାଷଜମି | ଉତ୍ପାଦିକତା | ଜମି | ଉତ୍ପାଦିକତା | ଜମି | ଉତ୍ପାଦିକତା | ଜମି | ଉତ୍ପାଦିକତା |
| ହରଡ .. | ୫୦·୮ | ୫·୩ | ୫୬·୨ | ୪·୯ | ୫୭·୫ | ୫·୩ | ୧୭୭·୧ | ୭·୦ | ୧୩୯·୯ | ୭·୦ |
| ମୁଗ .. | ୩୪୮·୫ | ୫·୩ | ୩୯୧·୭ | ୪·୧ | ୫୨୧·୧ | ୫·୨ | ୨୦୫·୨ | ୫·୪ | ୬୫୫·୬ | ୫·୬ |
| ବିରି .. | ୨୦୫·୩ | ୫·୩ | ୨୩୪·୫ | ୪·୪ | ୨୯୨·୨ | ୫·୨ | ୫୫୩·୨ | ୫·୪ | ୫୩୬·୮ | ୬·୨ |
| କୋଳଥ .. | ୧୮୮·୯ | ୪·୮୪ | ୨୦୬·୩ | ୪·୨ | ୩୧୦·୦ | ୪·୬ | ୩୬୫·୬ | ୪·୧ | ୩୫୪·୩ | ୪·୯ |

ଚାଷଜମି—ହଜାର ହେକ୍ଟର, ଉତ୍ପାଦନ—ହେକ୍ଟର ପ୍ରତି କ୍ୱିଣ୍ଟାଲ ।

ମୁଗ, ବିରି, କୋଳଥ ଫସଲର ଚାଷ ଜମି ଯଥାକ୍ରମେ ୨·୭୫, ୧·୮୮, ୨·୬ ଓ ୧·୮୭ ଗୁଣ ବୃଦ୍ଧି ପାଇଛି । ହରଡ ଫସଲର ଉତ୍ପାଦିକତା ଅନ୍ୟାନ୍ୟ ଫସଲର ଉତ୍ପାଦିକତାର ତୁଳନାରେ ଅଧିକ ବୃଦ୍ଧି ପାଇଛି । ସ୍ୱଳ୍ପଦିନ ପାଇଁ ଉପଯୁକ୍ତ ଅଧିକ ଅମଳକ୍ଷମ ଡାଲିଜାତୀୟ ଫସଲ କିସମ ଉଦ୍ଭାବନ ହୋଇ ପାରିନଥିବାରୁ ଓ ରବି ଓ ଗ୍ରୀଷ୍ମଋତୁରେ ଜଳସେଚନର ସୁବିଧା ନଥିବାରୁ ଏବଂ ଉପଯୁକ୍ତ ପରିମାଣର ଫସଫରସ ସାର ପ୍ରୟୋଗ ହେଉନଥିବାରୁ ଉତ୍ପାଦିକତା ବୃଦ୍ଧି ପାଉନାହିଁ । ଏଥିପାଇଁ ସମନ୍ୱିତ ଗବେଷଣା ଆବଶ୍ୟକ ।

## ତୈଳବୀଜ ଜାତୀୟ ଫସଲର ଉନ୍ନତି

ଦେହରେ ଲଗାଇବା, ଖାଇବା, ଜାଳିବା ଓ ଅନ୍ୟାନ୍ୟ କାମ ପାଇଁ ତେଲ ପରିମାଣର ଆବଶ୍ୟକତା ବୃଦ୍ଧି ପାଇଛି । ଚିନାବାଦାମ ସୋରିଷ, ଚେସି, ରାଶି, ଅଳସି, ଗବ (କଡ଼ା) ଆମର ମୁଖ୍ୟ ତୈଳ ଜାତୀୟ ଫସଲ । ଏହି ଫସଲଗୁଡ଼ିକର ଅମଳ ମଧ୍ୟ ଗତ ୮/୧୦ ବର୍ଷ ଭିତରେ ଯଥେଷ୍ଟ ବୃଦ୍ଧି ପାଇଛି (ସାରଣୀ-୩) । ୧୯୭୪-୭୫ ମସିହାରେ ଓଡ଼ିଶାରେ ମୋଟ

ସାରଣୀ ୩. ଓଡ଼ିଶାରେ ତୈଳବୀଜ ଜାତୀୟ ଫସଲର ଉନ୍ନତି

| ବିବରଣୀ | ଚାଷଜମି | ଉତ୍ପାଦିକତା | ବର୍ଷ | ଚାଷଜମି | ଉତ୍ପାଦିକତା |
|---|---|---|---|---|---|
| ୧୯୭୪-୭୫ | ୪·୬୩ | ୬·୩ | ୧୯୭୮-୭୯ | ୭·୨ | ୭·୪ |
| ୧୯୭୬-୭୭ | ୪·୨୫ | ୫·୨ | ୧୯୮୩-୮୪ | ୧୦·୨ | ୨·୨ |
| ୧୯୭୭-୭୮ | ୫·୪୩ | ୬·୦ | ୧୯୮୫-୮୬ | ୯୯ | ୭·୮ |

ତୈଳବୀଜ ଜାତୀୟ ଫସଲ ୪·୬୩ ଲକ୍ଷ ହେକ୍ଟର ଜମିରେ ଚାଷ ହେଉଥିଲା । ୧୯୮୩-୮୪ ବେଳକୁ ଏହି ଫସଲ ଚାଷ ୧୦ ଲକ୍ଷ ହେକ୍ଟର ଜମିରେ ଚାଷ ହେଉଛି । ଏହା ଜଳ ସେଚିତ ଓ ବୃଷ୍ଟି ପୁଷ୍ଟ ଅଞ୍ଚଳରେ ସଘନ ଚାଷ ହେତୁ ସମ୍ଭବ ହୋଇଛି । କିନ୍ତୁ ବୃହତ୍ ଓ ମଧ୍ୟମ ଜଳସେଚନ ଯୋଜନା ଅନ୍ତର୍ଗତ ଜମିମାନଙ୍କରେ ଏ ଫସଲ ଚାଷ ହ୍ରାସ ପାଇଛି । ଧାନ—ଧାନ ଚାଷ ଏହାର କାରଣ ।

ଚିନାବାଦାମ, ରାଶି, ଜଡା, ସୋରିଷ, ଫେସୀ ଓ ଅଳସୀ ଆମର ମୁଖ୍ୟ ତୈଳ ଜାତୀୟ ଫସଲ । ପ୍ରତ୍ୟେକ ଫସଲର ଚାଷ ଜମି ୧୯୭୪-୭୫ ତୁଳନାରେ ୧୯୮୫-୮୬ ବେଳକୁ ଯଥାକ୍ରମେ ୩·୧, ୨·୭, ୧·୫, ୧·୬, ୧·୧, ଓ ୧·୪ ଗୁଣ ବୃଦ୍ଧି ପାଇଛି (ସାରଣୀ-୪) ।

ବର୍ତ୍ତମାନର ଉତ୍ପାଦିକତା ବୃଦ୍ଧି ପାଇଁ, ଓ ଅଧିକ ଉତ୍ପାଦନକ୍ଷମ ନୂତନ ଜାତି ଫସଲ ଉଦ୍ଭାବନ ପାଇଁ ରାଜ୍ୟର କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ଜରିଆରେ ବିଭିନ୍ନ କୃଷି-ଜଳବାୟୁ ସଂପନ୍ନ ଆଞ୍ଚଳିକ ଗବେଷଣା କେନ୍ଦ୍ରମାନଙ୍କରେ ବହୁବିଧ ସମନ୍ୱିତ ଗବେଷଣା କରାଯାଉଛି । ସୋୟାବିନ ଓ ସୂର୍ଯ୍ୟମୁଖୀ ଭଳି ତୈଳବୀଜ ଫସଲର ଉତ୍ପାଦନ ଓ ଚାଷ ବୃଦ୍ଧି ଲାଗି ପ୍ରଚେଷ୍ଟା କରାଯାଉଛି । କୋରାପୁଟ, କଳାହାଣ୍ଡି, ସୁନ୍ଦରଗଡ଼, ବଲାଙ୍ଗୀର ଜିଲ୍ଲାରେ ପ୍ରାୟ ୨ ହଜାର ହେକ୍ଟର ଜମିରେ ସୋୟାବିନ ଚାଷ କରାଯାଉଛି । ଚଳିତ ବର୍ଷ ପ୍ରାୟ ୨୦ ହଜାର ହେକ୍ଟର ଜମିରେ ଏହି ଫସଲ ଚାଷ ପାଇଁ ଯୋଜନା ରହିଛି । ଏଥିପାଇଁ ମଧ୍ୟ ରିହାତି ଦରରେ ବିହନ, ସାର, ଯୋଗାଇ ଦିଆଯାଉଛି । କୃଷି ପ୍ରଦର୍ଶନ କ୍ଷେତ୍ର ମାଧ୍ୟମରେ ଉନ୍ନତ କୃଷି ପ୍ରଣାଳୀ ଶିକ୍ଷା ଦିଆଯାଉଛି ।

ସାରଣୀ ୪. ଓଡ଼ିଶାରେ କେତୋଟି ମୁଖ୍ୟ ତୈଳବୀଜ ଜାତୀୟ ଫସଲ ଚାଷର ଉନ୍ନତି

| ବିବରଣୀ | | ୧୯୭୪-୭୫ | | ୧୯୭୬-୭୭ | | ୧୯୭୭-୭୮ | | ୧୯୮୩-୮୪ | | ୧୯୮୫-୮୬ | |
|---|---|---|---|---|---|---|---|---|---|---|---|
| | | ଜମି | ଉତ୍ପାଦିକତା | ଜମି | ଉତ୍ପାଦିକତା | ଜମି | ଉତ୍ପାଦିକତା | ଜମି | ଉତ୍ପାଦିକତା | ଜମି | ଉତ୍ପାଦିକତା |
| ଚିନାବାଦାମ | .. | ୧·୦୩ | ୧୩·୭ | ୧·୦୪ | ୧୧·୩ | ୧·୧୯ | ୧୨·୨ | ୨·୫୮ | ୧୫·୫ | ୩·୨୩ | ୧୪·୩ |
| ରାଶି | .. | ୧·୦୪ | ୪·୪ | ୧·୧୨ | ୪·୬ | ୧·୪୦ | ୪·୬ | ୩·୧୩ | ୪·୫୬ | ୨·୭୮ | ୫·୧ |
| ଜଡ଼ା | .. | ୦·୨୬ | ୫·୨ | ୦·୨୩ | ୪·୮ | ୦·୩୧ | ୪·୯ | ୦·୪୨ | ୬·୧ | ୦·୩୮ | ୫·୯ |
| ସୋରିଷ | .. | ୦·୮୫ | ୪·୪ | ୦·୬୬ | ୩·୯ | ୧·୦୯ | ୪·୪ | ୧·୦୬ | ୪·୨ | ୧·୩୯ | ୪·୬ |
| ଫେସି | .. | ୦·୨୫ | ୩·୩ | ୦.୧୭ | ୩·୭ | ୦·୨୭ | ୪·୧ | ୦·୪୫ | ୩·୫ | ୦·୨୭ | ୩·୯ |
| ଅଳସି | .. | ୦·୦୯ | ୩·୭ | ୦·୧୭ | ୩·୫ | ୧·୧୧ | ୩·୮ | ୨·୪୬ | ୪·୦ | ୧·୭୬ | ୩·୮ |

ଆମ ରାଜ୍ୟର ଚିନାବାଦାମ ଉତ୍ପାଦିକତା ସାରା ଦେଶରେ ପ୍ରଥମ । ରବି ଋତୁରେ ହେକ୍ଟର ପିଛା ୨୦ କ୍ୱିଣ୍ଟାଲ ବାଦାମ ଅମଳ ହୋଇପାରୁଛି । ପରୀକ୍ଷା ଓ ପ୍ରଦର୍ଶନରୁ ଜଣା ପଡ଼ିଛି ଯେ ଏହି ହାର ୨୫-୨୮ କ୍ୱିଣ୍ଟାଲକୁ ବୃଦ୍ଧି କରାଯାଇ ପାରିବ । ତୈଳବୀଜ ଫସଲର ଉତ୍ପାଦନ ବୃଦ୍ଧି ଲାଗି ଜାତୀୟ ତୈଳବୀଜ ଯୋଜନା ୧୯୮୫-୮୬ରୁ ଆରମ୍ଭ କରାଯାଇଛି । କଟକ, ପୁରୀ, ଗଞ୍ଜାମ, ଢେଙ୍କାନାଳ, କୋରାପୁଟ୍, କଳାହାଣ୍ଡି ଓ ଫୁଲବାଣୀ ଜିଲ୍ଲାରେ ଏହି ବିଶେଷ ଯୋଜନା କାର୍ଯ୍ୟକାରୀ କରାଯାଉଛି । ଆମ ରାଜ୍ୟରେ ୧୯୮୭-୮୮ରେ ତୈଳବୀଜର ଉତ୍ପାଦନ ୯·୨ ଲକ୍ଷ ଟନକୁ ବୃଦ୍ଧି କରାଯିବା ପାଇଁ ଲକ୍ଷ୍ୟ ରହିଛି । ଏଥିପାଇଁ ଏକ ଚକିଆ ଚାଷ, କ୍ଷେତ୍ର ପ୍ରଦର୍ଶନ ରିହାତିରେ ଉନ୍ନତ କିସମ ବିହନ, ସାର, କୃଷି ଯନ୍ତ୍ରପାତି, ପୋକ ଓ ରୋଗ ନିରାକରଣ ଲାଗି ଔଷଧ, ବିଭିନ୍ନ କୃଷି ଯନ୍ତ୍ରପାତି ଯୋଗାଇ ଦିଆଯାଉଛି ।

ଓଡ଼ିଶାର ଜଳବାୟୁରେ ବର୍ଷସାରା ବିଭିନ୍ନ ଫସଲ ଚାଷକରି ହେବ । ଉଚ୍ଚ ଓ ମଧ୍ୟମ କିସମ ଜମିରେ ବହୁଳ ପରିମାଣରେ ଡାଲି ଓ ତୈଳବୀଜ ଜାତୀୟ ଫସଲ ଚାଷ କରି ଉତ୍ପାଦନ ବୃଦ୍ଧି ପାଇଁ ଯଥେଷ୍ଟ ସୁବିଧା ରହିଛି । ଏହା ହୋଇପାରିଲେ ଓଡ଼ିଶା ତାହାର ଆବଶ୍ୟକତା ପୂରଣ କରି ପଡ଼ୋଶୀ ରାଜ୍ୟକୁ ମଧ୍ୟ ଯୋଗାଇ ପାରିବ । ଏଥିରେ ମୋର ଅତୁଟ ବିଶ୍ୱାସ ରହିଛି ।

କୃଷି ମହାବିଦ୍ୟାଳୟ, ଭୁବନେଶ୍ୱର ।



ଇତିହାସ ସୃଷ୍ଟି କରିବା ପାଇଁ ସେହି କଷ୍ଟ ସ୍ୱୀକାର କରିବାକୁ ପଡ଼ିବ ତାହା ଆରାମ ପରିବେଶ ଅପେକ୍ଷା ଯଥେଷ୍ଟ ଆନନ୍ଦଦାୟକ । ଜୀବନର ସୀମା କେବଳ ଅନ୍ୟ ଦେଶଗୁଡ଼ିକରେ ଆବଦ୍ଧ ହୋଇ ରହି ନାହିଁ । ତାହା ଆମର ଦ୍ୱାର ଦେଶରେ ମଧ୍ୟ ବିଦ୍ୟମାନ ରହିଛି । ଅନ୍ୟମାନେ ଆମ ଦେଶର ହିମାଳୟ ଆରୋହଣ କରିବା ପାଇଁ ଆସୁଛନ୍ତି । ଏହା ଆମର ଅପୂର୍ବ ସୁଯୋଗ ଯେ, ହିମାଳୟ ଆମ ଦେଶ ମଧ୍ୟରେ ରହିବ । ଆମର ମୃତ୍ୟୁ ପରେ ମଧ୍ୟ ସ୍ଥାୟୀ ହୋଇ ରହିବ । ଏକ ଉନ୍ନତକର କାର୍ଯ୍ୟରେ ନିଜର ସମସ୍ତ ଶକ୍ତି ନିୟୋଗ କରିବାଠାରୁ ବଳି ଆନନ୍ଦଦାୟକ ବିଷୟ ଆଉ କିଛି ନାହିଁ ।

OGP—MP-VI (I. & P. R.) 2—6,000—27-7-1988



* ଜାତୀୟ ମହିଳା କମିଟି ବୈଠକରେ ପ୍ରଧାନମନ୍ତ୍ରୀ ଶ୍ରୀ ଗାନ୍ଧୀ

# ଉତ୍କଳ ପ୍ରସଙ୍ଗ

## ରଥଯାତ୍ରା ସଂଖ୍ୟା

